# ସୃଷ୍ଟି ଓ ସମୀକ୍ଷା

୧୯୮୧-୮୨



ଖ୍ରୀଷ୍ଟ ମହାବିଦ୍ୟାଳୟ

କଟକ-୮

# ସୃଷ୍ଟି ଓ ସମୀକ୍ଷା

( ବ୍ୟାସକବି ଫକୀରମୋହନ ସ୍ମରଣିକା )

୧୯୮୧-୮୨

( ଖ୍ରୀଷ୍ଟ ମହାବିଦ୍ୟାଳୟ ଓଡ଼ିଆ ସାହିତ୍ୟ ସମାଜର ମୁଖପତ୍ର )




ସମ୍ପାଦନା :

ଶ୍ରୀ ପଠାଣି ପଟ୍ଟନାୟକ ଏମ୍. ଏ.

ରିଡ଼ର ଓ ମୁଖ୍ୟ ଅଧ୍ୟାପକ

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ-୮

# ଓଡ଼ିଆ ସାହିତ୍ୟ ସମାଜ ଓ ଓଡ଼ିଆ ସେମିନାର
## ୧୯୮୧-୮୨

**ସଭାପତି :**

ମେଜର ପି. କେ. ଦାସ, ଏମ୍. ଏସ୍. ସି, ଅଧ୍ୟକ୍ଷ

**ଉପସଭାପତି :**

ପ୍ରାଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ, ଏମ୍. ଏ.

**ସମ୍ପାଦକ, ସାହିତ୍ୟ ସମାଜ :**

ଶ୍ରୀ ଉମାକାନ୍ତ ଦାସ, ଚତୁର୍ଥ ବର୍ଷ ଓଡ଼ିଆ ସମ୍ମାନ

**ସହସମ୍ପାଦକ, ସାହିତ୍ୟ ସମାଜ :**

ଶ୍ରୀ ସ୍ୱାତପ୍ରକାଶ ରାୟ, ତୃତୀୟ ବର୍ଷ କଳାଚ୍ଛାତ୍ର

**ସମ୍ପାଦକ, ଓଡ଼ିଆ ସେମିନାର**

ଶ୍ରୀ ଶକ୍ତିପ୍ରସନ୍ନ ସାମନ୍ତରାୟ, ଚତୁର୍ଥ ବର୍ଷ ଓଡ଼ିଆ ସମ୍ମାନ

**ସହସମ୍ପାଦକ, ଓଡ଼ିଆ ସେମିନାର :**

ଶ୍ରୀ ସାନ୍ତନୁକୁମାର ଦାସ, ତୃତୀୟ ବର୍ଷ ଓଡ଼ିଆ ସମ୍ମାନ

**ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକଗଣ**

ଶ୍ରୀ ପଠାଣି ପଟ୍ଟନାୟକ, ଏମ. ଏ. ରିଡ଼ର ଓ ମୁଖ୍ୟ ଅଧ୍ୟାପକ

ଡକ୍ଟର ଶ୍ରୀ ଦେବେନ୍ଦ୍ର ମହାନ୍ତି, ଏମ. ଏ. ପି. ଏଚ. ଡି, ରିଡର

ଶ୍ରୀ ମୃତ୍ୟୁଞ୍ଜୟ ନାୟକ, ଏମ. ଏ. ରିଡ଼ର

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଏମ. ଏ. ରିଡ଼ର

ଶ୍ରୀ ମହେଶ୍ୱର ମହାନ୍ତି, ଏମ. ଏ. ଅଧ୍ୟାପକ

ଶ୍ରୀ ଭାସ୍କରଚନ୍ଦ୍ର ଖଟୋଇ, ଏମ. ଏ. ଅଧ୍ୟାପକ

ଶ୍ରୀ ପ୍ରଫୁଲକୁମାର ଦାସ, ଏମ. ଏ. ଅଧ୍ୟାପକ

ଶ୍ରୀ ପ୍ରାଣରଞ୍ଜନ ଦାସ, ଏମ. ଏ. ଅଧ୍ୟାପକ

# ନୀତି-ମୁକ୍ତାବଳୀ

'ଜନ୍ମିଲେ ମରଣ ବିଧିର ବିଧାନ
କାହାକୁ ନ ଅଛି ଜଣା ?
ଯାଇଛି ଯା ଛାଡ଼ି ନ ଆସେ ବାହୁଡ଼ି
ବୃଥା କପାଇଁ ଶୋଚନା ।

—ଫକୀରମୋହନ ସେନାପତି

ଇସଲାମ ଧର୍ମୁଁ ଶିଖ ବିଶ୍ୱାସର ମର୍ମ
ବୈରାଗ୍ୟ ଗୌରବ ରକ୍ଷାକାଙ୍କ୍ଷା ବୌଦ୍ଧଧର୍ମ ;
ଚୈତନ୍ୟଦେବଙ୍କ ଭକ୍ତି ଖ୍ରୀଷ୍ଟଧର୍ମ ପ୍ରୀତି
ଏହି ଗୃହଧର୍ମ ଶିକ୍ଷା ଦିଏ ଗୃହ ଗୀତି ।
ନ ବୁଝନ୍ତି ଆମ୍ଭପର ବ୍ରହ୍ମଜ୍ଞନଗଣ
ସର୍ବଶାସ୍ତ୍ର ସାର ତତ୍ତ୍ୱ କରନ୍ତି ଗ୍ରହଣ ।

—ଫକୀରମୋହନ ସେନାପତି

ଦେଖିଲି ବୁଲି ବହୁ ଦୂର, କାଞ୍ଚି କାମାକ୍ଷା କାନପୁର
ପାଇଲି ନାହିଁ ଖୁଜି ଘୁରି, ମୋ ମାତୃଭୂମିର ମାଧୁରୀ ।

—ଫକୀରମୋହନ ସେନାପତି

# ସଂପାଦକୀୟ

## ସାହିତ୍ୟ ଏକାଡେ଼ମୀ ପୁରସ୍କାର

୧୯୮୧ ମସିହା ପାଇଁ କେନ୍ଦ୍ର ସାହିତ୍ୟ ଏକାଡେ଼ମୀ ବିଭିନ୍ନ ଭାରତୀୟ ଭାଷା ପାଇଁ ୨୧ଟି ପୁରସ୍କାର ଘୋଷଣା କରିଛନ୍ତି । ସୁଖର କଥା ଯେ ଓଡ଼ିଶାର ଦୁଇଜଣ କୃତି ଲେଖକ ଏହି ପୁରସ୍କାର ଲାଭ କରି ଓଡ଼ିଶାର ଗୌରବ ବୃଦ୍ଧି କରିଛନ୍ତି । ଓଡ଼ିଆ ଭାଷା ପାଇଁ ଶ୍ରେଷ୍ଠ ଲେଖକ ହିସାବରେ ପୁରସ୍କୃତ ହୋଇଛନ୍ତି ଶ୍ରୀ ଅଖିଳମୋହନ ପଟ୍ଟନାୟକ ତାଙ୍କର ଗଳ୍ପ ସଂକଳନ "ଓ ଅନ୍ଧଗଳି" ପାଇଁ । ଶ୍ରୀ ପଟ୍ଟନାୟକ ସ୍ୱାଧୀନତା ପରବର୍ତ୍ତୀ କାଳର ଓଡ଼ିଆ ସାହିତ୍ୟରେ ଜଣେ ଶକ୍ତିଶାଳୀ ଗଳ୍ପ ଲେଖକ । "ଝଡ଼ର ଈଗଲ ଓ ଧରଣୀର କୃଷ୍ଣସାର" ଗଳ୍ପ ସଂକଳନ ପାଇଁ ସେ ପ୍ରଥମେ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରିଥିଲେ । ବଳିଷ୍ଠ ଚେତନାବୋଧ ଏବଂ ଦରଦୀ ଭାବମୂର୍ତ୍ତି, ଅପୂର୍ବ ମାନବିକତା ଏବଂ ସମ୍ବେଦନଶୀଳତା ପାଇଁ ଅଖିଳବାବୁଙ୍କ ଗଳ୍ପ ଏହି ଗୌରବର ଅଧିକାରୀ ହୋଇଅଛି ।

ଚଳିତ ବର୍ଷର ଆଉ ଜଣେ ପୁରସ୍କାର ପ୍ରାପ୍ତ ଓଡ଼ିଆ ଲେଖକ ହେଲେ ଶ୍ରୀ ଜୟନ୍ତ ମହାପାତ୍ର । ଓଡ଼ିଆର ଏହି ବରପୁତ୍ର ଇଂରେଜୀ ଭାଷାରେ କାବ୍ୟ ରଚନା କରି ସର୍ବଭାରତୀୟ କ୍ଷେତ୍ରରେ ଯଶସ୍ୱୀ ହେବା ଅତ୍ୟନ୍ତ ଗୌରବର କଥା । ସେ ତାଙ୍କର "ରିଲେସନସିପ୍" ପୁସ୍ତକ ପାଇଁ ଏହି ସ୍ୱୀକୃତି ଲାଭ କରିଅଛନ୍ତି । ଶ୍ରୀ ମହାପାତ୍ରଙ୍କର ଅନ୍ୟ ପ୍ରକାଶିତ ଲେଖାଗୁଡ଼ିକ ହେଲା— Close the sky, ten

by ten; Svayamvara & other poems; A rain of rites; A Father's Hours; Waiting; The False Start;

୧୯୭୦ ମସିହାରେ International who's who in Poetry, London ଙ୍କ ତରଫରୁ ସେ ବିଶିଷ୍ଟ ପୁରସ୍କାର ଲାଭ କରିଥିଲେ ଏବଂ Jacob Glatstein Memorial Award, Poetry, Chicago ମଧ୍ୟ ତାଙ୍କୁ ୧୯୭୫ରେ ଶ୍ରେଷ୍ଠ କବି ହିସାବରେ ସମ୍ମାନିତ କରିଥିଲେ । ଅଷ୍ଟ୍ରେଲିଆ, କାନାଡ଼ା, ଡେନମାର୍କ ଯୁକ୍ତରାଷ୍ଟ୍ରଆମେରିକା ଓ ଇଂଲଣ୍ଡ ପ୍ରଭୃତି ରାଷ୍ଟ୍ରର ବିଖ୍ୟାତ ପତ୍ରିକା ଗୁଡ଼ିକରେ ଶ୍ରୀ ମହାପାତ୍ରଙ୍କର କବିତା ସ୍ଥାନ ଲାଭ କରିଥାଏ ।

ଏହି ଅବସରରେ ଆମେ ଏହି ଦୁଇଜଣ ଓଡ଼ିଆ ଲେଖକଙ୍କୁ ଅଭିନନ୍ଦନ ଜଣାଉଅଛୁ ।

## ଓଡ଼ିଆ ସାହିତ୍ୟ ଏକାଡ଼େମୀ ପାଠଚକ୍ର

ଚଳିତ ବର୍ଷର ମାର୍ଚ୍ଚ ୫ ତାରିଖ ଓ ୬ ତାରିଖ ଏହି ଦୁଇ ଦିନ ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ସମ୍ବଲପୁର ସହରରେ ନାଟକ-ପାଠଚକ୍ର ଅନୁଷ୍ଠିତ ହୋଇଥିଲା । ଏହି ପାଠ-ଚକ୍ରରେ ଓଡ଼ିଶାର ବହୁ ପ୍ରବୀଣ ଓ ତରୁଣ ଗବେଷକ, ଅଧ୍ୟାପକ ଓ ନାଟକ ଲେଖକ ଅଂଶଗ୍ରହଣ କରିଥିଲେ । ନାଟକ ସାହିତ୍ୟର ବିଭିନ୍ନ ପ୍ରସଙ୍ଗକୁ ଆଧାର କରି ଅନେକ ଗୁଡ଼ିଏ ଉପାଦେୟ ପ୍ରବନ୍ଧ ଏଠାରେ ଆଲୋଚିତ ହୋଇଥିଲା । ଆଲୋଚନା-ପ୍ରବନ୍ଧ ଗୁଡ଼ିକ ପ୍ରକାଶିତ ହେଲେ ନିଶ୍ଚିତ ଭାବରେ ତାହା ନାଟ୍ୟ ସାହିତ୍ୟର ଆଲୋକ-ଆଲୋଚନାକୁ ସମୃଦ୍ଧ କରିବ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବହୁ ସାଂସ୍କୃତିକ ସମାରୋହ ଅନୁଷ୍ଠିତ ହେଉଥିବାରୁ ଏ ପ୍ରସଙ୍ଗରେ କିଛି ସୂଚନା ଦେବାର ଅଛି। ଭଞ୍ଜଜୟନ୍ତୀ, ଅଭିମନ୍ୟୁ ସ୍ମୃତି ସଭା, ସାରଳାମହୋତ୍ସବ, ପ୍ରଭୃତି ଆନୁକୂଲ୍ୟରେ ବର୍ଷବ୍ୟାପୀ ବହୁ ସାରସ୍ୱତ ଉତ୍ସବ ଅନୁଷ୍ଠିତ ହୋଇଥାଏ। ଅନୁଷ୍ଠାନର ଉଦ୍ୟୋକ୍ତାଗଣ ଏଥିରେ ପ୍ରଚୁର ଅର୍ଥର ବ୍ୟୟବିଧାନ କରିଥା'ନ୍ତି। ବେଳେବେଳେ ସ୍ମରଣିକା ମଧ୍ୟ ପ୍ରକାଶିତ ହୋଇଥାଏ। ଏଥି ସହିତ ସେମାନେ ପାଠଚକ୍ରର ଆୟୋଜନ କଲେ ଲିଖିତ ପ୍ରବନ୍ଧର ଆଲୋଚନା ଏହି ସାହିତ୍ୟ-ସମ୍ମେଳନକୁ ଅଧିକ ଋଦ୍ଧିମନ୍ତ କରିବ ବୋଲି ଆଶା କରାଯାଏ।

## ଫକୀରମୋହନ ସ୍ମରଣିକା

ଓଡ଼ିଆ ସାହିତ୍ୟରେ କବି ଫକୀରମୋହନ ଜଣେ ବହୁ-ଆଲୋଚିତ ସାହିତ୍ୟିକ ବ୍ୟକ୍ତିତ୍ୱ। ତଥାପି ଏହି ସଙ୍କଳନରେ ଫକୀରମୋହନଙ୍କ ସମ୍ପର୍କରେ କିଛି ନୂତନ ତଥ୍ୟ ପରିବେଷଣ କରାଯାଇଛି। ଆମର ବିଶ୍ୱାସ ତାହା ରସିକ-ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିବ।

ଏହି ସ୍ମରଣିକାକୁ ସାଫଲ୍ୟମଣ୍ଡିତ କରିବା ପାଇଁ ଯେଉଁ ଲେଖକଗଣ ଏବଂ ସହକର୍ମୀ ବନ୍ଧୁଗଣ ସହଯୋଗ ପ୍ରଦାନ କରିଛନ୍ତି ସେମାନେ ଆମର ଧନ୍ୟବାଦାର୍ହ।

## ଆମର ଗୌରବ

ଆମ ମହାବିଦ୍ୟାଳୟ ରସାୟନ ବିଭାଗର ଅଧ୍ୟାପକ ଶ୍ରୀ ନୀଳାମ୍ବର ବରାଳ ପଲିମର ବିଜ୍ଞାନରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପି. ଏଚ୍. ଡ଼ି. ଡିଗ୍ରୀଲାଭ କରିଅଛନ୍ତି। ଏଥି ପାଇଁ ସେ ଆମର ଅଭିନନ୍ଦନୀୟ।

# ସୂଚୀପତ୍ର

# ଚରମପତ୍ର-ଏକ ଆହତ ଆତ୍ମାର

ଡକ୍ଟର—ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି, ଏମ୍.ଏ ପି.ଏଚ୍.ଡି.

ଆମ୍ଭେ ଫକୀରମୋହନ ସେନାପତି, ପିତା ଲକ୍ଷ୍ମଣ ଚରଣ ସେନାପତି, ଜାତି ଖଣ୍ଡାଏତ, ବୟସ ୭୦ ବର୍ଷ, ପ୍ର-ସୁନାହାଟ, ମୌ-ମଲ୍ଲିକାଶପୁର-ଜି-ବାଲେଶ୍ୱର, ଚରମପତ୍ରମିଦଂ କାର୍ଯ୍ୟାଞ୍ଚ ଆଗେ ଯେହେତୁ ଆମ୍ଭର ଜୀବନକାଳ ଅବସାନ ପ୍ରାୟ—ଅତଏବ ଆମ୍ଭର ସ୍ୱଉପାର୍ଜିତ ସ୍ଥାବରାସ୍ଥାବର ସମସ୍ତ ସମ୍ପତ୍ତିର ବିହିତ ବନ୍ଦୋବସ୍ତ କରିଯିବାର ଆବଶ୍ୟକ । ଆମ୍ଭର ମୃତ୍ୟୁ ଉତ୍ତାରେ ଆମ୍ଭର ପରିତ୍ୟକ୍ତ ସମ୍ପତ୍ତିର ଯେ ରୂପ ବ୍ୟବସ୍ଥା ହେବ ସେଥିର ବନ୍ଦୋବସ୍ତ ବିଷୟ ଉଲ୍ଲେଖ କରୁଅଛୁଁ ।

୧-ଯେହେତୁ ଆମ୍ଭର ପୁତ୍ର ମୋହିନୀମୋହନ ସେନାପତି ତାହାର ଜ୍ଞାନଜାତ ହେବା ଦିନରୁ ଆମ୍ଭର ଶରୀର ପ୍ରତି ଆମ୍ଭର ଅର୍ଥ-ମାନ-ସମ୍ମାନ ପ୍ରତି ନିତାନ୍ତ ନିଷ୍ଠୁର ବ୍ୟବହାର ପ୍ରଦର୍ଶନ କରି ଆସୁଅଛି ଏବଂ ଆମ୍ଭଙ୍କୁ ନିତାନ୍ତ ଅକାରଣ କଷ୍ଟଦେବା ତାହାର କର୍ତ୍ତବ୍ୟ ବୋଲି ମନେ କରୁଅଛି । ପ୍ରକାଶ୍ୟ ରୂପେ ଆମ୍ଭଙ୍କୁ ଏବଂ ଆମ୍ଭର ସମସ୍ତ ସମ୍ପତ୍ତିକୁ ପରିତ୍ୟାଗ କରିଯାଇଅଛି, ଅତଏବ ସେ ଆମ୍ଭର ତ୍ୟାଜ୍ୟପୁତ୍ର । ଆମ୍ଭର ମୃତ୍ୟୁ ଉତ୍ତାରେ ଆମ୍ଭର ସମ୍ପତ୍ତିରେ ତାହାର କିଛିମାତ୍ର ଅଧିକାର ନାହିଁ, ଏବଂ ସେ ଧର୍ମଦ୍ରୋହୀ ନାସ୍ତିକ ଥିବା ହେତୁରୁ ଆମ୍ଭର ମୃତ୍ୟୁ ପରେ ଆମ୍ଭର ପରଲୋକ ଗତ ଆତ୍ମା ପ୍ରତି କୌଣସି ଶ୍ରାଦ୍ଧାଦି କରି ପାରିବ ନାହିଁ ।

୨-ଆମ୍ଭର ମୃତ୍ୟୁ ଉତ୍ତରେ ଆମ୍ଭର ବଧୂ ୰ ରଜନୀକାନ୍ତ ଘୋଷଙ୍କ କନ୍ୟା ଶ୍ରୀମତୀ ସ୍ୱର୍ଣପ୍ରଭା ଦେବୀ ତାହାର ଜୀବନକାଳ ପର୍ଯ୍ୟନ୍ତ ଆମ୍ଭର ପରିତ୍ୟକ୍ତ ସମସ୍ତ ପ୍ରକାର ସ୍ଥାବରାସ୍ଥାବର ସମ୍ପତ୍ତିର ଉତ୍ତରାଧିକାରିଣୀ ହେବେ । ସମସ୍ତ ସମ୍ପତ୍ତିର ଉପସତ୍ୱ ନିଜେ ଭୋଗ କରିବେ, ଏବଂ ତଦ୍‌ଦ୍ୱାରା ଆମ୍ଭର ନାତୁଣୀ ମୀରାବାଈ, ମୀରାବାଈ ଏବଂ ବୀଣାପାଣି ଦେଈଙ୍କୁ ସେମାନଙ୍କ ବିବାହକାଳ ପର୍ଯ୍ୟନ୍ତ ସାହାଯ୍ୟ କରିବେ । ଆମ୍ଭର କୌଣସି ପ୍ରକାର ସମ୍ପତ୍ତିକୁ ଦାନ ବିକ୍ରୟ ବା କୌଣସି ପ୍ରକାର ହସ୍ତାନ୍ତର କରିପାରିବେ ନାହିଁ । ନିମ୍ନଲିଖିତ କେତୋଟି ବିଷୟ ପାଳନ କରିବା ନିମନ୍ତେ ସ୍ୱର୍ଣପ୍ରଭା ଦେବୀ ସମ୍ପୂର୍ଣ୍ଣ ରୂପେ ବାଧ୍ୟ ରହିବେ ।

(କ) ପ୍ରତିବର୍ଷ ଭାଦ୍ର ଶୁକ୍ଳଦଶମୀ ଦିନରେ ଆମ୍ଭର ଧର୍ମ-ପରାୟଣା ସ୍ୱର୍ଗଗତା ସହଧର୍ମିଣୀ ୰ କୃଷ୍ଣକୁମାରୀ ଦେବୀଙ୍କର ବାଲେଶ୍ୱରସ୍ଥିତ ସମାଧି ସମ୍ମୁଖରେ ଏକଶତ ଟଙ୍କାର ଖାଦ୍ୟଦ୍ରବ୍ୟ ବନ୍ଧୁବାନ୍ଧବ ଓ ପ୍ରତିବେଶୀମାନଙ୍କୁ ବିତରଣ କରିବେ । ସ୍ୱର୍ଣପ୍ରଭା କିମ୍ବା ଯେ କୌଣସି ବ୍ୟକ୍ତି ଆମ୍ଭର ସମ୍ପତ୍ତିରେ ଅଧିକାରୀ ହେବେ ସେମାନେ ପ୍ରତିବର୍ଷ ଉକ୍ତ ସମାଧି ସମୀପରେ ଉକ୍ତ ପ୍ରକାର କ୍ରିୟା କରିବାକୁ ବାଧ୍ୟ ରହିବେ । ମୌଜା-ଚନ୍ଦ୍ରାଝଡ଼ାସ୍ଥିତ ଆମ୍ଭର ଶାନ୍ତିକାନନକୁ ସମ୍ପୂର୍ଣ୍ଣ ରୂପେ ହେପାଜତ କରିବେ ।

(ଖ) ଶ୍ରୀ ବାବୁ ଶ୍ରୀ କଣ୍ଠ ପଟ୍ଟନାୟକ ଅଦ୍ୟାବଧି ୩୫ ବର୍ଷ କାଳଯାବତ ଅତି ବିଶ୍ୱସ୍ତତା ସହିତ ଆମ୍ଭର ଗୁମାସ୍ତାଗିରି କରି ଆସୁଅଛି । ଅନେକ ପ୍ରକାର ମାଲିମକଦ୍ଦମା ବିପଦରୁ ଜମିଦାରିକୁ ରକ୍ଷା କରିଅଛି, ଏବଂ ତାହାର ତତ୍ତ୍ୱାବଧାନ ଦ୍ୱାରା ଆମ୍ଭର ବିଷୟ ସମ୍ପତ୍ତି ଉନ୍ନତି ଲାଭ କରିଅଛି ଏବଂ ସେ ଆମ୍ଭର ଏକମାତ୍ର

ବିଶ୍ୱାସୀ ଏବଂ ସହାନୁଭୂତିକାରୀ ବନ୍ଧୁ ଅଟେ । ସେ ଯାବତ୍‌ଜୀବନ ଆମ୍ଭ ସମ୍ପତ୍ତିରେ ମେନେଜର ସ୍ୱରୂପ ରହିବ ! ଏବଂ ଆୟ ବ୍ୟୟର ସମସ୍ତ ହିସାବ ହରଣପ୍ରିୟା ଦେବୀଙ୍କୁ ବୁଝାଇବ । ହରଣପ୍ରିୟା ଦେବୀ ଅଧିନସ୍ଥ କର୍ମଚାରୀ ବୋଲି ଶ୍ରୀ କଣ୍ଠ ଆପଣାକୁ ଜ୍ଞାନ କରିବ । ଆମ୍ଭ ଜମିଦାରି ଦଲିଲ ଦସ୍ତାବିଜ୍ ପ୍ରଭୃତି ଶ୍ରୀକଣ୍ଠ ପଟ୍ଟନାୟକଙ୍କ ଜିମାରେ ଅଛି, ସେ ସମସ୍ତ ହରଣପ୍ରିୟା ଦେବୀ ଭିନ୍ନ ଅନ୍ୟ କାହାରିକୁ ଦେବ ନାହିଁ । ଯେ କୌଣସି କାରଣରୁ ସେଇ ହରଣପ୍ରିୟା ଦେବୀ ଯଦି ଶ୍ରୀକଣ୍ଠ ପଟ୍ଟନାୟକଙ୍କୁ କର୍ମରୁ ବରଖାସ୍ତ କରେ ସେ ଆମ୍ଭ ସମ୍ପତ୍ତିରୁ ଯାବତ୍‌ଜୀବନ ମାସିକ ଟ ୭ ଙ୍କା ହିସାବରେ ପେନ୍‌ସନ୍ ପାଇବ ।

(ଗ) ଆମ୍ଭ ସମ୍ପତ୍ତି ବ୍ୟୟରେ ଶ୍ରୀକଣ୍ଠ ପଟ୍ଟନାୟକଙ୍କର ପୁତ୍ର ହରମୋହନ ପଟ୍ଟନାୟକଙ୍କୁ ଉଚ୍ଚ ଶିକ୍ଷା ଦିଆଯିବ । ତାହାର ୧୮ ବର୍ଷ ବୟସ ପର୍ଯ୍ୟନ୍ତ ବିଦ୍ୟାଶିକ୍ଷା ନିମନ୍ତେ ମାସିକ ଟ ୧୦ ଙ୍କା ହିସାବରେ ବୃତ୍ତି ପ୍ରାପ୍ତ ହେବ । ମାତ୍ର ସେ ଯଦି ପାଠରେ ଅମନୋଯୋଗୀ ହୁଏ କିମ୍ବା ପାଠ ତ୍ୟାଗ କରେ ଏହି ବୃତ୍ତି ରହିତ କରାଯିବ ।

(ଘ) ହରଣପ୍ରିୟା ଦେବୀଙ୍କର ଜୀବନକାଳ ଉତ୍ତାରେ ଯଦି ତାଙ୍କ ଗର୍ଭରୁ ପୁତ୍ରମାନେ ଜାତ ହୋଇଥାଆନ୍ତି ସେ ବା ସେମାନେ ଆମ୍ଭ ଅନ୍ତେ ସମ୍ପତ୍ତିରେ ଉତ୍ତରାଧିକାରୀ ହେବେ । ଅନ୍ୟଥା ଆମ୍ଭର ସମସ୍ତ ସମ୍ପତ୍ତି ଆମ୍ଭର ସ୍ୱର୍ଗଗତା ପତ୍ନୀ କୃଷ୍ଣକୁମାରୀ ଦେବୀଙ୍କ ନାମରେ ଉତ୍ସର୍ଗୀକୃତ ହେବ । ସେଥିର ଉପସତ୍ତ୍ୱରୁ ବାଲେଶ୍ୱରସ୍ଥ ବାଳିକା ବିଦ୍ୟାଳୟମାନଙ୍କୁ ପ୍ରଦତ୍ତ ହେବ । ବିଦ୍ୟାଳୟ ସମ୍ପାଦକମାନେ ଆପଣା ଆପଣା ପ୍ରାପ୍ୟ ଆଦାୟ କରିବାକୁ ଦାବି କରିବେ ।

୩—ଆମ୍ଭର ବଧୂ ହିରଣପ୍ରଭା ଦେବୀ ଯଦି ବାଲେଶ୍ୱର ସମ୍ପର୍କ ତ୍ୟାଗକରି ଚିରକାଳ ପାଇଁ ଅନ୍ୟତ୍ର ବାସ କରି କିମ୍ବା ଆମ୍ଭର ଲିଖିତ ସର୍ତ୍ତମାନ ତ୍ରୁଟି କରେ ତେବେ ଆମ୍ଭର ସମ୍ପତ୍ତି ଅଧିକାରରୁ ବିଚ୍ୟୁତ ହେବ । ଆମ୍ଭର ଦୃଢ଼ ବିଶ୍ୱାସ ଈଶ୍ୱର ବିଶ୍ୱାସିନୀ ଧର୍ମପରାୟଣା ବଧୂ ଅନ୍ତତଃ ଆତ୍ମ ଧର୍ମ ରକ୍ଷାକରି ଆମ୍ଭର ପରଲୋକଗତ ଆତ୍ମାର ତୃପ୍ତି ସାଧନ ନିମନ୍ତେ ଆମ୍ଭର ଲିଖିତ ସମସ୍ତ ବିଷୟ ସମ୍ପୂର୍ଣ୍ଣ ରୂପେ ପ୍ରତିପାଳନ କରିବ ।

୪—ଆମ୍ଭର ଧାର୍ମିକଜାମାତା ୰ ଗଙ୍ଗା ନାରାୟଣ ଚୌଧୁରୀଙ୍କ ପୁତ୍ର ରଘୁନାଥ ପ୍ରସାଦ ଚୌଧୁରୀଙ୍କୁ ଆମ୍ଭର ତ୍ୟକ୍ତ ସମ୍ପତ୍ତିର ତତ୍ତ୍ୱାବଧାରକ ସ୍ୱରୂପ ନିଯୁକ୍ତ କଲୁ । ବଧୂ ହିରଣପ୍ରଭା ଅଥବା ଯେ କୌଣସି ଲୋକ ଆମ୍ଭ ତ୍ୟକ୍ତ ସମ୍ପତ୍ତିର ଅଧିକାରୀ ହେବ ସେ ବାବୁ ରଘୁନାଥପ୍ରସାଦ ଚୌଧୁରୀଙ୍କ ପରାମର୍ଶ ଅନୁସାରେ ସମସ୍ତ କାର୍ଯ୍ୟ କରିବ । ଇତି । (୧)

ଶ୍ରୀ ଫକୀରମୋହନ ସେନାପତି — ୧୯ । ୬ । ୧୯୧୪

ଦସ୍ତଖତ — ଶ୍ରୀ କାଳନ୍ଦୀ ନାୟକ

---

(୧) ଫକୀରମୋହନଙ୍କ ଉଇଲ ବୋଲି କୁହାଯାଉଥିବା ଏକ ମୁଦ୍ରିତ ପତ୍ର ମୁଁ ଗତ ୧୪ । ୧ । ୮୧ ତାରିଖ ଦିନ ବାଲେଶ୍ୱରର ଶାନ୍ତିକାନନ ଠାରେ ଶ୍ରୀଯୁକ୍ତ ଅଦ୍ୱୈତାନନ୍ଦ ଦାସଙ୍କ ପାଖରୁ ପାଇଥିଲି । ଶ୍ରୀଯୁକ୍ତ ଦାସ ଫକୀରମୋହନ ସ୍ମୃତି କମିଟିର ପୂର୍ବତନ ସମ୍ପାଦକ, ତାଙ୍କର ଏହି ମହତ୍ତ୍ୱଦାନ ପାଇଁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ ।

ଜୀବନଶିଳ୍ପୀ କଥାସମ୍ରାଟ ଫକୀର ମୋହନଙ୍କର ଏହା ହିଁ ଥିଲା ଜୀବନର ନଗ୍ନ ରୂପ । ମାତ୍ର ବାସ୍ତବରେ ଏହି ଚରମ ପତ୍ରଟିରେ ଯେପରି ଯାହା ଉଲ୍ଲେଖ ହୋଇଛି ତାହା ତାଙ୍କ ଜୀବଦଶା ମଧ୍ୟରେ ବା ପରେ ପାଳିତ ହୋଇଛି କି ନାହିଁ ସେ ସମ୍ପର୍କରେ ସଠିକ୍ ଭାବେ କିଛି ଜଣାପଡ଼ି ନାହିଁ । ଫକୀରମୋହନ ନିଜ ଜୀବନର ସମସ୍ତ ଘଟଣାକୁ ଅତି ନିଷ୍କପଟ ଭାବରେ ଏବଂ ଅକୁଣ୍ଠ ଚିତ୍ତରେ ଲିପିବଦ୍ଧ କରି ଯାଇଅଛନ୍ତି । ତାଙ୍କ "ଆତ୍ମ-ଜୀବନ ଚରିତ" ସମଗ୍ର ଭାରତୀୟ ସାହିତ୍ୟରେ ଅନନ୍ୟସାଧାରଣ ସୃଷ୍ଟି ବୋଲି ସୁଖ୍ୟାତି ଅର୍ଜନ କରିଛି । ଏହି ଆତ୍ମଜୀବନ ଚରିତର ସର୍ବୋତ୍କୃଷ୍ଟ ଦିଗଟି ହେଉଛି ଚରିତକାର, ନିଜ ଜୀବନର ପ୍ରାୟ ସମସ୍ତ ପ୍ରମୁଖ ଘଟଣାବଳୀକୁ ଅତି ଅକପଟ ହୃଦୟରେ ଗଭୀର ଆନ୍ତରିକତାର ସହିତ ପ୍ରକାଶ କରିଛନ୍ତି । ସେଇଥି ପାଇଁ ଏହାକୁ ସ୍ପଷ୍ଟ ରୂପେ ଏକ କୁଣ୍ଠାହୀନ— ଆଡ଼ମ୍ବରହୀନ ନିଃସଙ୍କୋଚ ଆତ୍ମଚରିତ ବୋଲି ଗ୍ରହଣ କରି ନିଆଯାଇଛି । (୨)

୧୯୧୨ ମସିହା ଜୁନମାସ ୧୯ ତାରିଖରେ 'ଲେଖକଙ୍କ'ର କାଳନ୍ଦୀ ନାୟକଙ୍କ ଦ୍ୱାରା ଲିଖିତ ଏବଂ ଫକୀରମୋହନଙ୍କ ଦ୍ୱାରା ସ୍ୱାକ୍ଷରିତ ଏହି ଚରମ ପତ୍ର ବା ଉଇଲର ବିଷୟବସ୍ତୁକୁ ପାଠକଲେ ଏହି ଘଟଣାବଳୀର ଅନେକ ଚିତ୍ର ଆମ୍ଭେ ଆତ୍ମଜୀବନ ଚରିତରେ ଦେଖିବାକୁ ପାଉ ନ ଥାଏଁ । ଏହାର ଏକମାତ୍ର କାରଣ କୁଳବୃଦ୍ଧ ଫକୀରମୋହନ ନିଜ ଗୃହକଳିକୁ ଅତି ସହଜରେ ବାହାରେ ପ୍ରକାଶ କରିବାକୁ ଚାହିଁ ନାହାଁନ୍ତି । ଅତଏବ ଗଭୀର ଯନ୍ତ୍ରଣାରେ ଅସ୍ଥିର ହେଲେ ମଧ୍ୟ ପୁତ୍ର ଦ୍ୱାରା ଅପମାନ ଓ କ୍ଳେଶକୁ ଅତି ସହଜରେ ଆତ୍ମସ୍ଥ କରି ନେଇଛନ୍ତି । ପୁତ୍ର ମୋହିନୀମୋହନ ତତ୍କାଳୀନ

୨— ଫକୀରମୋହନ ସମୀକ୍ଷା— ସୁରେନ୍ଦ୍ର ମହାନ୍ତି— ପୃ -୧୭୨

ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ବାପାଙ୍କ କର୍ତ୍ତୃକ ଯେ କୌଣସି ବିରୁଦ୍ଧମନ୍ତବ୍ୟ ତାଙ୍କ ସୁଖ୍ୟାତିରେ ଆଂଚ ଆଣିବ—ଏହି ସମସ୍ତ କଥା ବିଗୃତିକୁ ନେଇ କ୍ଷମାଶୀଳ ପିତା ପୁତ୍ର ସହିତ ତାଙ୍କର ଏ ପ୍ରକାର ମନାନ୍ତରକୁ ତାଙ୍କ ଆତ୍ମଚରିତରେ ସ୍ଥାନ ଦେଇ ନାହାଁନ୍ତି । ମାତ୍ର ପିତାପୁତ୍ରଙ୍କ ମଧ୍ୟରେ ଥିବା ମନାନ୍ତର ଘଟଣା ବାଲେଶ୍ୱରର ଫକୀରମୋହନ ସାହିତ୍ୟ ପରିଷଦର ସ୍ମରଣିକା "ଫକୀରମୋହନ ପରିବାରରେ" ସାମାନ୍ୟ ଭାବରେ ସୂଚିତ ହୋଇଅଛି । ଡକ୍ଟର ମାୟାଧର ମାନସିଂ ତାଙ୍କ "ସରସ୍ୱତୀ ଫକୀରମୋହନ" ପୁସ୍ତକରେ ମୋହିନୀମୋହନ ସେନାପତିଙ୍କର ଅସଲ ସ୍ୱରୂପଟିକୁ ଲୋକଲୋଚନରେ ଉଦ୍‌ଘାଟିତ କରି ଦେଇଅଛନ୍ତି । ସେ ଲେଖିଛନ୍ତି, ଜରାଜୀର୍ଣ୍ଣ—ବ୍ୟାଧିଗ୍ରସ୍ତ ମୃତଦାରପିତାଙ୍କୁ ଏକ ଦୂର ଜାଗାରେ ଫୋପାଡ଼ି ଦେଇ ମୋହିନୀମୋହନ ନିଜ ଶିକ୍ଷା ଓ ପଦବୀର ଅମର୍ଯ୍ୟାଦା କରିଅଛନ୍ତି । ପିତାଙ୍କର କଟକ ଗୃହ ନିଜେ ମାଡ଼ିବସି ଜବରଦସ୍ତ ତାଙ୍କୁ ବାଲେଶ୍ୱରକୁ ପଠାଇଦେଇଛନ୍ତି । ଯେଉଁ ବୟସରେ ବୃଦ୍ଧ ପିତାମାତା ପୁତ୍ର ଓ ବଧୂର ସେବାଯତ୍ନକୁ ଏକାନ୍ତଭାବେ କାମନା କରିଥାଆନ୍ତି ସେଇ ମୁହୂର୍ତ୍ତରେ ଫକୀରମୋହନ କେତେକ ଅବିଶ୍ୱାସୀ ଚାକର ବାକରଙ୍କ ମେଳରେ ଅତି ନିଃସହାୟ ଅବସ୍ଥାରେ ବାଲେଶ୍ୱରଠାରେ କାଳାତିପାତ କରିଛନ୍ତି । ଖାଲି ସେତିକି ନୁହେଁ, ମୋହିନୀମୋହନ ଏଣେ ଦାର୍ଶନିକର ମୁଖାପିନ୍ଧି ଆତଯାତ ହେଉଥିଲେ ବି ବେଶ୍ ସଂସାର ଚତୁର ବ୍ୟକ୍ତିଥିଲେ । ଫକୀରମୋହନଙ୍କର ବୃଦ୍ଧ ଅବସ୍ଥାରେ କୌଣସି ପ୍ରକାର ଉପାର୍ଜନ ନ ଥିବାରୁ ସେ ତାଙ୍କର ପୁସ୍ତକଗୁଡ଼ିକର ପ୍ରକାଶନ ପାଇଁ ସମୟେ ସମୟେ ବାଲେଶ୍ୱରର କିଛିକିଛି ଜମି ବିକ୍ରି କରୁଥିଲେ । ପୁତ୍ର ମୋହିନୀମୋହନଙ୍କ ପକ୍ଷରେ ଏହା ଅସହ୍ୟ ହେବାରୁ ସେ କଟକ କୋର୍ଟରେ ବାପାଙ୍କ ବିରୁଦ୍ଧରେ ଗୋଟିଏ

ଦେବାନ୍ଙ୍କ ମୋକଦ୍ଦମା ଦାୟର କରିଥିଲେ, ଜରାଗ୍ରସ୍ତ ଫକୀରମୋହନ ବାଧ୍ୟ ହୋଇ ମକଦ୍ଦମା ଲଢ଼ିବାକୁ କଟକ ଆସୁଥିଲେ (୩)। ଡ଼କ୍ଟର ମାନସିଂ ପୁଣି ଲେଖିଛନ୍ତି ଯେ ଦର୍ଶନ ଅଧ୍ୟାପକ ଏହି ପୁତ୍ରଙ୍କ ଏକଦା କଟକ ବସାରେ ମକଦ୍ଦମା ସମ୍ପର୍କରେ ଫକୀରମୋହନଙ୍କ ସହିତ କଥାବାର୍ତ୍ତା ହେଉଥିଲାବେଳେ ରାଗରେ ଅଧୀର ହୋଇ ବାପାଙ୍କର ଶୁଣ୍ଡ଼ୁଟାକୁ ଟାଣି ଦେଇଥିଲେ । ପୁତ୍ର ପ୍ରଦତ୍ତ ଏହି ଅପମାନ ଜାତିର ଅଭିବନ୍ଦ୍ୟ ଶିଳ୍ପୀ ଫକୀରମୋହନଙ୍କୁ ଏତେ ନିଷ୍ଠୁର ଆଘାତ ଦେଇ-ଥିଲା ଯେ ସେ କଚେରୀକୁ ଯିବା ବାଟରେ ଘୋଡ଼ାଗାଡ଼ି ଭିତରେ ମୂର୍ଚ୍ଛିତ ହୋଇ ପଡ଼ିଥିଲେ (୪)।

ତେଣୁ ମନେହୁଏ, ଖୁବସମ୍ଭବ, କଟକରୁ ଫେରି ଫକୀରମୋହନ ଏହାର ଏକ ଚରମ ଏବଂ ଚୂଡ଼ାନ୍ତ ନିଷ୍ପତ୍ତି ନେବାର ପରିକଳ୍ପନା କରିଥାଇପାରନ୍ତି । ତେଣୁ ୭୦ ବର୍ଷ ବୟସରେ ଲେଖନକାର କାନଡ଼ୀ ନାୟକଙ୍କୁ ଡ଼ାକି ସେ ଏହି ଚରମପତ୍ର ବା ଉଇଲଟିକୁ ଲେଖିବାର ନିର୍ଦ୍ଦେଶ ଦେଇ ପାରିଥାନ୍ତି । ଏହି ଚରମପତ୍ରରେ ଫକୀରମୋହନଙ୍କ ପ୍ରାଣର ଯେଉଁ ବିକଳ ପ୍ରତିଧ୍ୱନି ପ୍ରତିଧ୍ୱନିତ ହୋଇଛି ତାର ଏକ ଝଙ୍କାର ପ୍ରାୟଶ୍ଚିତର ପୃଷ୍ଠାରେ ଦେଖିବାକୁ ମିଳେ । ଏକମାତ୍ର ପୁତ୍ର ନାସ୍ତିକ ଏବଂ ଧର୍ମଦ୍ରୋହୀ ବୋଲି ଉଇଲରେ ଉଲ୍ଲେଖ କରିଥିଲେ ବି ଆତ୍ମ ଜୀବନ ଚରିତରେ ପୁତ୍ର ସମ୍ପର୍କରେ ସେ ସମ୍ପୂର୍ଣ୍ଣ ନୀରବ ରହିଛନ୍ତି । ମାତ୍ର ପ୍ରାୟଶ୍ଚିତ ଉପନ୍ୟାସରେ ନାସ୍ତିକ-ମାନଙ୍କୁ ଉଦ୍ଦେଶ୍ୟ କରି ସେ ଯାହା କହିଛନ୍ତି ତାହା କେବଳ ମୋହିନୀମୋହନଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ମୋର ଦୃଢ଼ମତ । ସେ

---

(୩) ସରସ୍ୱତୀ ଫକୀରମୋହନ—ଡ଼ଃ ମାୟାଧର ମାନସିଂ ପୃ -୩୧୬ ରୁ ୩୧୭

(୪) ତତ୍ରୈବ ।

କହନ୍ତି"—ତୁମ୍ଭେ ପିଶାଚ ରାକ୍ଷସ ସର୍ପବଂଶକୁ ବିଶ୍ୱାସ କରିପାର ମାତ୍ର ସେଇ ନାସ୍ତିକ ବଂଶକୁ କଦାଚ ବିଶ୍ୱାସ କରିବ ନାହିଁ। ସେମାନଙ୍କ ମନ ମାନବସମାଜ ପ୍ରତି ଦୟା-ମାୟା ମମତ୍ୱ ଶୂନ୍ୟ। ନିଜର ସୁଖ ସମ୍ପଦ ଭୋଗ ସେମାନଙ୍କର ଏକମାତ୍ର ଲକ୍ଷ୍ୟ। ସେମାନଙ୍କର ଅସାଧ୍ୟ କୌଣସି ଦୁଷ୍କର୍ମ ନାହିଁ। (୫) ଅତଏବ ଏପରି ଏକ ନାସ୍ତିକ ଯେ ଶ୍ରଦ୍ଧାର ସହିତ ଶ୍ରାଦ୍ଧଦାନ କରିବ ଏଥିରେ ଦୂରଦ୍ରଷ୍ଟା ଫକୀରମୋହନଙ୍କର ସନ୍ଦେହ ହେବା ସ୍ୱାଭାବିକ। ସେଇଥି ପାଇଁ ହୁଏତ ସେ ଲେଖିଥିଲେ 'ଆମ୍ଭର ମୃତ୍ୟୁ ପରେ ଆମ୍ଭର ପରଲୋକଗତ ଆତ୍ମାପ୍ରତି ସେ କୌଣସି ଶ୍ରାଦ୍ଧାଦି କରି ପାରିବ ନାହିଁ।'' ଶିଳ୍ପୀଙ୍କ ସମ୍ଭାବନା ଏବଂ ମନସ୍କାମନା ଉଭୟ ପୂର୍ଣ୍ଣ ହୋଇଛି। ଆଜି ସମଗ୍ର ଉତ୍କଳର ଦୁଇକୋଟି ଜନତା ଯାହାର ଶ୍ରାଦ୍ଧ ପାଳନ କରୁଛନ୍ତି ତା'ର ପୁତ୍ରଦତ୍ତ ଶ୍ରାଦ୍ଧଟିଏ ପାଇଁ ବ୍ୟାକୁଳତା ରହିବା ବା କାହିଁକି ?

ଫକୀରମୋହନଙ୍କ ଚରିତ୍ରରେ "ପୁତ୍ର ପିତା-ଆତ୍ମାର-ପ୍ରତି-ରୂପ" ।" କୂଳର ଚନ୍ଦ୍ରମା ହୃଦୟର ସର୍ବସ୍ୱ । ମାତ୍ର ସେଇ ପୁତ୍ର ଯେତେବେଳେ ନିର୍ମମ ନିଷ୍ଠୁର ହୋଇଛି—ପିତାର ହୃଦୟ ସେତେବେଳେ ହାହାକାର କରି ଉଠିଛି। ଡାକପିଅନ ହରିସିଂହର ଅକଳନ ବ୍ୟାକୁଳତା, ଜମିଦାର ସାମନ୍ତ ବୈଷ୍ଣବ ପଟ୍ଟନାୟକଙ୍କର ବୈରାଗ୍ୟ ଆଉ ଶ୍ୟାମବନ୍ଧୁ ପଟ୍ଟନାୟକଙ୍କର ଅସ୍ଥିରତା—ଏସବୁର ମୂଳ କାରଣ ଡାକମୁନସି ଗୋପାଳ, କୁଆଁରବାବୁ ଓ ଚନ୍ଦ୍ରମଣି। ଏମାନଙ୍କ ମଧ୍ୟରୁ ଶ୍ୟାମବନ୍ଧୁ ପଟ୍ଟନାୟକଙ୍କ ସହିତ ଫକୀରମୋହନଙ୍କର ଆତ୍ମିକ ସାଦୃଶ୍ୟ ଥିବାର ଲକ୍ଷ୍ୟ କରାଯାଏ। ପୁତ୍ର ଚନ୍ଦ୍ରମଣିକୁ କୌଣସି ପ୍ରକାରେ ସୁପଥକୁ ଆଣି ନ ପାରି ବିରକ୍ତିରେ ସେ ତାଙ୍କର ସମସ୍ତ

(୫) ପ୍ରାୟଶ୍ଚିତ—ଫ. ମୋ. ଗ୍ର. ବ. ୨ୟ ଖଣ୍ଡ—ପୃଷ୍ଠା ୩୬୦

ସ୍ଥାବର ସ୍ଥାବର ସମ୍ପତ୍ତି ପୁତ୍ରବଧୂ ସୁଲୋଚନାଙ୍କ ନାମରେ ଉଇଲ କରି ଦେଇଥିଲେ । ଜୀବନଶିଳ୍ପୀ ଫକୀରମୋହନ ତାଙ୍କ ବିପୁଳ ଅଭିଜ୍ଞତାରୁ ବୁଝିଥିଲେ ନାରୀ ଶକ୍ତିମୟୀ । ସେ ଚାହିଁଲେ ଅମଣିଷକୁ ମଣିଷ କରି ପାରିବ, ସେ ଯଦି ଚାହିଁବ ମଣିଷ ମଧ୍ୟ ଅମଣିଷ ହୋଇଯିବ । (An woman can make or can break a man) ସେଇ ମହତ ଉଦ୍ଦେଶ୍ୟକୁ ଆଖିରେ ରଖି ନିଜର ସମସ୍ତ ସ୍ଥାବର ସ୍ଥାବର ସମ୍ପତ୍ତିର ଦାୟିତ୍ୱ ନିଜ ପୁତ୍ରବଧୂ ହରପ୍ରିୟା ଦେବୀଙ୍କ ଉପରେ ନ୍ୟସ୍ତ କଲେ । ତାଙ୍କର ପରିପୂର୍ଣ୍ଣ ବିଶ୍ୱାସ ଈଶ୍ୱର ବିଶ୍ୱାସିନୀ ଧର୍ମପରାୟଣା ଏହି ନାରୀଟି ତାଙ୍କର ସମସ୍ତ ନିର୍ଦ୍ଦେଶ ମାନି ଚଳିବ । ୧୯୦୯ ମସିହାରେ ଫକୀରମୋହନ ଏକ ବିରାଟ ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲେ । ଭେଦ ରୋଗରୁ ମୁକ୍ତି ପାଇବା ପାଇଁ ଗୁମାସ୍ତା ଶ୍ରୀକଣ୍ଠ ପଟ୍ଟନାୟକ ତାଙ୍କୁ ଗନ୍ଧକ (ସଲଫୁରିକଏସିଡ଼) ଦ୍ରାବକ ପିଆଇ ଦେଇଥିଲେ—ଏଥିରେ ଫକୀରମୋହନଙ୍କ ଜୀବନ ସଙ୍କଟାପନ୍ନ ହୋଇଥିଲା । ଏଇ ସମୟରେ ତାଙ୍କର ପୁତ୍ରବଧୂ ହରପ୍ରିୟା ଦେବୀ ଗଭୀର ଆନ୍ତରିକତା ଓ ନିଷ୍ଠାର ସହ ତାଙ୍କର ସେବା ଯତ୍ନ କରିଥିଲେ । ହରପ୍ରିୟା ଦେବୀଙ୍କ ସେବା ଓ ଯତ୍ନ ଯୋଗୁ ଫକୀରମୋହନ ପୁନର୍ଜୀବନ ପାଇଲେ । ଅତଏବ କୃତଜ୍ଞ ଶ୍ୱଶୁର ପୁତ୍ରବଧୂଙ୍କ ପ୍ରତି ନିଜ ଆତ୍ମ-ଚରିତରେ ନିମ୍ନୋକ୍ତ ମତେ ମନ୍ତବ୍ୟ ଛାଡ଼ି ଯାଇଅଛନ୍ତି—"ଜନନୀ କ୍ଷୁଦ୍ର ଶିଶୁକୁ ଲାଳନପାଳନ କଲାପରି ବଧୂମାତା ସେ ସମୟରେ ମୋତେ ରକ୍ଷା କରୁଥିଲେ । ମୋହର ମୁଖବନ୍ଦ, ନେତ୍ରମୁଦ୍ରିତ,—ପ୍ରସାବ କରିବାକୁ ହେଲେ ଦୁଇତିନି ଜଣ ଲୋକ ଅତି ସାବଧାନରେ ଉଠାଇ ବସାନ୍ତି । ଦୁଇ ତିନିଜଣ ବୈଦ୍ୟ ପାଖରେ ଉପସ୍ଥିତ ଥାଇ ବସିଥାନ୍ତି । ମୁହୂର୍ତ୍ତ

ମାତ୍ର ପଙ୍ଖା ବନ୍ଦ ହେଲେ ସର୍ବାଙ୍ଗ ଜଳଉଠେ । ×××ରାତି ଦଶଟା ପରେ ସମସ୍ତେ ଶୟନ କଲା ଉତ୍ତାରେ ପଙ୍ଖା କରୁଥିବା ଚାକରମାନେ ମଧ୍ୟ ଶୋଇପଡନ୍ତି । ବଧୂମାତା ଅନେକ ରାତିରେ ନିଜେ ପଙ୍ଖାଟି ଧରି ଭୋର ପର୍ଯ୍ୟନ୍ତ ମୋତେ ବାଞ୍ଚିବାରେ ଲାଗିଥାନ୍ତି । ଶେଷ ରାତିରେ ମୋତେ ବାଞ୍ଚୁ ବାଞ୍ଚୁ ନିଦରେ ତାଙ୍କ ମୁଣ୍ଡ ଭୂଇଁରେ ଲାଗି ଯାଉଥାଏ ।" (୭) ଖାଲି ଏତିକି ନୁହେଁ ହିରଣପ୍ରଭା ଦେବୀଙ୍କ-ଠାରେ ଆହୁରି ଅନେକ ସଦ୍‌ଗୁଣ ସେ ଲକ୍ଷ୍ୟ କରିଛନ୍ତି । ପିତା ଓ ପୁତ୍ରଙ୍କ ଉଚ୍ଚବାଚ ସମୟରେ ସେ ଅନେକ ସମୟରେ ପିତୃପକ୍ଷ ସମର୍ଥନ କରି ସ୍ୱାମୀଙ୍କୁ ଆକଟ କରିଛନ୍ତି । ଅତଏବ ପୁତ୍ରର ବ୍ୟବହାରରେ ଏକାନ୍ତ କ୍ଷୁବ୍‌ଧ ଏବଂ ପିତା, ତାଙ୍କର ଉତ୍ତରାଧିକାରୀ ନିର୍ଣ୍ଣୟବେଳେ ସର୍ବପ୍ରଥମେ ହିରଣପ୍ରଭା ଦେବୀଙ୍କୁହିଁ ସ୍ମରଣ କରିଛନ୍ତି । ବିବାହ ବୟସ ହେବା ପର୍ଯ୍ୟନ୍ତ ହିରଣପ୍ରଭା ଦେବୀ ତାଙ୍କ କନ୍ୟା-ମାନଙ୍କ ପାଇଁ ସମସ୍ତ ଖର୍ଚ୍ଚ ଏବଂ ସମ୍ପତ୍ତିର ଆୟରୁ କରିପାରିବାର କ୍ଷମତା ପାଇଛନ୍ତି । ପୁନଶ୍ଚ ଫକୀରମୋହନ ପୁତ୍ରବଧୂର, ଭବିଷ୍ୟତର ଅନାଗତ ପୁତ୍ରସନ୍ତାନ ପାଇଁ, ନିଜସମ୍ପତ୍ତିର ମାଲିକାନା ଉନ୍ମୁକ୍ତ ରଖିଛନ୍ତି ଯଦି ଦୁର୍ଭାଗ୍ୟକ୍ରୁ ପୁତ୍ର ସନ୍ତାନ ସମ୍ଭବ ନ ହୁଏ ତେବେ ସେ ସମସ୍ତ ସମ୍ପତ୍ତି ନିଜର ପ୍ରିୟତମା ପତ୍ନୀ କୃଷ୍ଣକୁମାରୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହେବ । ସମ୍ପତ୍ତିର ଆୟ ବାଲେଶ୍ୱରର ବାଳିକା ବିଦ୍ୟାଳୟମାନଙ୍କୁ ଉନ୍ନତିମୂଳକ କାର୍ଯ୍ୟ ପାଇଁ ପ୍ରଦାନ କରାଯିବ ।

ପତ୍ନୀଗତପ୍ରାଣବୃଦ୍ଧଫକୀରମୋହନ ୭୦ ବର୍ଷ ବୟସରେ ମଧ୍ୟ କୃଷ୍ଣକୁମାରୀଙ୍କର ପବିତ୍ର ସ୍ମୃତିକୁ ବାରମ୍ବାର ରୋମନ୍ଥନ କରିଛନ୍ତି । ଏକମାତ୍ର ପୁତ୍ରର ନାସ୍ତିକ ଭାବ ଦେଖି ଚରମପତ୍ରରେ

(୭)—ଆତ୍ମଜୀବନ ଚରିତ, ଫ. ମୋ. ଗ୍ର. ବ. ୧ମ ଖଣ୍ଡ ପୃ-୧୧୧

ପୁତ୍ରବଧୂ ପ୍ରତି ପ୍ରଥମ ନିର୍ଦ୍ଦେଶ ରହିଛି—ପ୍ରତିବର୍ଷ ଭାଦ୍ର ଶୁକ୍ଳ ଦଶମୀ ଦିନରେ କୃଷ୍ଣକୁମାରୀଙ୍କର ବାଲେଶ୍ୱରସ୍ଥିତ ସମାଧି ସମ୍ମୁଖରେ ଏକଶତ ଟଙ୍କାର ଖାଦ୍ୟଦ୍ରବ୍ୟ ବନ୍ଧୁବାନ୍ଧବ ଓ ପ୍ରତିବେଶୀମାନଙ୍କୁ ବିତରଣ କରିବା ପାଇଁ । ହିରଣପ୍ରଭାଙ୍କ ଅନ୍ତେ ପରିବର୍ତ୍ତିତ ଅବସ୍ଥାରେ ଅନ୍ୟ ଯେ କେହି ଫକୀରମୋହନଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହେବ ସେ ନିଶ୍ଚୟ ଏହି ନିର୍ଦ୍ଦେଶମାନ କାର୍ଯ୍ୟ କରିବ । କୃଷ୍ଣକୁମାରୀଙ୍କର ନିଷ୍ପାପ, ଭକ୍ତିମନ୍ତ ବ୍ୟକ୍ତିତ୍ୱ ପାଇଁ ପ୍ରତିଭାଧର ସ୍ୱାମୀ ଫକୀର-ମୋହନଙ୍କର ଏହା ଏକ ଯଥାର୍ଥ ଶ୍ରଦ୍ଧାଞ୍ଜଳୀ ।

ଘାତ-ପ୍ରତିଘାତ- ସଂକୁଳ ଜୀବନଯାତ୍ରାରେ ଫକୀରମୋହନ କମ ହନ୍ତସନ୍ତ ହୋଇ ନାହାନ୍ତି । ବ୍ୟାଧି ଏବଂ ବିପଦ ତାଙ୍କର ନିତ୍ୟ ସହଚର ଥିଲ । ମାତୃଗର୍ଭରୁ ଭୂମିଷ୍ଟ ହେଉ ହେଉ ସେ ହରାଇଥିଲେ ଅପିତାଆଣି । (ଜ୍ୟେଷ୍ଠଭ୍ରାତା ଚୈତନ୍ୟଙ୍କ ଅକାଳ ବିୟୋଗ ଯୋଗୁ) ଏକବର୍ଷ ପାଞ୍ଚମାସ ବୟସରୁ ବାପାଙ୍କୁ, ଦୁଇବର୍ଷ ସାତମାସ ବୟସରୁ ମାତାଙ୍କୁ,—ପ୍ରାରମ୍ଭ ଯୌବନରେ ଜୀବନଦାତ୍ରୀ ମଙ୍ଗଳା-କାଙ୍କ୍ଷିଣୀ ଠାକୁମା'ଙ୍କୁ ଏବଂ ଯୌବନରେ ପ୍ରଥମା ଓ ଦ୍ୱିତୀୟା ପତ୍ନୀଙ୍କୁ ସେ ହରାଇଥିଲେ । ପ୍ରାଣପ୍ରତିମ ପୁତ୍ର ମନମୋହନ, ମନ ଉଦ୍ୟାନକୁ ମରୁରେ ପରିଣତ କରି, ଅବେଳାରେ ଚାଲିଯାଇଥିଲ । ଏହି ସମସ୍ତ ନିଦାରୁଣ ବିଧିଦତ୍ତ ବିପଦ ସାଙ୍ଗକୁ, ବିପକ୍ଷ ଜ୍ଞାତି କୁଟୁମ୍ବ ଓ ଅନେକ ପ୍ରଚ୍ଛନ୍ନ ଶତ୍ରୁଙ୍କ ଉତ୍ପାତ, ତାଙ୍କୁ ବହୁଭାବରେ ବ୍ୟସ୍ତ ବିବ୍ରତ କ୍ଷତବିକ୍ଷତ କରିଥିଲ । ଚିର-ଏକାକୀ ସଂଗ୍ରାମୀ ସେହି ସେନାପତି, ସମ୍ପୂର୍ଣ୍ଣ ନିଃସଙ୍ଗ ଅବସ୍ଥାରେ ବାଲେଶ୍ୱରଠାରେ ନିର୍ଜନ-ବାସ କରିଛନ୍ତି । ଏହି ସମୟରେ ତାଙ୍କର ଏକମାତ୍ର ସହାୟକ—ଶ୍ରୀକଣ୍ଠ ପଟ୍ଟନାୟକ । ସେ ଫକୀରମୋହନଙ୍କ ପାଇଁ ସାଧାରଣ ବେତନଭୋଗୀ ଗୁମାସ୍ତା ନୁହନ୍ତି, ବନ୍ଧୁ ଏବଂ ସୋଦର ମଧ୍ୟ । ଫର୍ଦ୍ଦ

୩୫ ବର୍ଷକାଳ ଅତି ବିଶ୍ୱସ୍ତ ଭାବରେ ସେ ଫକୀରମୋହନଙ୍କୁ ସେବାଦାନ କରିଛନ୍ତି । ଅନେକ ପ୍ରକାର ମାମଲାମକଦମା ବିପଦରୁ ତାଙ୍କୁ ଏବଂ ତାଙ୍କ ଜମିଦାରିକୁ ରକ୍ଷା କରିଛନ୍ତି । ଆନ୍ତରିକ ନିଷ୍ଠା ଓ ସୁ-ତତ୍ତ୍ୱାବଧାନ ବଳରେ ଫକୀରମୋହନଙ୍କ ବିଷୟ ସମ୍ପତ୍ତିରେ ବିପୁଳ ଉନ୍ନତି ସାଧନା କରିଅଛନ୍ତି । ଅତଏବ ଫକୀରମୋହନ ଶ୍ରୀକଣ୍ଠଙ୍କ ନିକଟରେ ବହୁତ ଭାବରେ କୃତଜ୍ଞ । ତାଙ୍କ ଅନ୍ତେ ତାଙ୍କ ଉତ୍ତରାଧିକାରିଣୀ କାଳେ କୌଣସି କାରଣରୁ ଶ୍ରୀକଣ୍ଠଙ୍କୁ ଅନୁଚିତ ବ୍ୟବହାର କରିବେ ସେଥିପାଇଁ ଉଇଲରେ ତାଙ୍କର ସତର୍କ ନିର୍ଦ୍ଦେଶ ତାଙ୍କ ଭୃତ୍ୟବତ୍ସଳତାର ଜୟଗାନ କରିଛି ।

ମାନବବାଦୀ ଶିଳ୍ପୀ ଫକୀରମୋହନ କେବେ ସରକାରୀ ଚାକିରିଆ ନ ଥିଲେ—ତେଣୁ ପେନସନ ତାଙ୍କ ପାଇଁ ସ୍ୱପ୍ନ ଥିଲା । ମାତ୍ର ସେ ନିଜର ବିଶ୍ୱସ୍ତ କର୍ମଚାରୀର ନିଷ୍ଠା ଓ କର୍ତ୍ତବ୍ୟ ପରାୟଣତାକୁ ସମ୍ମାନ ଦେଇ ପେନସନ ବ୍ୟବସ୍ଥା କରିଥିଲେ । ଖାଲି ସେତିକି ନୁହେଁ ଶ୍ରୀକଣ୍ଠ ଟିକାୟତଙ୍କ ପୁତ୍ର ଶ୍ରୀମାନ ହରମୋହନ ଟିକାୟତଙ୍କୁ ୧୮ ବର୍ଷ ହେବା ପର୍ଯ୍ୟନ୍ତ ମାସିକ ଟ୧୦ଙ୍କା କରି ବୃତ୍ତି ଦେବା ପାଇଁ ସିଦ୍ଧାନ୍ତ ନେଇଥିଲେ । ଏପରି ମାନବିକ ବ୍ୟବହାର ଆଜିର ସଭ୍ୟ ମାର୍ଜିତ ସମାଜରେ ମଧ୍ୟ ଦୁର୍ଲ୍ଲଭ ।

ମଧୁସୂଦନଙ୍କ ପରି ଫକୀରମୋହନଙ୍କ ଜୀବନ, ଏକ ଦୀର୍ଘ ବିସ୍ତୀର୍ଣ୍ଣ ରଣକ୍ଷେତ୍ର ଥିଲା । ଅହରହ ସଂଗ୍ରାମ କରି କରି ଶେଷ ଜୀବନକୁ ସେ ସମ୍ପୂର୍ଣ୍ଣ କ୍ଳାନ୍ତ ଓ ଅବଶ ହୋଇ ପଡ଼ିଥିଲେ । ତଥାପି ବି ବିପଦ ମୁହୂର୍ତ୍ତରେ ମଧୁବାବୁଙ୍କ ରକ୍ତରେ ମଣିମଲ୍ଲ ଜେଗିଁ ଉଠୁଥିଲା ପରି ଫକୀରମୋହନଙ୍କ ରକ୍ତ କଣିକାରେ ହନୁମଲ୍ଲ ଜେଗିଁ ଉଠୁଥିଲେ । ତେଣୁ ଦୁର୍ଗତଙ୍କୁ ରକ୍ଷା କରିବା ନିରାଶ୍ରୟଙ୍କୁ ଆଶ୍ରୟ ଦେବା—ଆଶ୍ରିତ ସେବାକାରୀମାନଙ୍କୁ ବାତ୍ସଲ୍ୟରେ ବାନ୍ଧି ରଖିବା—ଅବାଧ୍ୟକୁ ଶାସ୍ତି

ଦେବା—କ୍ଷମାପ୍ରାର୍ଥୀଙ୍କୁ କ୍ଷମାଦେବା ଇତ୍ୟାଦି ମହତ୍ତ୍ୱ ଗୁଣ ଗୁଡ଼ିକ ଫକୀରମୋହନଙ୍କ ବ୍ୟକ୍ତିତ୍ୱର ଏକ ଅପୂର୍ବ ପରିପ୍ରକାଶ । ପୂର୍ବୋକ୍ତ ଉକ୍ତିଟିରେ ଆମ୍ଭେ ଫକୀରମୋହନଙ୍କର ଏହି ବ୍ୟକ୍ତିତ୍ୱର ପରିଚୟ ପାଉ । ଜରାର ନିଷ୍ଠୁର ଆକ୍ରମଣ, ବ୍ୟାଧି ଏବଂ ଯନ୍ତ୍ରଣାର ଶେଲାଘାତ ଦାବି ତାଙ୍କ ଅନ୍ତିମ ମୁହୂର୍ତ୍ତମାନଙ୍କୁ ଅଶାନ୍ତ ଓ ଅସ୍ତବ୍ୟସ୍ତ କରୁଛି ସତ-ମାତ୍ର ଏହି ନିଃସଙ୍ଗ ସୈନିକ କେଉଁଠି ହେଲେ ବି ବସି ପଡ଼ିଥିବାର ଦେଖାଯାଇନି ।



# ଫକୀରମୋହନ କଥା-ସାହିତ୍ୟର ସମସ୍ୟପରିଧି : ଏକ ଦୃଷ୍ଟିପାତ

ଶ୍ରୀ କୃଷ୍ଣଚନ୍ଦ୍ର ଷଡଙ୍ଗୀ ବି. ଏ (ଅନର୍ସ)
(ସ୍ନାତକ ସମ୍ମାନ ଛାତ୍ର)

ଆଧୁନିକ ଓଡ଼ିଆ ସାହିତ୍ୟର ଆବିର୍ଭାବରେ ବ୍ୟାସକବି ଫକୀରମୋହନ ସେନାପତି ଏକ ପ୍ରଚଣ୍ଡ ବିସ୍ମୟ । କେବଳ ଗୀତି-କବିତା ବା ଅନୁବାଦରେ ନୁହେଁ, କ୍ଷୁଦ୍ରଗଳ୍ପ, ଉପନ୍ୟାସରେ ମଧ୍ୟ ନିଜର ସାରସ୍ୱତ ପ୍ରତିଭାର ପରିଚୟ ଦେଇଅଛନ୍ତି । ଗଡ଼ିଆସୁଥିବା ସାହିତ୍ୟର ଧାରାକୁ ପରିବର୍ତ୍ତନ କରି ଏକ ନୂତନ ସ୍ରୋତ ସୃଷ୍ଟି କରିଥିବାରୁ ଏବଂ ସମସାମୟିକ ସାମାଜିକ ଚେତନାର ସାର୍ଥକ ରୂପାୟନ କରିଥିବାରୁ ତାଙ୍କୁ ଯୁଗସ୍ରଷ୍ଟା ଆଖ୍ୟା ଦିଆଯାଇ ପାରେ । ସେ ଯଥାର୍ଥରେ ଓଡ଼ିଶାର ସାମାଜିକ ଜୀବନର ରୂପକାର; ଅନ୍ୟ ଅର୍ଥରେ ସେନାପତି ସାହିତ୍ୟହିଁ ଓଡ଼ିଆ ସମାଜ-ଜୀବନର ସାର୍ଥକ ପ୍ରତିଛବି । ଡ. ମାୟାଧର ମାନସିଂହଙ୍କ ଭାଷାରେ" The story of Fakirmohana Senapati is indeed the story of the renaissance of oriya national life and of oriya literature in the 19th century" (୧)

**ଲଛମା—**

ଆଲିବର୍ଦ୍ଦିଖାଁ ୧୭୪୦ ମସିହା ବେଳକୁ ବଙ୍ଗଳା ଓଡ଼ିଶା, ବିହାରର ନବାବ ହେଲେ (*) ସେତେବେଳକୁ ଦିଲ୍ଲୀରେ ମୋଗଲ

(*) "ତୁର୍କ ଅରବ ଦେଶର ଜଣେ ଭାଗ୍ୟାନ୍ୱେଷଣକାରୀ ନିଃସ୍ୱ ପୁରୁଷ ୪୪ ବର୍ଷ ବୟସରେ ୧୭୪୦ ସାଲରେ ଓଡ଼ିଶା ସୁବାରେ ସାମାନ୍ୟ

ବାଦଶାହ ନାମକୁ ମାତ୍ର ସମ୍ରାଟ ଥିଲେ । ଉପାନ୍ତ ଅଞ୍ଚଳର ଶାସନ କାର୍ଯ୍ୟ ପରିଚାଳନା କରିବା ନିମନ୍ତେ ତାଙ୍କର ସାମର୍ଥ୍ୟ ନ ଥିଲା । ଅନ୍ୟ ପକ୍ଷରେ ନବାବ ଆଲିବର୍ଦ୍ଦି ଖାଁଙ୍କର ରାଜଧାନୀ ମୁର୍ଶିଦାବାଦ ଓଡ଼ିଶାଠାରୁ ବହୁ ଦୂରରେ ଥିଲା । ତେଣୁ ନାଗପୁର ଅଞ୍ଚଳର ମରହଟ୍ଟା ବର୍ଗୀମାନେ ଓଡ଼ିଶାରେ ବାରମ୍ବାର ଲୁଣ୍ଠନ କରୁଥିଲେ । ଡ. ମାନସିଂହ କହନ୍ତି "ମୋଗଲ ଶାସନରେ 'ଓଡ଼ିଶା ସୁବ୍‌ବା' ସେ ପର୍ଯ୍ୟନ୍ତ ମଧ୍ୟ ଗଙ୍ଗାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଆଜି ପଶ୍ଚିମବଙ୍ଗର ଯାହା ଦକ୍ଷିଣ ପଶ୍ଚିମାଂଶ, ତାହା ସେଦିନ ପୁରାପୁରି ଓଡ଼ିଆ ରାଜ୍ୟ ଥିଲା । ବର୍ଗୀମାନଙ୍କ ଅତ୍ୟାଚାର ପ୍ରକୃତରେ ଦେଖିଥିଲେ ଓଡ଼ିଆ ଭୂମ୍ୟାଧିକାରୀ ଓ ପ୍ରଜାମାନେ ।" (୩) ୧୭୪୨ ମସିହା ଓ ୧୭୪୩ ମସିହାର ବର୍ଗୀ ଅତ୍ୟାଚାରରେ ବ୍ୟତିବ୍ୟସ୍ତ ହୋଇ ଆଲିବର୍ଦ୍ଦି ଖାଁ କଟକରେ ସନ୍ଧିଛଳରେ ବର୍ଗୀନେତା ଭାସ୍କର ପଣ୍ଡିତଙ୍କୁ ମାନକର ପର୍ଯ୍ୟନ୍ତ ନେଇ ଆସି ହତ୍ୟା କରିଥିଲେ । ଫଳରେ ବର୍ଗୀମାନେ ୧୭୪୮-୪୯ ମସିହା ବେଳକୁ ଓଡ଼ିଶା ଅଧିକାର କରିବସିଲେ । ୧୭୫୧ ମସିହା ମେ-ଜୁନ୍ ମାସ ବେଳକୁ ନବାବ ଆଲିବର୍ଦ୍ଦି ଖାଁ

---

ବେତନରେ ନିଯୁକ୍ତ ହୁଅନ୍ତି । ନିଜର ପ୍ରଖର ବୁଦ୍ଧି, କାର୍ଯ୍ୟତତ୍ପରତା ଓ ସୁଚତୁରତା ହେତୁ ସେ ୧୦ ବର୍ଷରେ ୧୭୩୩ ସାଲରେ ବିହାରର ଗଭର୍ଣ୍ଣର ହୁଅନ୍ତି । ଏହି ବାଦ ପରେ ବଙ୍ଗଳା ( ମାର୍ଚ୍ଚ ୧୭୪୦ ) ଓ ଓଡ଼ିଶା ( ଡିସେମ୍ବର '୭୪୧ ) ଅଧିକାର କରି ସମଗ୍ର ବଙ୍ଗ, ବିହାର, ଓଡ଼ିଶାର ନବାବ ପଦ ଲାଭ କରନ୍ତି । ଇତିହାସ ଏହି ନବାବଙ୍କୁ ଆଲିବର୍ଦ୍ଦି ଖାଁ ନାମରେ ପରିଚୟ ଦିଏ ।" (୨)

ମରହଟ୍ଟାମାନଙ୍କୁ ଓଡ଼ିଶା ଶାସନଭାର ଅର୍ପଣ କରି ବଙ୍ଗ-ବିହାରକୁ ରକ୍ଷା କରିଥିଲେ । (**)

---

ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶା ଇତିହାସ ( History of Orissa ) ରେ ଉଲ୍ଲେଖ କରିଛନ୍ତି—

(**) "When Murshid Kuli Khan II was defeated at Balasore and fled to Muslipatam in 1740 A.D. , his friend and faithful follower, Mir Habib went direct to Raghuji Bhonsla of Nagpur to secure his assistance to drive out the treacherous Alivardi Khan from Orissa and Bengal. The ambitious Raghuji readily agreed to the proposal and sent a huge army under Bhaskar Ram, the Son of Narayan Ramji, Bhaskar Ram later became well known in Bengal and Orissa under the name of Bhaskar Pandit. He marched via Chhatisgarh to Chhotanagpur and from there he marched upon Midnapur through the hilly tracts of Mayurabhanja, Alivardi Khan was wholly unprepared for this unexpected invasion, and he was, therefore, compelled to fly from Orissa to ·Bengal. +++ In November, 1744 A.D. inside the Nawabs Camp all the twenty-one Maratha officers including their Leader Bhasker Pandit were treacherously murdered..." (୪)

ମୁର୍ଶିଦାବାଦର ନବାବ ଆଲିବର୍ଦ୍ଦି ଖାଁଙ୍କ ନିକଟରୁ ମହନ୍ତ ବେଣୀ ସେକ୍ ସମସର ଖାଁ ବାଲେଶ୍ୱରର ସୋସୋ ଗ୍ରାମର ମୀର ଜାଗିମଙ୍କ ନିକଟକୁ ଆଣିଥିବା ପରଓ୍ୱାନାରେ ସମସ୍ତ ଉଲ୍ଲେଖ ଅଛି : "ସନ ୧୧୪୮ ରମଜାନ ମହିନା ଭେସର ସେଜ ପୀର, ତକ୍ତ ମୁର୍ଶିଦାବାଦ ।" (୫) ଲଛମା ଉପନ୍ୟାସରେ ବର୍ଣ୍ଣିତ ଏହି ଘଟଣାର ସମସ୍ତ ୧୭୪୦ ମସିହା । ପୁନଶ୍ଚ ଏଥିରେ ଭାସ୍କର ପଣ୍ଡିତଙ୍କ ହତ୍ୟା, ହଳଘାଟପଦା ଯୁଦ୍ଧ, ଫୁଲଓଆର ଯୁଦ୍ଧ ପ୍ରଭୃତିର ବର୍ଣ୍ଣନା ରହିଛି । ତେଣୁ 'ଲଛମା'ର କଥାବସ୍ତୁ ୧୭୪୦ ମସିହାରୁ ଆରମ୍ଭ ହୋଇଛି । ଐତିହାସିକ ଘଟଣାର ଅବଲମ୍ବନରେ ତତ୍କାଳୀନ ଓଡ଼ିଶାର ସମାଜ ଜୀବନକୁ କଳାତ୍ମକ ରୂପ ପ୍ରଦାନ କରିବା ଥିଲା ଫକୀରମୋହନଙ୍କ ମୁଖ୍ୟ ଉଦ୍ଦେଶ୍ୟ । ଏଇ ଉଦ୍ଦେଶ୍ୟକୁ ପରିପୁଷ୍ଟ କରିଛି ଅବକ୍ଷୟୀ ସାମନ୍ତବାଦୀ ସଭ୍ୟତା ଓ ବର୍ଗୀ-ଉତ୍ପୀଡ଼ନ । ଯଥାର୍ଥରେ ଡ଼କ୍ଟର ନଟବର ସାମନ୍ତରାୟଙ୍କ ଭାଷାରେ : "ଲଛମା' ଉପନ୍ୟାସ ଲଛମା-ବାଦଲସିଂହ ଜୀବନର ଇତିବୃତ୍ତ ନୁହେଁ, ଏହା ଅଷ୍ଟାଦଶ ଶତାବ୍ଦୀ ଓଡ଼ିଆ ସାମନ୍ତବାଦୀ ସଭ୍ୟତାର ଏକ ପତନର ଇତିହାସ ।" (୬)

## ଛମାଣ ଆଠଗୁଣ୍ଠ :

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଇଂରେଜ ଶାସନକାଳରେ କାର୍ଯ୍ୟ କରୁଥିବା କଲିକତା ଆଗତ ବଙ୍ଗାଳୀମାନେ ଓଡ଼ିଆମାନଙ୍କ ପାଇଁ ବର୍ଗୀମାନଙ୍କ ଠାରୁ ଅଧିକ ଭୟଙ୍କର ଓ ମାରାତ୍ମକ ଥିଲେ । ତେଣୁ ୧୮୦୪ ମସିହାରେ ଓଡ଼ିଶାରେ ଇଂରେଜ ବିରୋଧୀ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏଇ ଆନ୍ଦୋଳନର ଫଳ ସ୍ୱରୂପ ଗଜପତିଙ୍କ ପୃଷ୍ଠପୋଷିତ ଜୟୀରାଜ-

ଗୁରୁଙ୍କୁ ୧୮୦୭ ମସିହାରେ ଇଂରେଜମାନେ ମେଦିନୀପୁରଠାରେ ପ୍ରକାଶ୍ୟ ରାଜପଥରେ ଫାଶି ଦେଲେ । ପରେ ପରେ ବକ୍ସିଜଗବନ୍ଧୁଙ୍କ ନେତୃତ୍ୱରେ ଖୋର୍ଦ୍ଧାଗଡ଼ରେ ପାଇକ ବିଦ୍ରୋହ ଆରମ୍ଭ ହୋଇଥିଲା । ୧୮୧୭ ମସିହାରେ ପାଇକ ସେନାର ପତନ ସହିତ ଓଡ଼ିଆ ଜାତି ଦାଣ୍ଡର ଭିକାରୀ ହୋଇଗଲା । ଇଂରେଜ ପ୍ରଚଳିତ ନୂତନ ଭୂରାଜସ୍ୱନୀତି (ସୂର୍ଯ୍ୟାସ୍ତ ଆଇନ ର ଶିକାର ହୋଇ ଐତିହାସିକ ଓଡ଼ିଶାର ବିଶାଳ ଭୂଖଣ୍ଡ ଶାଗ ମୂଲ୍ୟରେ କଲିକତା ବଜାରରେ ନିଲାମ ହୋଇଗଲା । (***) ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଏହି ସମୟର ଅବିକଳ ରୂପ । 'ଛମାଣ ଆଠଗୁଣ୍ଠ'ରେ କଲିକତାର ଫତେପୁର ସରଣ୍ଡେ ଜମିଦାରୀର ନିଲାମ, ସନ ୧୮୩୧ ଅକ୍ଟୋବର ୧୦ ତାରିଖରେ କେନ୍ଦ୍ରାପଡ଼ା ଥାନାର ଦାରୋଗା ଇନାଏତ୍ ହୋସେନ୍‌ର ରିପୋର୍ଟ ନକଲରେ ଥିବା ଅକ୍ଟୋବର ମାସ ୩ ତାରିଖରେ ଶାରିଆର ମୃତ୍ୟୁ ଖବର ପ୍ରଭୃତି, ("ଦାରୋଗା ରିପୋର୍ଟର ନକଲ/ ଧର୍ମାବତାର, ଚଳିତ ଅକ୍ଟୋବର ତିନି ତାରିଖ ହେବ ଆଠବଜେ ଅନ୍ତାଧୀନ ଆପଣା ଏଲାକା ମଧ୍ୟରେ ଆପଣା କଚେରୀ ଜାଗାରେ ବସି ସରକାରୀ କାମ ଅଞ୍ଜାମ କରୁଥିବା ହାଲତ— + + + ୧୦ ତାରିଖ ଅକ୍ଟୋବର ସନ ୧୮୩୧ ଦାରୋଗା ଇନାଏତ ହୋସେନ, ଥାନେ କେନ୍ଦ୍ରାପଡ଼ା" (୮), ସନ ୧୮୩୨ ମସିହା ମେ ମାସ ୧୭ ତାରିଖରେ କଟକ ସେସନ୍ ଜଜ୍ ଏଚ. ଆର. ଜେକ୍‌ସନ୍‌ଙ୍କ

(***) ବଙ୍ଗଳାର ଐତିହାସିକ ରାଖାଲ ଦାସ ବନ୍ଦୋପାଧ୍ୟାୟ କହନ୍ତି— "ପ୍ରାରମ୍ଭ ବ୍ରିଟିଶ ଶାସକମାନେ ଓଡ଼ିଶାର ସୁଶାସନ ପାଇଁ ସେମାନଙ୍କର ସ୍ୱଦେଶୀୟ ଆଇନକାନୁନ୍ ପ୍ରବର୍ତ୍ତିତ କରିବାର ଚେଷ୍ଟା କରୁଥିବାବେଳେ ++ ସେମାନଙ୍କର ବଙ୍ଗାଳୀ ଅଧସ୍ତନମାନେ, ନିଜସ୍ୱାର୍ଥ ପାଇଁ ସାଧାରଣ ଓଡ଼ିଆଙ୍କ କଥା ଭୁଲି, ଓଡ଼ିଶାର

ରିପୋର୍ଟ ପ୍ରକାଶ, ("କଟକ ସେସନ୍ ଜଜ୍‌କୋର୍ଟ—+++ ଏହି ସମସ୍ତ କାରଣ ଦୃଷ୍ଟିରେ ହୁକୁମ ହେଉଛି କି ଆସାମୀ ରାମଚନ୍ଦ୍ର ମଙ୍ଗରାଜଙ୍କୁ ନରହତ୍ୟା ଅପରାଧରୁ ମୁକ୍ତ ଦିଆଯାଇ ନେତ ନାମକ ଗାଈକୁ ଆତ୍ମସାତ କରିଥିବା ଅପରାଧରେ କଠିନ ପରିଶ୍ରମ ସହିତ ଛମାସ କାରାଦଣ୍ଡ ଏବଂ ପାଞ୍ଚଶତ ଟଙ୍କା ଜରିମାନା କରାଯାଉ। ଜରିମାନା ଅସୁଲ ନ ହେଲେ ଅତିରିକ୍ତ ତିନିମାସ କାରାରୁଦ୍ଧ ରଖାଯାଉ। ଇତି।

---

ଔପନିବେଶିକ ଅଭିଜାତ ପରିବାର ଓ ଓଡ଼ିଶାର ସମଗ୍ର ଧନବନ୍ତ ଶ୍ରେଣୀର ମଧ୍ୟ ଧ୍ୱଂସ ସାଧନ କରି ଲାଗିଥିଲେ। ଓଡ଼ିଶା ବ୍ରିଟିଶ ଅଧିକୃତ ହେବା ଠାରୁ ପ୍ରାୟ ପଚିଶ ବର୍ଷ ପର୍ଯ୍ୟନ୍ତ ଏକ ଅନାକାଙ୍କ୍ଷିତ ଶ୍ରେଣୀର ବଙ୍ଗାଳୀଏ ଓଡ଼ିଶାମଧ୍ୟ କର୍ତ୍ତୃତ୍ୱ ଖେଳି ବୁଲିଲେ। ସେମାନେ ଥିଲେ କେବଳ ଠକାମି ଓ ଜାଲିଆତି ପାଇଁ କୁଖ୍ୟାତ। ଇଂରେଜ ପ୍ରଶାସକ କର୍ମଚାରୀମାନେ ବି ଅସାଧୁ ଥିଲେ। ଊନବିଂଶ ଶତାବ୍ଦୀର ଏହି ଅନ୍ୟାୟ ସ୍ୱାର୍ଥପର ଇଂରେଜ ଶାସକମାନଙ୍କୁ କୁହାଯାଉ ଥିଲା 'ନବାବ'। ++ ଏହି ଉଭୟ ଶ୍ରେଣୀର ଅତ୍ୟାଚାର ବିରୁଦ୍ଧରେ ସମଗ୍ର ଦେଶରେ ବିରୋଧର ସ୍ୱର ଉଠାଇବାର ଜନଚେତନା ଜାଗି ନ ଥିଲା ଏବଂ ସମସ୍ତେ ଭୀତତ୍ରସ୍ତ ହୋଇ ରହିଥିଲେ। ଫଳରେ ମାଜିଷ୍ଟ୍ରେଟ୍ ଓ ବଣ୍ଟୁରିକ, ଉଭୟ ଶ୍ରେଣୀର ଇଂରେଜଙ୍କୁ ବଙ୍ଗାଳୀ କର୍ମଚାରୀଏ ନିଜ ଆୟତ୍ତରେ ରଖିପାରି ସମଗ୍ର ଓଡ଼ିଶାକୁ ନିଜର ସ୍ୱଚ୍ଛନ୍ଦ ଚରଭୂମି ରୂପେ ନିରଙ୍କୁଶ ବ୍ୟବହାରରେ ଲଗାଇ ପାରିଥିଲେ ଏବଂ ଓଡ଼ିଶା ଥିଲା ସେମାନଙ୍କର ହଠାତ୍ ଧନୀ ହେଇ ଯିବାର ପ୍ରଶସ୍ତସ୍ଥାନ। ଶାସନ ନେଇ ନେତାର ଶୋଷଣ ଓ ଭୟର ପୀଠରେ ନ୍ୟାୟ ବିରୁଦ୍ଧ, ଓଡ଼ିଶାରେ ଏହି ଉଭୟ ଇଂରେଜ-ଅପକର୍ମର ବାହକ ହୋଇଥିଲେ କେବଳ ଏଇ ବଙ୍ଗାଳୀଏ। ++ ଓଡ଼ିଆମାନେ ନାନା ଭୟ ଓ ଆଶଙ୍କାରେ

ମେ ମାସ ୧୭ ତାରିଖ ସନ ୧୮୩୨ ଲସିହା । ଏଇଚ୍·ଆର୍· ଜେକ୍ସନ, ସେସନଜଜ୍ ।"—(୯) ପ୍ରଭୃତିରୁ ଏଇ ଉପନ୍ୟାସର ସମସ୍ତ ଘଟଣା ସମ୍ପର୍କରେ ସୂଚନା ମିଳିଥାଏ । ଏହା ବ୍ୟତୀତ ଗୋପାଳପୁର ପାଖରେ ଋଷୁପାନଧୀରେ ଡଙ୍ଗା ବାନ୍ଧିଥିବା ନାଉରୀ, ବାଟୋଇ ଡଙ୍ଗାରେ ଗୁଡ଼ ଯାଇଥିବା ଡେଙ୍ଗେ ଲମ୍ବ ବଡ଼ାଏ ତାଳପତ୍ର କଛୁଦିନ ପରେ ପଖାର ଅବଧାନଙ୍କୁ ପଢ଼ାଇଛୁ । ସେଥିରୁ ଟଣ୍ଡେ'ଏ ପତ୍ରରେ ଉଲ୍ଲେଖ ଥିଲା—ଶ୍ରୀ ଶ୍ରୀ ମୁକୁନ୍ଦଦେବଙ୍କ ସାତଅଙ୍କ କୁମ୍ଭମାସ କୃଷ୍ଣପକ୍ଷ ଦ୍ୱିତୀୟା ଦିନବେଳ ଦୁଇଘଡ଼ି ସମୟରେ ଗୋବିନ୍ଦପୁର ଜମିଦାର ରାମଚନ୍ଦ୍ର ମଙ୍ଗରାଜ ମହାଜନଙ୍କ ସୁସାକ୍ଷାତକୁ ଏହି ଗ୍ରାମର ରତ୍ନବାରିକଙ୍କ ତେଲପୁଅ ଶାମ ସାହୁର ଦେଲାଗୁଜା, ଏ ନିମନ୍ତେ ଗୁଜା ଲେଖି ଦେଲା ଯେ ମୋ ପୁଅ ଖ୍ୟାମା ବଷ୍ଟଧରଙ୍କୁ ଆପଣଙ୍କଠାରୁ ଦଶଟଙ୍କା କରଜ ନେଲା, ଆସନ୍ତା ଧନୁମାସରେ ମୋ ଖଳା ଉପରୁ ଆପଣଙ୍କ ଟମାର ଗଉଣୀରେ ଦାଣ୍ଡିଭାଇ ପ୍ରମାଣେ ଧାନ ମାପିନେଇ ତହିଁ କଳନ୍ତରକୁ ଅଧାକ ମୂଳ ନଉଡ଼ିକେ ଆଠବିଶ୍ବା ପରିମାଣେ ମାପି ନେବେ । ଏ ପ୍ରମାଣ । ଏଥିକୁ ସାକ୍ଷୀ ଚନ୍ଦ୍ର, ସୂର୍ଯ୍ୟ

---

ସେମାନଙ୍କର ନୂତନ ପ୍ରଭୁଙ୍କୁ ସନ୍ତୋଷ ଜଣାଇବାକୁ ଉତ୍ସୁକ କରୁଥିଲେ । ++ ଏହି ହେତୁ ଓଡ଼ିଶାର ଶତଶତ ଐତିହାସିକ ଭୂଖଣ୍ଡ ବଙ୍ଗାଳୀଙ୍କ ହାତକୁ ଚାଲିଗଲା ଓଡ଼ିଶାର ଶତଶତ ଅଭିଜାତ ପରିବାରଙ୍କୁ ଦାଣ୍ଡରେ ବସାଇ ଦେଲା । ++ ଏବଂ ବଙ୍ଗାଳୀମାନଙ୍କର ସବୁଠାରୁ ମାରାତ୍ମକ ଚକ୍ରାନ୍ତ ଏହି ହେଲା ଯେ, ଓଡ଼ିଶାର ଐତିହାସିକ ଭୂଖଣ୍ଡ ସବୁ ସା, ତମାମି ଦ ଦେଇ ପାରିଲେ, ସେ ସବୁକୁ କଲିକତାରେ ନିଲାମ କରିନଥା ଯିବାର ସମ୍ପୂର୍ଣ୍ଣ ଅଲୌକିକ ଓ ଅମାନୁଷିକ ବ୍ୟବସ୍ଥା ପାଇଁ ସେମାନେ ବ୍ରିଟିଶ ଶାସକମାନଙ୍କୁ ମନେଇ ନେଇ ପାରିଲେ ।" (୭)

ଦଶଦିଗପାଳ ।" (୧୦) ଉପନ୍ୟାସର ସମୟ-ପରିଧିକୁ ପରୋକ୍ଷ ଭାବରେ ପରିପୁଷ୍ଟ କରିଥିବା ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଆଉ କେତେକ ଘଟଣା ଏଥିରେ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ ସେଖ୍ ଇନାଏତ୍ ହୋସେନ୍ କଟକ ଜିଲ୍ଲାରେ ଜଣେ ଅଭୁଲ ନମ୍ବର ପୁଲିସ ଦାରୋଗା, ପାର୍ଶି ଇଲମରେ ଭାରି ମଜବୁତ୍ । ଓଡ଼ିଆ ନାଲାଏକ ଇଲମ, ସେଥି ସକାଶେ ସେ ଲେଖନ୍ତି ନାହିଁ, ସରକାରୀ କାଗଜରେ ପାର୍ଶି ଦସ୍ତଖତ କରନ୍ତି ।" (୧୧) ଅର୍ଥାତ୍ ସେତେବେଳକୁ ଓଡ଼ିଶାର କୋର୍ଟ କଚେରୀରେ ପାର୍ଶିଭାଷାର ପ୍ରଚଳନ ଥିଲା ।

## ମାମୁ :

'ମାମୁ' ଉପନ୍ୟାସରେ ବର୍ଣ୍ଣିତ ମେହମାସ ସାତଦିନ, ୧୨୭୦ ସାଲରେ ନରୁବାବୁଙ୍କ ଗଠଁ, ନାଜର ନଟବରଙ୍କୁ ସନ ୧୨୮୦ ସା.ଲ ମକର ସାତଦିନ ଅର୍ଥାତ୍ ୧୮୭୩ ମସିହା ଫେବ୍ରୁୟାରୀ ମାସରେ ଗୋକୁଳ ପଟ୍ଟନାୟକଙ୍କର ଋଣୋଇ ଏବଂ ୧୮୭୯ ମସିହା ଜୁନ୍ ତିନି ତାରିଖରେ ଟଙ୍କା ଚୋରି ବିଷୟରେ ପୋଲିସ ରିପୋର୍ଟ [ କଟକ ଥାନାର ଦାରୋଗା 'ଏ' ଫାରମକାଟି ଏହି ମାମଲା ସମ୍ବନ୍ଧରେ ଶ୍ରୀଯୁକ୍ତ ମେଜେଷ୍ଟର ସାହେବଙ୍କ ନିକଟକୁ ଇଂରେଜୀରେ ଯେଉଁ ରିପୋର୍ଟ ପଠାଇ ଥିଲେ, ସେଥିର ସାରାଂଶ ଓଡ଼ିଆ ଭାଷାରେ ଏହିପର— + + + ୯ ତାରିଖ ମାହେ ଜୁନ୍, ସନ ୧୮୭୯ ମସିହା ମାଲମଣି ବଳବନ୍ତର, ଇ·ଇ: ସଦର ଥାନା, କଟକ ।" (୧୨) ] ଗୁଡ଼ିକ ଉପନ୍ୟାସର ସମୟପରିଧି ସମ୍ପର୍କରେ ସୂଚନା ପ୍ରଦାନ କରିଥାଏ । ନାୟିକା ଚନ୍ଦ୍ରମଣିର ଜନ୍ମକୁଣ୍ଡଳୀ ଆଲୋଚ୍ୟ ଉପନ୍ୟାସରେ ପ୍ରଦାନ କରାଯାଇଛି । ଡକ୍ଟର ନଟବର ସାମନ୍ତରାୟ ତାଙ୍କ ଗବେଷଣା ସନ୍ଦର୍ଭ ଓଡ଼ିଆ ସାହିତ୍ୟର ଇତିହାସରେ ଉଲ୍ଲେଖ କରିଛନ୍ତି—

"ମାମୁ ଉପନ୍ୟାସରେ ଥିବ ବୃନ୍ଦମଣିର ଜନ୍ମକୁଣ୍ଡଳୀ ବର୍ଣ୍ଣନା କଲେ ତାର ଜନ୍ମ ସମୟ ୧୮୫୮ ସାଲ ମେ ମାସ ତା ୧୨ ରଖା ବୋଲି ଜଣାଯାଏ ।" (୧୩) ମାତ୍ର ଉପନ୍ୟାସରେ ଅଛି . "ପରିବାର କଟକ ଆସିବାର ବର୍ଷକ ଉତ୍ତାରେ ଦାଶରଥି ଦାସଙ୍କର ଗୋଟିଏ କନ୍ୟା ଜାତ ହେଲ । ମାଘ ପୂର୍ଣ୍ଣିମା ତିଥି ୦କ୍ ଚନ୍ଦ୍ରୋଦୟ ସମୟରେ ଜନ୍ମ ।" (୧୪) ଏହା ଉକ୍ତର ସାମନ୍ତରାୟଙ୍କ ଗଣନା ସହିତ ସାମଞ୍ଜସ୍ୟ ରକ୍ଷା କରିପାରିବ ନାହିଁ । ବୃନ୍ଦମଣିର ପାଠପଢ଼ା ସମ୍ପର୍କରେ ଉଲ୍ଲେଖ କରାଯାଇଛି : "ଦାଶରଥି ଦାସଙ୍କର ଦୁଇପୁତ୍ର ବାନାବର ଆଉ ନଟବର । ଦୁଇଜଣ ଇଂରେଜୀ ସ୍କୁଲରେ ପଢ଼ନ୍ତି । ବୃନ୍ଦମଣି କରଣ ଘର ଝିଅ । ସେ କଣ ବାଣ୍ଡରେ ଗୃହଗୃହ ଆଉ ଜାଗାକୁ ପଢ଼ିବାକୁ ଯିବ ? + + + ମାସକୁ ମାସ ଦରମାଦେଇ ବୃନ୍ଦକୁ ପଢ଼ାଇବା ପାଇଁ ଗୋଟିଏ ଖ୍ରୀଷ୍ଟାନ୍ ପାଠ ମା ନିଯୁକ୍ତ କଲେ ।" (୧୫) କିନ୍ତୁ ୧୮୫୦ ମସିହା ବେଳକୁ ଓଡ଼ିଶାରେ ଇଂରେଜୀ ସ୍କୁଲର ବିକାଶ ହୋଇନାହିଁ ଏବଂ ଖ୍ରୀଷ୍ଟିୟାନ ପାଠମା ନିଯୁକ୍ତ କରି ସମ୍ଭ୍ରାନ୍ତ ପରିବାରରେ ପାଠପଢ଼ାଇବା ୧୮୭୦ ମସିହା ପରବର୍ତ୍ତୀ ଘଟଣା । ବୃନ୍ଦମଣିର ବିବାହ ପ୍ରସ୍ତାବ ୧୪ ବର୍ଷ ୬ମାସ ୭ ଦିନରେ ଅର୍ଥାତ୍ ୧୮୭୨ ମସିହାରେ । (* ପୁନଶ୍ଚ "ଏଣ୍ଟ୍ରାନ୍ସ ପାଶ୍ ତାଲିକାରେ ଏକାବର୍ଷ ଗେଜେଟ୍‌ରେ ପ୍ରତାପ ରୁଦ୍ର, ପୀତାମ୍ବର ଆଉ ନଟବର ଏହି ତିନିଜଣଙ୍କ ନାମ ବାହାରିଲି ।" (୧୬) ୧୮୭୨ ମସିହାରେ ପ୍ରତାପରୁଦ୍ର ମଲ୍ଲିକଙ୍କର ବୃନ୍ଦମଣି ସହିତ ବିବାହ ହୋଇଛି । ଏହି ସମୟକୁ ସେ ଏଣ୍ଟ୍ରାନ୍ସ ପାଶ କରି ସାରିଛନ୍ତି, କିନ୍ତୁ ଊନବିଂଶ ଶତାବ୍ଦୀର ଓଡ଼ିଶାରେ ଶିକ୍ଷାର ପ୍ରସାର ସମୟ ସହିତ ସାମଞ୍ଜସ୍ୟ

---

(*) ଏହି ରାଶିଚକ୍ରାଙ୍କନା—ବୃନ୍ଦଜନ୍ମ ଦିନରେ ମୋହର ନାଜରତ ବୃନ୍ଦର ହାତ ରଣ୍ଡା ହେଲ ଚଉଦବର୍ଷ ଛଅମାସ ସାତଦିନ ।" (୧୭)

ରକ୍ଷା କରିପାରୁ ନାହିଁ । ଏହା ବ୍ୟକ୍ତିଗତ ଗେନ୍ଦେଇ ସମ୍ପର୍କରେ ଉଲ୍ଲେଖ ଅଛି : "ଗଲା ଏଠାର ଅଙ୍କ ଗ୍ରାମ ମଧ୍ୟରେ ଯେଉଁ ଭୁଷୁ ଡାକୁଣୀ ଗୋଳଟା ପଡ଼ିଥିଲା, ଆଜିପାଏ ସେ କଥାଟା ମନରେ ପଡ଼ିଗଲେ ଲୋମ ଟାଙ୍କୁରି ଉଠେ । ଲୋକ ଦଶପଣ ଛପଣ ହୋଇ ଯାଇଥିଲେ—ବେଶୀ ଘରଟା ଉଜାଡ଼ । ସେହି ବାଡ଼ିର ଗେନ୍ଦେଇର ଗେରସ୍ତ ଘନ ବିଶ୍ୱାଳ, ଶାଶୁ ବୁଢ଼ୀ ନେମୀ ଆଉ ଦେଢ଼ବର୍ଷର ଗୋଟିଏ ପୁଅ ଲଗଲଗ ତିନିଦିନରେ ଚାଲିଗଲେ ।" (୧୮)

ଐତିହାସିକ ନଅଙ୍କ ଦୁର୍ଭିକ୍ଷ ୧୮୬୬ ମସିହାରେ ସଙ୍ଘଟିତ ହୋଇଥିଲା । ତେଣୁ ମୁକୁନ୍ଦଦେବଙ୍କ ଏଠାର ଅଙ୍କର ଯେଉଁ ଘଟଣା ବର୍ଣ୍ଣନା କରାଯାଇଛି ତା'ର ସମୟ ୧୮୬୮ ମସିହାରେ ଗେନ୍ଦେଇ ବିଧବା ହୋଇଛି । ଗେନ୍ଦେଇର ବୟସ ସମ୍ପର୍କରେ କୁହାଯାଇଛି— "ସେତେବେଳକୁ ଗେନ୍ଦେଇର ବୟସ କୋଡ଼ିଏରୁ ଊଣା" (୧୯) ୧୮୬୮ରେ ଗେନ୍ଦେଇ ବିଧବା ହୋଇଥିବାରୁ ତା'ର ଜନ୍ମ ୧୮୪୮ ପରେ । କିନ୍ତୁ ଉପନ୍ୟାସରେ ବର୍ଣ୍ଣନା କରାଯାଇଛି ବିଧବା ଗେନ୍ଦେଇ ଚୂଡ଼ାମଣି ବିବାହ ଉତ୍ସବର ଆୟୋଜନ କରୁଛି । *) ପ୍ରତାପଚନ୍ଦ୍ର ମଲ୍ଲିକଙ୍କ ମୃତ୍ୟୁବେଳକୁ—"ବଡ଼ପୁଅ ଠାକୁରେ ନରହରିଙ୍କି ସତୁରିଥା ବୁଡ଼ିଲାଣି ବାପ ମା'ଙ୍କ ମୁହଁକୁ, ଜେଜେମା ମୁହଁକୁ ନିହାତି ଆକୁଳ ହୋଇ ବାରମ୍ବାର ଚାହୁଁଛନ୍ତି । ଆଖିଠାରୁ

(*) 'ଗେନ୍ଦେଇର ଦୁଆରେ ଆଠଦିନ ଆଗରୁ ଢୋଲପିଟା ହେଉଛି । ହରିହର ଦେଇ ତାକୁ ବାଜା ଗଣ୍ଡୁଳା କରି ଧରିଛନ୍ତି । ସେ ବି ଖୁସି ଅପିଆ ପାଟେପୋଶ ଚଳାଣି । ପାଇଟି ତୁଲେଇବାକୁ ତା ସମକକ୍ଷ କିଏ ? ସମସ୍ତେ କହନ୍ତି, ସରସ୍ୱତୀ ଆଉ ଗେନ୍ଦେଇ ଯୋଗେ ବାମ ନଡ଼ିଲା ।" (୨୦)

ଲେଖକଙ୍କର ଜନ୍ମକାଳ । ସାନପୁଅ ଶ୍ରୀଧରର ବୟସ ଅଢ଼େଇ ବର୍ଷ—କିଛି ବୁଝୁନାହିଁ ।" (୨୧) ଅନ୍ୟତ୍ର ଏଇ ପରିଚ୍ଛେଦରେ ଘନଗର୍ଜିତ (ସ୍ଥଳ ବିଶେଷରେ ଘନ ବର୍ଷାକାଳ) କହୁଛି—"ବୁଝିଲ ବାରିକ ପୁଅ ! + + + କାଲି ରାତିରେ ମା କହୁଥିଲି, ଆମ ଶଙ୍କର ଆଜି ଉତ୍ତରାର୍କର ଏକା ବୟସ । ମାଘ ମାସରେ ଜନ୍ମ । ଶଙ୍କରର ଗଣିତି ହେଲା—କୋଡ଼ିଏ ଏଗାର ମାଘ ମାସରେ ପୂରିଗଲା ।" (୨୨) ଅର୍ଥାତ୍ ପ୍ରତାପଚନ୍ଦ୍ର ମଲ୍ଲିଙ୍କ ମୃତ୍ୟୁ ବେଳକୁ ବୟସ ୩୧ ବର୍ଷ ।

ନାଜର ନଟବର ଦାସଙ୍କ ପାଖକୁ ଗୋକୁଳ ସେନାପତିଙ୍କର ରିପୋର୍ଟରେ ଉଲ୍ଲେଖ ଅଛି—"ଗଲା ଦୁଇବରଷ ସାଲତମାମି ହିସାବରୁ ଦେଖିବାକୁ ଆଜ୍ଞା ହେବ । ଏଣିକି ସବୁ ହିସାବରୁ ଆପୁ ବନ୍ଦ । + + + ସନ ୧୨୮୦ ସାଲ ମକର ସାତାଦିନ/ଅଧୀନ ହୁକୁମ ବରଦାର/ଗୋକୁଳ ସେନାପତି/କାର୍ଯ୍ୟ ଚଳେଇ ନଜରଗଡ଼/ କ/ନରପୁର ।" (୨୩) ଏଥିରୁ ଜଣାଯାଏ ପ୍ରତାପଚନ୍ଦ୍ର ମଲ୍ଲିଙ୍କ ମୃତ୍ୟୁ ହୋଇଛି ୧୨୭୮ ସାଲରେ ବା ୧୮୭୧ ମସିହାରେ ଅତଏବ ପ୍ରତାପଚନ୍ଦ୍ର ମଲ୍ଲିଙ୍କ ଜନ୍ମ ୧୮୪୦ ମସିହାରେ ।

ଟିକାଏତ ବାବୁଙ୍କ ମାଇନର ପାସ୍ ପରିଚ୍ଛେଦରେ ଉଲ୍ଲେଖ ଅଛି—"ଦୁଇମାସ ତଳେ ଟିକାଏତବାବୁ ମାଇନର ପରୀକ୍ଷା ଦେଇଥିଲେ । ସେ ପ୍ରଥମ ଶ୍ରେଣୀରେ ପାସ୍ କରିଥିବାର ଇନ୍ସପେକ୍ଟର ସାହେବଙ୍କ ଅଫିସରୁ ମାଷ୍ଟରଙ୍କ ନାମରେ ଚିଠି ଆସିଲା । + + ଆଜ ପାଞ୍ଚବର୍ଷ ଉତ୍ତାରେ ଉଆସରେ ଆନନ୍ଦର ଚିହ୍ନ ଦେଖାଗଲା ।" (୨୪) ତେଣୁ ଟିକାଏତ ବାବୁଙ୍କ ମାଇନର ପାସ୍ ସମୟ ୧୮୭୦ ମସିହା । କିନ୍ତୁ ଏଣ୍ଟ୍ରାନ୍ସ ପାସ୍ କରିଥିବା ନରବାବୁଙ୍କ ଚିଠିର ସମୟ ମେଷ ମାସ ସାତଦିନ, ୧୨୭୦ ସାଲ ଅର୍ଥାତ୍ ୧୮୬୩

ମସିହାରେ ସ୍ରଷ୍ଟା ମାନସର (ସମୟ ନିର୍ଣ୍ଣୟରେ) ତ୍ରୁଟି ରହିଛି । କାରଣ ଗୃନ୍ଦାମଣିର ବିବାହ ହୋଇଛି ୧୮୭୨ ମସିହାରେ । କଟକ ସଦର ଥାନା ଦାରୋଗା ବଳବନ୍ତରାଙ୍କ ରିପୋର୍ଟର ସମୟ— ୪ ତାରିଖ ମାହେ ଜୁନ୍ ସନ ୧୮୭୪ ମସିହା । ଅତଏବ ମାମୁ ଉପନ୍ୟାସର ସମୟ-ପରିଧି ୧୮୪୦ରୁ ୧୮୭୪ ମସିହା । ଏହି ଉପନ୍ୟାସରେ ମୁଖ୍ୟତଃ ପତନୋନ୍ମୁଖୀ ସାମନ୍ତବାଦର ନୂତନ ଶିକ୍ଷାଲବ୍ଧ ପ୍ରତି ଆଗ୍ରହ, ସାମନ୍ତବାଦର ଅଧଃପତନ, ନୂତନ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁଦୟ ସମୟର ଚିତ୍ର ଦେଖିବାକୁ ମିଳେ । ଯଥାର୍ଥରେ 'ମାମୁ' ହେଉଛି ଊନବିଂଶ ଶତାବ୍ଦୀର ଅପରାର୍ଦ୍ଧ ଓଡ଼ିଶାର ପ୍ରତିଲିପି । ଡ: ମାନସିଂହଙ୍କ ଭାଷାରେ—"ଛମାଣ ଆଠଗୁଣ୍ଠରେ ଫକୀରମୋହନ ଆଙ୍ଗୁଠି ମାରି ଦେଖାଇ ଦେଇଥିଲେ ଯେ, ଆମର ତଥାକଥିତ ବାହାରକୁ ଶାନ୍ତସାରଲ୍ୟପୂର୍ଣ୍ଣ ପଲ୍ଲୀରେ କପରି ଠିଆହେଲେଣି ହଇତାନ ଗୋଷ୍ଠୀ, ତାର ସମଗ୍ର ପ୍ରାକ୍ତନ ମହିମା ଓ ସୌନ୍ଦର୍ଯ୍ୟକୁ ଧ୍ୱଂସକରି । ପରେ ଠିକ୍ ସେହି ଗୋଷ୍ଠୀ ଆସି ସହରମାନଙ୍କରେ ନିଜର ଆସ୍ଥାନ ଓ ପ୍ରତିପତ୍ତି କପରି ଠିଆ କଲା, 'ମାମୁ' ତାର ପ୍ରଚଣ୍ଡ ଚିତ୍ର ।" (୨୫)

## ପ୍ରାୟଶ୍ଚିତ୍ତ :

'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ବର୍ଣ୍ଣିତ ଆଲୋଚନାସଭା ("କଟକ କଲେଜର ପିଲମାନେ ମିଳି ଗୋଟିଏ ସଭା ସ୍ଥାପନ କରିଅଛନ୍ତି, ନାମ ଆଲୋଚନା ସଭା । ପ୍ରତିମାସ ପ୍ରଥମ ସପ୍ତାହ ଶନିବାର ସନ୍ଧ୍ୟା ସମୟରେ ସଭାର ଅଧିବେଶନ ହୁଏ ।" (୨୬) ) ଉତ୍କଳ ସମ୍ମିଳନୀ ଓ ଉତ୍କଳ ସାହିତ୍ୟ ସମାଜର ଏକ ସଙ୍କେତ ମାତ୍ର । ସେହିପରି ଅନ୍ୟତ୍ର ଉଲ୍ଲେଖ ଅଛି—"ପିଲଯୋଡ଼ିକ କଟକରେ

ଭଲ ଇଂରେଜୀ ପଢ଼ିବା ଉଣା ଅଧିକ ଦଶବର୍ଷକାଳ ବିତିଗଲାଣି । ଲେଖି ରଖିବା ଭଳି ଏମନ୍ତ କିଛି କଥା ଏଥି ମଧ୍ୟରେ ଘଟି ନାହିଁ । ପ୍ରଥମେ କଟକ ମିଶନ ସ୍କୁଲରେ ପଢୁଥିଲେ । ସେଠାରେ ମେଟ୍ରିକ୍ୟୁଲେଶନ୍ ପାଶ୍ କରି ଆସି ବର୍ତ୍ତମାନ କଲେଜରେ ପଢୁଛନ୍ତି । +++ ସାନ୍ତ ସଦାନନ୍ଦ ପଟ୍ଟନାୟକ ଓ କୁଅଁର ସାନ୍ତ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ କଲେଜରେ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ରମାନଙ୍କ ଜାଣିବା କାରଣ ଲେଖାଯାଉ ଅଛି କି, ଆସନ୍ତା ଜୁନ୍ ମାସ ୨ ତାରିଖ ସୋମବାର ଛାତ୍ରମାନଙ୍କ ପରୀକ୍ଷାର ଫଳ ବାହାରିବ । ଉକ୍ତ ତାରିଖରେ ଛାତ୍ରମାନଙ୍କ ଉପସ୍ଥିତି ନିତାନ୍ତ ଆବଶ୍ୟକ । ଇତି । (ସ୍ୱାକ୍ଷର) ଡବଲିଉ ଜୋନ୍ସ/ପ୍ରିନସିପଲ୍, କଟକ କଲେଜ ।" (୨୭) ଡକ୍ଟର ମାନସିଂହଙ୍କ ଭାଷାରେ—"ଓଡ଼ିଆ ତରୁଣମାନେ କଟକ ଓ କଲିକତାରେ ଯେଉଁ 'ନୂତନ' ଶିକ୍ଷାପାଇ ଫେରୁଥିଲେ, ତା'ଫଳରେ କିନ୍ତୁ ଭାରତର ଅନ୍ୟାନ୍ୟ ପ୍ରାନ୍ତପରି ଓଡ଼ିଶା-ସମାଜରେ ମଧ୍ୟ ଦେଖା ଦେଇଥିଲା ମେଲ୍ ମେଲ୍ ଫାଟସବୁ । ଜାତିପ୍ରଥା ଶିଥିଳ ହେବାକୁ ବସିଲା; ଏକାନ୍ନବର୍ତ୍ତୀ ପରିବାର ଛିନ୍ନ-ଭିନ୍ନ ହେବାକୁ ଆରମ୍ଭ କଲା, ତରୁଣମାନେ 'କନ୍ୟା' ବାଛିବାରେ ନିଜନିଜର ରୁଚି ସାବ୍ୟସ୍ତ କରିବା ଆରମ୍ଭ କଲେ ଏବଂ ମଦ୍ୟପାନ ଓ ନାସ୍ତିକତା ମଧ୍ୟ ସମାଜରେ ବ୍ୟାପକ ଭାବରେ ଦେଖାଦେଲା । ଫକୀରମୋହନଙ୍କ 'ପ୍ରାୟଶ୍ଚିତ୍ତ' ଓଡ଼ିଶାର ଠିକ୍ ଏହି କାଳର, ଏହି ଅବସ୍ଥାର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚିତ୍ର ।" (୨୮) ବୈଷ୍ଣବଚରଣ ପଟ୍ଟନାୟକ ଓ ସଙ୍କର୍ଷଣ ମହାନ୍ତିଙ୍କ ପାରିବାରିକ ବିବାଦର ସମୟକୁ ଊନବିଂଶ ଶତାବ୍ଦୀର ଶେଷ କୋଡ଼ିଏ ବର୍ଷ ଧରିନେଲେ ଆଲୋଚ୍ୟ ଉପନ୍ୟାସର ଘଟଣାବଳୀକୁ ୧୮୮୧ରୁ ୧୯୨୦ ମସିହା ପର୍ଯ୍ୟନ୍ତ ଗ୍ରହଣ କରାଯାଇ ପାରେ ।

ଉପରୋକ୍ତ ଆଲୋଚନାରୁ ଫକୀରମୋହନଙ୍କ ଗୁରିଗୋଟି ଉପନ୍ୟାସର ସମୟ-ପରିଧିକୁ ୧୭୨୦ରୁ ୧୯୨୦ ମସିହା ପର୍ଯ୍ୟନ୍ତ ଅର୍ଥାତ୍ ପାଖ ଦୁଇଶତ ବର୍ଷର ଓଡ଼ିଶାର ଐତିହାସିକ, ସାମାଜିକ, ସାଂସ୍କୃତିକ ପରିବେଶ ମଧ୍ୟରେ ଗ୍ରହଣ କରିବା ଯଥାର୍ଥ ମନେହୁଏ । ଡକ୍ଟର ମାନସିଂହଙ୍କ ସହିତ ସ୍ୱର ମିଳାଇ କୁହାଯାଇ ପାରେ—"Taken as a whole, the novels of Fakirmohan cover about a century of Pre-British and Post-British Orissa." (୨୯)

## ରେବତୀ:

ଶ୍ୟାମବନ୍ଧୁ ମହାନ୍ତି ୧୮୭୧ ସାଲ ପରବର୍ତ୍ତୀ ଓଡ଼ିଶାରେ ନୂତନ କରି ଗଢ଼ି ଉଠୁଥିବା ଶିକ୍ଷିତ ମଧ୍ୟବିତ୍ତ ସମାଜ ଅନ୍ତର୍ଗତ ଜଣେକ ଚରିତ୍ର । ତେଣୁ ଏକ ପରିବର୍ତ୍ତିତ ପରିସ୍ଥିତିରେ ନାରୀ-ଶିକ୍ଷାକୁ ସେ ସ୍ୱାଗତ କରନ୍ତି ଏବଂ ନିଜର କନ୍ୟା ରେବତୀକୁ ପାଠପଢ଼ାଇବା ପାଇଁ ମନସ୍ଥକରି ଗ୍ରାମର ପ୍ରାଇମେରୀ ସ୍କୁଲର ଶିକ୍ଷକ ବାସୁଦେବ ଉପରେ ଦାୟିତ୍ୱ ନ୍ୟସ୍ତ କରିଛନ୍ତି । (୩୦) ଦୁଇବରଷ ତଳେ ସ୍କୁଲ୍ ଜେଃ ଇନ୍‌ସପେକ୍ଟର ମଫସଲ ଗସ୍ତକୁ ଯିବା ସମୟରେ ପାଟପୁରରେ ହଠାଏ ରହି ଯାଇଥିଲେ । ଗ୍ରାମର ମୁଖିଆ ମୁଖିଆ ଲୋକଚାରିଜଣ ନାଲିଶ କୁହାଟୋଳୁ କରିବାରୁ ହୃଦପୋଡ଼ିବାରୁ ଓଡ଼ିଶା ବିଭାଗର ଇନ୍‌ସପେକ୍ଟରଙ୍କୁ ରିପୋର୍ଟ କରି ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ବସାଇ ଦେଇଅଛନ୍ତି । (୩୧) ଡକ୍ଟର ସାମନ୍ତରାୟ କହନ୍ତି—"ଓଡ଼ିଶା ବିଭାଗ ପାଇଁ ଯେଉଁ ସ୍ୱତନ୍ତ୍ର ଏକ ଇନ୍‌ସପେକ୍ଟର କର୍ମ ନୂତନ ହୋଇ ସୃଷ୍ଟି କରାଯାଇଥିଲା, ସେଥିରେ ରାଧାନାଥରାୟ ପ୍ରଥମେ ଅସ୍ଥାୟୀ ଭାବରେ ୧୮୯୨ ସାଲ ଜୁନମାସ ତା ୨୧ ଖରେ

ଯୋଗ ଦେଇଥିଲେ । ତେଣୁ 'ରେବତୀ' ଗଳ୍ପର ବିଷୟବସ୍ତୁ ୧୮୯୨ ସାଲ ଜୁନ୍‌ମାସଠାରୁ ୧୮୯୮ ସାଲ ଅକ୍ଟୋବର ମାସ ଭିତରେ ଯେ ଗଠିତ କରିଛି, ଏଥିରେ କୌଣସି ସନ୍ଦେହ ନାହିଁ ।" (୩୨) 'ରେବତୀ' ଗଳ୍ପରେ ଉଲ୍ଲେଖ ଅଛି—"କଥାରେ କଥାରେ ବୁଢ଼ୀ କହି ବସିଲେ—ହଁରେ ଶ୍ୟାମ । ରେବୀ ପାଠ ପଢ଼ି—ପାଠ କଣରେ, ଭଲା ଝିଅର ପାଠପଢ଼ା କଣ ?' ଶ୍ୟାମବନ୍ଧୁ କହିଲେ, 'କ୍ଷେଉ, କହୁଛନ୍ତି ପଢ଼ୁ । ଝଙ୍କଡ଼ ପଟ୍ଟନାୟକ ଘର ଝିଅମାନେ ଯେ ଭାଗବତ ବୋଲି ପାରନ୍ତି, ବୈଦେହୀଶ ବିଳାସ ଛାନ୍ଦ ଗାଆନ୍ତି ।" (୩୩, ଅର୍ଥାତ୍ ସେ ସମୟରେ ଝିଅମାନଙ୍କର ପାଠପଢ଼ାର ଶେଷସୀମାଥିଲା ଭାଗବତ ବା ବୈଦେହୀଶବିଳାସର ଛାନ୍ଦ ବୋଲି ପର୍ଯ୍ୟନ୍ତ । ଊନବିଂଶ ଶତାବ୍ଦୀର ଶେଷ ଦଶକରେ ସୃଷ୍ଟି ଲଭ କରିଥିବା ଏହି ଗଳ୍ପଟି ସମସାମୟିକ ସମାଜରେ ନାରୀଶିକ୍ଷା ସମ୍ପର୍କରେ ସୂଚନା ପ୍ରଦାନ କରିଥାଏ । ପୁନଶ୍ଚ ଗଳ୍ପରେ କୁହାଯାଇଛି—"ଦୁଇବରଷ ମଧ୍ୟରେ ରେବତୀ ତେଡ଼ର ପଢ଼ିଗଲାଣି । ମଧୁରାଓଙ୍କ ଛାନ୍ଦମାଳା ପଢ଼ିଯିବା-ବେଳେ ତୁଣ୍ଡରେ ବାଟୁଳି ବାଜେ ନାହିଁ ।" (୩୪) ରେବତୀ ମଧୁରାଓଙ୍କ 'ଛାନ୍ଦମାଳା' ପଢ଼ୁଛି । ଏଥିରୁ ମନେହୁଏ ରେବତୀ ୧୮୮୪ ମସିହା ପରବର୍ତ୍ତୀ ସମୟର ସୃଷ୍ଟି । ରେବତୀର ପାଠପଢ଼ାକୁ କେନ୍ଦ୍ରକରି ବୁଢ଼ୀମା କହିଛନ୍ତି—"ଏତେ ଯେ ଦୁଃଖ; ଏତେ ଯେ ଦୁର୍ଦ୍ଦଶା ସବୁର ମୂଳକାରଣ ରେବତୀ, ଏହା ସେ ମନ ମଧ୍ୟରେ ସ୍ଥିରସିଦ୍ଧାନ୍ତ କରି ସାରିଲାଣି । ରେବତୀ ପାଠ ପଢ଼ିବାରୁ ପୁଅମଲା, ବୋହୂମଲା, ହଳିଆ ଛାଡ଼ିଗଲା, ବଳଦ ବିକାଗଲା, ଜମିଦାର ଘର ଗାଈ ବାନ୍ଧି ଘେନଗଲା, ରେବତୀ କୁଲକ୍ଷଣୀ, ସେ କୁଡ଼ଙ୍ଗୀ, ସେ ଲକ୍ଷ୍ମୀଛଡ଼ା । ବୁଢ଼ୀ ଆଖିକୁ ଯେ ଦିଶୁନାହିଁ, ତାହାର କାରଣ ରେବତୀର ପାଠପଢ଼ା ।" (୩୫) 'ରେବତୀ' ଗଳ୍ପରେ ଏ ଉକ୍ତିଟି ବୁଢ଼ୀମାଙ୍କର ବ୍ୟକ୍ତିଗତ ମତ

ନୁହେଁ; ବରଂ ସମକାଳୀନ ଓଡ଼ିଆ ସାମନ୍ତବାଦୀ ପରିପ୍ରେକ୍ଷୀରେ ସ୍ୱର କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଗାରୁଡ଼ମନ୍ତ୍ର :

'ଗାରୁଡ଼ମନ୍ତ୍ର' ଗଳ୍ପର ଆରମ୍ଭରେ ଅଛି : "ଏହିଟା ହେଲା ବିଂଶ ତ୍ରିଂଶ ବର୍ଷ ତଳର କଥା । କଟକରେ କଲେଜ ନୂଆ ବସିଛି । ଏଫ୍. ଏ. କ୍ଲାସ ପର୍ଯ୍ୟନ୍ତ ପଢ଼ାହୁଏ । ଉପରକ୍ଲାସରେ ଗୋଟି ପନ୍ଦର ଷୋଳ ଛାତ୍ର । ସେଥିମଧ୍ୟରୁ ଆଠଦଶଜଣ ମଫସଲିଆ, ସହର-ଭିତରେ ନାନା ଜାଗାରେ ବସାକରି ରହିଛନ୍ତି । ସେତେବେଳେ କଲେଜରେ ବୋର୍ଡିଂ ନ ଥିଲା ।" (୩୬) 'ଗାରୁଡ଼ମନ୍ତ୍ର'ର ପ୍ରକାଶସମୟ ୧୯୧୭ ମସିହା (*) ତେଣୁ ଗଳ୍ପରେ ବର୍ଣ୍ଣିତ ଘଟଣା ୧୮୭୭-୮୭ ମସିହା ମଧ୍ୟବର୍ତ୍ତୀ ।" "୧୮୬୮ ସାଲରେ କଟକର ଉଚ୍ଚଇଂରେଜୀ ବିଦ୍ୟାଳୟ (ବର୍ତ୍ତମାନର କଲେଜିଏଟ୍ ସ୍କୁଲ୍) ସହିତ କଲେଜର ଦୁଇଟି କ୍ଲାସ ଖୋଲା ହୋଇଥିଲା, ସେତେବେଳେ ଏହାର ନାମଥିଲା First Arts ବା F. A. କ୍ଲାସ । ୮୭ ସାଲରେ କଲେଜରେ କେବଳ ୭ ଜଣ ଛାତ୍ରଥିଲେ । ୧୮୭୭ ସାଲରେ ଏହି କଲେଜ ପ୍ରଥମ ଶ୍ରେଣୀ କଲେଜ ହେଲା ଓ ୧୮୭୭ ସାଲରେ ଏଥିରେ ୩୯ ଜଣ ଛାତ୍ର ଅଧ୍ୟୟନ କରୁଥିଲେ । ଗାରୁଡ଼ମନ୍ତ୍ରର ନାୟକ ମଦନମୋହନ ପଟ୍ଟନାୟକ ମନେହୁଏ ସେମାନଙ୍କ ମଧ୍ୟରେ ଅନ୍ୟତମ ।"(୩୭)

## ସଭ୍ୟଜମିଦାର :

ସ୍ୱଦେଶର ଉନ୍ନତିସାଧନ ନିମନ୍ତେ କେତେଜଣଙ୍କୁ ମିଳି ଏକାବେଳକେ ଯୋଡ଼ିଏ, ସମିତି ସ୍ଥାପନ କଲେ । ମଙ୍ଗଳବାରିହିନ

(*) ଉତ୍କଳସାହିତ୍ୟ ୨୦ଶ ଭାଗ/୮ମ ସଂଖ୍ୟା

'କୁସଂସ୍କାର-ସମର୍ଥିତ' ଶବ୍ଦଟିର 'ନାରୀସ୍ୱାଧୀନତା ବିବର୍ଦ୍ଧିତ' ସହିତ ଅଧିବେଶନ ହୁଏ। (୩୮) ଅର୍ଥାତ୍ ସେହି ସମୟରେ ପ୍ରାଚୀନ ମରଣାନ୍ତ ବନ୍ଧନରେ ଓଡ଼ିଆ ସମାଜରେ ସ୍ୱଉଦ୍ବେଳନ କରାଯାଇଛି ଏବଂ ନାରୀମାନଙ୍କର ଶିକ୍ଷା-ସ୍ୱାଧୀନତାପ୍ରତି ଦୃଷ୍ଟି ଦିଆଯାଇଛି ସତ୍ୟନିଷ୍ଠାରେ ସେହି ସମୟର ଘଟଣା ବର୍ଣ୍ଣିତ।

ବିଂଶ ଶତାବ୍ଦୀର ବିଶିଷ୍ଟ ସମାଲୋଚକ I. A. Richards କହନ୍ତି—"The writer is the most conscious point of an age." (The Psychological criticism) ଅର୍ଥାତ୍ ଲେଖକ ହେଉଛି ତା'ର ସମୟର ସର୍ବଶ୍ରେଷ୍ଠ ସଚେତନଶୀଳ ସତ୍ତା। ତେଣୁ ସାମନ୍ତବାଦୀ ସଭ୍ୟତାର କ୍ରମ-ତିରୋଧାନ ଓ ଇଂରେଜୀ ଶିକ୍ଷା-ସଭ୍ୟତାର କ୍ରମ-ଅଭ୍ୟୁଦୟ ହିଁ ଫକୀରମୋହନ କଥା-ସାହିତ୍ୟର ମୁଖ୍ୟ ସ୍ୱର। ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଦଶକରୁ ବିଂଶ ଶତାବ୍ଦୀର ପ୍ରଥମ ପାଦ ପର୍ଯ୍ୟନ୍ତ ଦୀର୍ଘ ଦୁଇଶତବର୍ଷର ନାନା ଘଟଣାବଳି ଫକୀରମୋହନଙ୍କ କଥା-ସାହିତ୍ୟରେ ରୂପାୟିତ ହୋଇଛି। ମୋଗଲ ବାଦଶାହଙ୍କର ଅନୁଦାର ନୀତି, ମରହଟ୍ଟାବର୍ଗୀଙ୍କର ଆକ୍ରମଣ, ପ୍ରତିବେଶୀ ବଙ୍ଗାଳୀମାନଙ୍କର ଦୌରାତ୍ମ୍ୟଠାରୁ ଆରମ୍ଭ କରି ଇଂରେଜ ଶାସନ ତଥା ଶିକ୍ଷାର କୁଫଳ, ନୂତନ ସୃଷ୍ଟ ଜମିଦାର ଗୋଷ୍ଠୀର ଶୋଷଣ, ନଷ୍ଟ ପଲ୍ଲୀଜନତାର ବ୍ୟଥା, ବେଦନା, ଅଶ୍ରୁ ସବୁକିଛି ଏଥିରେ ଦେଖିବାକୁ ମିଳେ। ତେଣୁ ମାଳଜଣ୍ଟ ଦାସଙ୍କ ସହିତ ସ୍ୱର ମିଳାଇ କୁହାଯାଇପାରେ 'ଓଡ଼ିଶାର ପରିସ୍ଥିତି ଭିତରେ ଇତିହାସ ସଙ୍ଗେ ସାମାଜିକତାକୁ ମିଶାଇ ଏପରି ଗଳ୍ପ ରଚନା କରିବା ଆମ ସାହିତ୍ୟରେ ଏବେବି ଅନନ୍ୟସାଧାରଣ।" (୩୯)

## ସଙ୍କେତ ସୂଚୀ :

୧। History of Oriya Literature—P. 167.—Dr. Mayadhara Mansingh, Published by Kendriya Sahitya Akademi, New Delhi, 1st edition—1962.

୨। ବ୍ୟାସକବି ଫକୀରମୋହନ—ପୃ. ୪୧-୪୨—ନଟବର ସାମନ୍ତରାୟ, ପ୍ରକାଶକ—ଗ୍ରନ୍ଥଶାଳା ପୁସ୍ତକଭଣ୍ଡାର, କଟକ। ପ୍ରଥମ ପ୍ରକାଶ—୧୯୫୭

୩। ସରସ୍ୱତୀ ଫକୀରମୋହନ—ପୃ. ୨୪୩—ଅଷ୍ଟାଦଶ ଅଧ୍ୟାୟ। ଡ. ମାୟାଧର ମାନସିଂହ, ପ୍ରକାଶକ—ଗ୍ରନ୍ଥମନ୍ଦିର କଟକ, ପ୍ରଥମ ମୁଦ୍ରଣ—୧୫।୮।୭୨

୪। History of Orissa ( vol. II )—P. 401 and P. 403.—Chapter IX part I, (The struggle between the Mughals and the Marathas 1741-1751 A.D.)-Dr. Harekrushna Mahtab. Published by Prajatantra Prachar Samiti, Cuttack. 1st edition—1960

୫। ଲଛମା—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)—ପୃ. ୩୫୭—ବ୍ୟାସକବି ଫକୀରମୋହନ ସେନାପତି, ପ୍ରକାଶକ—କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ ; ପ୍ରଥମ ପ୍ରକାଶ—୧୯୫୭

୬। ବ୍ୟାସକବି ଫକୀରମୋହନ—ପୃ. ୪୫—ନଟବର ସାମନ୍ତରାୟ

୭। ଓଡ଼ିଶା ଇତିହାସ—ପୃ. ୨୭୦-୮୧—ରାଖାଲଦାସ ବନ୍ଦୋପାଧ୍ୟାୟ ( ସରସ୍ୱତୀ ଫକୀରମୋହନ—ପୃ. ୨୪୪-୪୫ ଡକ୍ଟର ମାୟାଧର ମାନସିଂହ)

୮ । ଛମାଣ ଆଠଗୁଣ୍ଠ —ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)
ପୃ. ୨୮୮

୯ । ଛମାଣ ଆଠଗୁଣ୍ଠ ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)
ପୃ. ୨୯୩

୧୦ । ଛମାଣ ଆଠଗୁଣ୍ଠ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)
ପୃ. ୩୦୧

୧୧ । ଛମାଣ ଆଠଗୁଣ୍ଠ —ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)
ପୃ. ୨୮୧

୧୨ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)—ପୃ. ୨୨୧

୧୩ । ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)— ପୃ. ୩୮୮
ଡକ୍ଟର ନଟବର ସାମନ୍ତରାୟ, ପ୍ରକାଶକ —ରମେଶ ଧଳ,
ପ୍ରଥମ ପ୍ରକାଶ—୧୯୬୪

୧୪ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୯୫

୧୫ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ ପୃ. ୧୦୦

୧୬ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୦୩

୧୭ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୦୧

୧୮ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୦୫

୧୯ । ମାମୁଁ —ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୦୫

୨୦ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୦୮

୨୧ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୩୨

୨୨ । ମାମୁଁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୩୨

୨୩ । ମାମୁଁ —ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)
ପୃ. ୧୫୭-୫୮

୨୪ । ମାମୁ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୧୬୫

୨୫ । ସତ୍ୟସ୍ୱଷ୍ଟା ଫକୀରମୋହନ—ପୃ. ୨୪୭—ଡ଼କ୍ଟର ମାୟାଧର ମାନସିଂହ

୨୬ । ପ୍ରାୟଶ୍ଚିତ୍ତ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୪୧୬

୨୭ । ପ୍ରାୟଶ୍ଚିତ୍ତ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୪୧୩-୨୫

୨୮ । ସତ୍ୟସ୍ୱଷ୍ଟା ଫକୀରମୋହନ—ପୃ. ୨୪୮—ଡ଼କ୍ଟର ମାୟାଧର ମାନସିଂହ

୨୯ । History of Oriya Literature—P.179—Dr. Mayadhar Mansingh.

୩୦ । କ୍ଷୁଦ୍ରଗଳ୍ପ : ସ୍ରଷ୍ଟାମାନସ—ପୃ. ୫-୭ ଅଧ୍ୟାପକ ବୈଷ୍ଣବଚରଣ ସାମଲ, ପ୍ରକାଶକ—ବୁକ୍‌ସ ଆଣ୍ଡ ବୁକ୍‌ସ, କଟକ, ପ୍ରଥମ ପ୍ରକାଶ—ଶ୍ରୀରାମ ନବମୀ, ୧୯୭୮

୩୧ । ରେବତୀ—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୫୦୩-୪ (ଗଳ୍ପସଳ୍ପ)

୩୨ । ବ୍ୟାସକବି ଫକୀରମୋହନ—ପୃ. ୧୫୦ ନଟବର ସାମନ୍ତରାୟ

୩୩ । ରେବତୀ (ଗଳ୍ପସଳ୍ପ)—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୫୦୪

୩୪ । ରେବତୀ (ଗଳ୍ପସଳ୍ପ)—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୫୦୫

୩୫ । ରେବତୀ (ଗଳ୍ପସଳ୍ପ)—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୫୦୭

୩୬ । ଗାରୁଡ଼ମନ୍ତ୍ର (ଗଳ୍ପସଳ୍ପ)—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୫୨୬

୩୭ । ବ୍ୟାସକବି ଫକୀରମୋହନ ପୃ. ୧୬୨—ନଟବର ସାମନ୍ତରାୟ

୩୮ । ସଭ୍ୟଜମିଦାର (ଗଳ୍ପସଳ୍ପ)—ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ) ପୃ. ୫୪୯

୩୯ । ଉପୋଦ୍‌ଘାତ ପୃ. ୪—ପଣ୍ଡିତ ନୀଳକଣ୍ଠ ଦାସ/୨୯-୧୦-୧୯୫୬ (ଫକୀରମୋହନ ଗ୍ରନ୍ଥାବଳୀ)



# "ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ସ୍ଥାପନ"
# ଓ
# ଫକୀରମୋହନ (*)

ଡକ୍ଟର—ଶ୍ରୀନିବାସ ମିଶ୍ର (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ)

"ଲୋ ରେବତି, ଲୋ ରେବି, ଲୋ ନିଆଁ, ଲୋ ଚୁଲି ।"

ଆଧୁନିକ ଓଡ଼ିଆ ସାହିତ୍ୟର ପାଠକମାନଙ୍କ ନିକଟରେ ସୁପରିଚିତ ଏହି ସମ୍ବୋଧନାଂଶ ସ୍ରଷ୍ଟା ପୁରୁଷ ଫକୀରମୋହନଙ୍କ ଯଥାର୍ଥ ଅନ୍ତର୍ବାଣୀ ନୁହେଁ । ନାରୀଶିକ୍ଷା ବିପକ୍ଷରେ ସମାଜରେ ବଦ୍ଧମୂଳ କୁସଂସ୍କାର ଜଡ଼ିତ ମନୋଭାବର ଏହା ନିର୍ମମ ପ୍ରତିଧ୍ୱନି ମାତ୍ର । ନାରୀଶିକ୍ଷାର ପୃଷ୍ଠପୋଷକ ଓ ଦୃଢ଼ ସମର୍ଥକ ଫକୀରମୋହନ 'ରେବତୀ' ଗଳ୍ପରେ ଏହି ମନୋଭାବର ପ୍ରତିବାଦ ରୂପେ ରେବତୀକୁ ପାଠ ପଢ଼ାଇବାର ଯେଉଁ ସାହସିକ ଉଦ୍ୟମ କରିଥିଲେ, ଗଳ୍ପର ଅପ୍ରତ୍ୟାଶିତ କରୁଣ ପରିଣତି ହେତୁ ତାହା ହୁଏତ ଅତ୍ୟନ୍ତ କ୍ଷୀଣବଳ ପ୍ରତୀୟମାନ ହୁଏ । ତଥାପି ଊନବିଂଶ ଶତାବ୍ଦୀରେ ନବଜାଗରଣର ଯଥାର୍ଥ ଭଗୀରଥ ଭାବେ ଫକୀରମୋହନଙ୍କ ଚିନ୍ତା, କର୍ମ ଓ ଆଦର୍ଶରେ

---

(*) ସତ୍ୟବାଦୀ—ତୃତୀୟ ଖଣ୍ଡ— ପ୍ରଥମ ଓ ଦ୍ୱିତୀୟ ସଂଖ୍ୟା (୧୯୧୭ ଅପ୍ରେଲ-ମେ) ରେ ପ୍ରକାଶିତ ଫକୀରମୋହନଙ୍କ ଆତ୍ମଚରିତରେ ଏକ ଦୁର୍ଲଭ ଅଧ୍ୟାୟ "ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ସ୍ଥାପନ" ଅବଲମ୍ବନରେ ପ୍ରସ୍ତୁତ ଆଲୋଚନା । ଏହି ଆଲୋଚନା ୧୯୭୮ ମସିହା ଗୋପବନ୍ଧୁ ସ୍ମାରକ ସଂଖ୍ୟା ବାର୍ଷିକ 'ସମାଜ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଆଲୋଚନାର ପୁନଃ ପ୍ରକାଶ ଅବସରରେ 'ସମାଜ' କର୍ତ୍ତୃପକ୍ଷଙ୍କ ସୌଜନ୍ୟ ସ୍ୱୀକୃତ ହେଉଅଛି ।

ଯେଉଁ କେତେକ ପ୍ରଶଂସନୀୟ ଜନହିତକର ପ୍ରୟାସ ପରିଲକ୍ଷିତ ହୋଇଥିଲା, ତହିଁ ମଧ୍ୟରେ ନାରୀ ଶିକ୍ଷାର ପ୍ରଗତି ନିମନ୍ତେ ଆଗ୍ରହ ବିଶେଷ ଉଲ୍ଲେଖଯୋଗ୍ୟ ।

ଫକୀରମୋହନଙ୍କ ରଚନାରେ ନାରୀଶିକ୍ଷା ବ୍ୟାପାରରେ ଦୁଇଜଣ ବାଳିକାଙ୍କ ଚରିତ ପାଠକମାନଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରେ । ଜଣେ 'ଆତ୍ମଚରିତ'ର ଶାରଦା ଓ ଅପର ଜଣକ ଗଳ୍ପ ନାୟିକା ରେବତୀ । ଜଣେ ଲେଖକଙ୍କ ଶ୍ରଦ୍ଧାଭାଜନ ରକ୍ତମାଂସ ଦେହଧାରୀ ଜୀବନ୍ତ ବାଳିକା, ଅନ୍ୟ ଜଣକ ତାଙ୍କ ସ୍ନେହପୋଷିତ କାଳ୍ପନିକ ମାନସକନ୍ୟା । ବାଲେଶ୍ୱର ମିଶନ ସ୍କୁଲରେ ହେଡ଼ମଷ୍ଟ୍ରେ ଥିଲାବେଳେ ସନ୍ନିହିତ ବାଳିକା ବିଦ୍ୟାଳୟର ଛାତ୍ରୀ ଶାରଦା ପ୍ରତି ସେ ସ୍ନେହପ୍ରବଣ ହୋଇଥିଲେ । ପୁସ୍ତକପାଠ, କବିତା ଆବୃତ୍ତି ଓ ସଙ୍ଗୀତଗାନ ଅଭ୍ୟାସ କରୁଥିବା ଛାତ୍ରୀମାନଙ୍କ ପ୍ରତି ଫକୀର-ମୋହନଙ୍କ ଆନ୍ତରିକ ଶ୍ରଦ୍ଧାର କେନ୍ଦ୍ରବିନ୍ଦୁ ଥିଲା ଶାରଦା । 'ଶାରଦା'ର ସ୍ମୃତି ପରବର୍ତ୍ତୀ କାଳରେ ଗଳ୍ପକାର ଫକୀରମୋହନଙ୍କ ମାନସକନ୍ୟା ରେବତୀକୁ ଜନ୍ମ ଦେଇଥିଲା । ରେବତୀ ଯଥାର୍ଥରେ ସମସାମୟିକ ରକ୍ଷଣଶୀଳ ସମାଜର ଧାରଣା ବିରୋଧରେ ଲେଖକଙ୍କ ପ୍ରତିନିଧିତ୍ୱର ବାଣୀମୂର୍ତ୍ତି । ରକ୍ଷଣଶୀଳ ସମାଜର କୁସଂସ୍କାର ଲାଳିତ ମନୋଭାବର ମୂର୍ତ୍ତିମନ୍ତ ରୂପ ଯେଜମା । ତାଙ୍କ ବିଶ୍ୱାସ, 'ପାଠ କଣ ଲୋ ? ରନ୍ଧାବଢ଼ା ଶିଖ, ପିଠାପଣା କରି ଶିଖ, ଝୋଟି ଦିଆ ଶିଖ, ଦହିମୁହାଁ ଶିଖ, ପାଠ କଣ ?' କିନ୍ତୁ ଯେଜମାର ବାରମ୍ବାର ପ୍ରତିବାଦ ସତ୍ତ୍ୱେ ଶ୍ୟାମବନ୍ଧୁ ଝିଅ ରେବତୀକୁ ପାଠ ପଢ଼ାଇଲେ । ଶିକ୍ଷକ ହେଲେ ଯୁବକ ବାସୁଦେବ । ଘଟଣା ଚକ୍ରରେ ନିୟତିର ନିଷ୍ଠୁର ଇଙ୍ଗିତ ହେତୁ ରେବତୀ ପରିବାରରେ ଦାରୁଣ ବିପର୍ଯ୍ୟୟ ଘଟିଥିତ

ହେଲ । କିନ୍ତୁ ସେମାନଙ୍କ ଅନ୍ଧବିଶ୍ୱାସ ସୁଦୃଢ଼ କରିବାରେ ଏହା ହେଲା ସହାୟକ । 'ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳିଆ ଗୁଡ଼ିଗଲା । ବଳଦ ବିକାଗଲା, ଜମିଦାର ଘର ଗାଣ୍ଠି ବାନ୍ଧି ଘେନିଗଲା । ରେବତୀ କୁଳକ୍ଷଣୀ, କୁଢ଼ଙ୍ଗୀ, ଲକ୍ଷ୍ମୀଛାଡ଼ୀ । ବୁଢ଼ୀ ଆଖିକୁ ଯେ ଦିଶୁନାହିଁ, ତା'ର କାରଣ ରେବତୀର ପାଠପଢ଼ା । ବାସୁଦେବ ଦରେଶ ଆସି ଆପଣା ଦୁର୍ବୁଦ୍ଧିରେ ରେବତୀକୁ ପାଠ ପଢ଼େଇବାରୁ ମଲା, ନୋହିଲେ କେତେହେଁ ମରି ନ ଥାନ୍ତା ।' ରେବତୀ ଗଳ୍ପରେ ଆତ୍ୟନ୍ତ ସେକ୍ଷମାର ଏବଂ ଅନ୍ଧବିଶ୍ୱାସ ନିକଟରେ ଫକୀରମୋହନଙ୍କ ସଂସ୍କାର ଲିପ୍ସା ଅତ୍ୟନ୍ତ କ୍ଷୀଣ । ଆଶାନୁରୂପ ଫଳପ୍ରସୂ ହୋଇ ନ ଥିଲେ ସୁଦ୍ଧା ଆଦୌ ଉପେକ୍ଷଣୀୟ ନୁହେଁ; ବରଂ ସମସାମୟିକ ପରିସ୍ଥିତି ବିଚାରରେ ତାଙ୍କ ସଂସ୍କାର ଲିପ୍ସାର କଲ୍ୟାଣ କର ଆନ୍ତରିକତା ଫକୀରମୋହନଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚାୟକ ।

ଊନବିଂଶ ଶତାବ୍ଦୀର ସମାଜସଂସ୍କାରମୂଳୀ ଆନ୍ଦୋଳନ ନାରୀସମାଜର ଦୁଃଖ ଓ ଅକ୍ଷମତା ଦୂର କରିବା ନିମନ୍ତେ ମୁଖ୍ୟତଃ ଉଦ୍ଦିଷ୍ଟ ଥିଲା । ଶିକ୍ଷାର ଅଭାବ ଥିଲା ନାରୀସମାଜ ପକ୍ଷରେ ସର୍ବାଧିକ ଦୁଃଖର କାରଣ । ଅଳ୍ପବୟସରେ ବିବାହ ହେତୁ ସେମାନେ ଶିକ୍ଷା ଲାଭର ସୁଯୋଗରୁ ବଞ୍ଚିତ ହେଉଥିଲେ । ଅନ୍ୟ ଏକ ବଦ୍ଧମୂଳ କୁସଂସ୍କାର ଥିଲା, ଶିକ୍ଷିତା ନାରୀ ବିଧବା ହେବା ନିଶ୍ଚିତ ବିଷୟ । (୧) ଫକୀର-ମୋହନ ଏହି ବିଶ୍ୱାସର ଅନୁରୂପ ଚିତ୍ର ନିଜ ରଚନାରେ ପ୍ରକାଶ କରିଛନ୍ତି । "ସେ ସମୟରେ ହିନ୍ଦୁସମାଜ ମଧ୍ୟରେ ସ୍ତ୍ରୀଶିକ୍ଷା ଗୋଟିଏ

---

(୧) Glimpses of Bengal in the 19th Century by R. C. Mazumdar Page 54-55.

ସୁଷଣ ଦୁଷ୍କାର୍ଯ୍ୟ ମଧ୍ୟରେ ଗଣ୍ୟ ହେଉଥିଲା । ସ୍ତ୍ରୀ ମହଲରେ କୁସଂସ୍କାର, ଝିଅ ପାଠ ପଢ଼ିଲେ ବିଧବା ହୋଇଥାଏ । ତାହାର ରନ୍ଧା ତିଅଣ ଲକ୍ଷ୍ମୀ ବା ଅଲକ୍ଷ୍ମୀ ହୁଏ । ତାହା ହାତରେ ଚଳିକାଣ ଭଲ ସିଝେ ନାହିଁ, ଏ ମୁରୁବୀଙ୍କ ମୋ ଶୁଣାକଥା । ଅତିବୃଦ୍ଧ ପୁରୁଷ-ମାନଙ୍କର କଥା—ହିଏ ପାଠପଢ଼ି ଗୋମାସ୍ତାଗିରି କରିବେ ନା କଚେରୀରେ ଅମଲାଗିରି କରିବେ ?" (୨) ଏରୂପ ଦୁର୍ଯୋଗ ସମୟରେ ଫକୀରମୋହନ ଅଭୂତ ମନୋବଳ ଓ ସଚେଷ୍ଟ, ସାହସିକତା ସହ ସ୍ତ୍ରୀଶିକ୍ଷା ସମ୍ବନ୍ଧରେ ପ୍ରସ୍ତାବ କରିଥିଲେ ଓ ଏହାକୁ ବାସ୍ତବରୂପ ଦେବା ନିମନ୍ତେ ବାଳିକା ବିଦ୍ୟାଳୟ ସ୍ଥାପନରେ ବ୍ରତୀ ହୋଇଥିଲେ ।

ବାଳିକା ବିଦ୍ୟାଳୟର ସ୍ଥାପନରେ ସଙ୍କଳ୍ପବଦ୍ଧ ହେବା ଫକୀରମୋହନଙ୍କଠାରେ ଦୁଇଟି ପ୍ରେରଣା କାର୍ଯ୍ୟ କରୁଥିଲା । ଗୋଟିଏ ପ୍ରତ୍ୟକ୍ଷ, ଅନ୍ୟଟି ହୁଏତ ପରୋକ୍ଷ । ବାଲେଶ୍ୱର ମିଶନ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କ ପାଠ ଶୁଣିଲେ ତାଙ୍କ ମନରେ ଅତ୍ୟନ୍ତ ଆନନ୍ଦ ଜାତ ହୁଏ । "ସମୟ ସମୟରେ ଚଳନ୍ତି ସ୍ତ୍ରୀ ପରି ମୋ ମନ ମଧ୍ୟରେ ଗୋଟାଏ ଆଶା ଉଠିଯାଏ; ଆମ୍ଭମାନଙ୍କ ଘରେ ବାଳିକାଗଣ ଏ ପ୍ରକାର ପୁସ୍ତକପାଠ କଲେ କେତେ ଆନନ୍ଦର କଥା ହୁଅନ୍ତା । ମାତ୍ର ତାହା ନିତାନ୍ତ ଅସମ୍ଭବ ଏବଂ ଅସାଧ୍ୟ ।" (୩) ମିଶନ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କ କୃତିତ୍ୱ ଜନିତ ସନ୍ତୋଷ-ରୂପ ପ୍ରତ୍ୟକ୍ଷ ପ୍ରେରଣାକୁ ଛାଡ଼ିଦେଲେ ପରୋକ୍ଷ ପ୍ରେରଣା ରୂପେ

---

(୨) "ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ସ୍ଥାପନ"—ସତ୍ୟବାଦୀ ୩/୮-୨ ।

(୩) ତତ୍ରୈବ ।

ଯାହାସବୁ ଦେଶରେ ସର୍ବସାଧାରଣଙ୍କ ନିମନ୍ତେ ବାଳିକା ବିଦ୍ୟାଳୟ ଥିବା ବିଷୟ ଫକୀରମୋହନ କୌଣସି ବହିରୁ ପଢି ଜାଣିବା ପ୍ରସଙ୍ଗ ଉଲ୍ଲିଖିତ ହୋଇପାରେ । ପୁଣି ପ୍ରତିବେଶୀ ପ୍ରାନ୍ତ ବଙ୍ଗର ବହୁ ସାଂସ୍କୃତିକ ଜାଗୃତି ସହ ଆତ୍ମିକ ସମ୍ପର୍କ ରକ୍ଷା କରି ସେସବୁଦ୍ୱାରା ଉଦ୍‌ବୁଦ୍ଧ ଓ ସକ୍ରିୟ ହୋଇଥିବା ଫକୀରମୋହନଙ୍କୁ ବଙ୍ଗ ଦେଶରେ ନାରୀଶିକ୍ଷାର ଦ୍ରୁତ ଅଗ୍ରଗତି ମଧ୍ୟ ପ୍ରେରଣା ଦେଇଥିବା ଅନୁମାନ କରାଯାଇପାରେ ।

ବଙ୍ଗ ଦେଶରେ ଉନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ନାରୀ ଶିକ୍ଷା ପ୍ରତି ବହୁ ଲୋକର ଆଗ୍ରହ ପ୍ରକାଶିତ ହୋଇଥିଲା । ସେ କାଳରେ ଉଭୟ ରକ୍ଷଣଶୀଳ ଓ ପ୍ରଗତିବାଦୀ ଏ କାର୍ଯ୍ୟରେ ସମାନ ଉତ୍ସାହ ପ୍ରକାଶ କରିଥିଲେ । ୧୮୨୨ ରେ ପଣ୍ଡିତ ଗୌରମୋହନ ବିଦ୍ୟାଳଙ୍କାର 'ସ୍ତ୍ରୀ ଶିକ୍ଷା ବିଧାୟକ' ନାମକ ପୁସ୍ତିକା ଲେଖି ନାରୀଶିକ୍ଷା ପ୍ରତି ଜନସମାଜର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲେ । ଏଥିରେ ସ୍ତ୍ରୀ-ଶିକ୍ଷାର ପ୍ରୟୋଜନୀୟତା ଓ ଉପକାରିତା ସଂକ୍ଷେପରେ ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ଲେଖକ ପ୍ରାଚୀନ ଭାରତରେ ନାରୀଶିକ୍ଷାର ପ୍ରଚଳନ ସମ୍ପର୍କରେ ପାଠକମାନଙ୍କର ଐତିହ୍ୟଚେତନା ଜାଗ୍ରତ କରାଇଥିଲେ । ବଙ୍ଗ ଦେଶରେ ରକ୍ଷଣଶୀଳ ରାଜା ରାଧାକାନ୍ତଦେବ, ରାଜା ବୈଦ୍ୟ-ନାଥ ରାୟ, ବ୍ରାହ୍ମଧର୍ମବଲମ୍ବୀ ରାଜା ରାମମୋହନ ରାୟ, ଦେବେନ୍ଦ୍ର-ନାଥ ଠାକୁର, ଇୟଂ ବଙ୍ଗ ଗୋଷ୍ଠୀଭୁକ୍ତ ରାମଗୋପାଳ ଘୋଷ, ପ୍ୟାରୀଚାନ୍ଦ ମିତ୍ର ଓ କୃଷ୍ଣମୋହନ ବନ୍ଦୋପାଧ୍ୟାୟ, ସ୍ୱାଧୀନଚେତା ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଖ୍ରୀଷ୍ଟଧର୍ମ ପ୍ରଚାରକ ଶ୍ରୀରାମପୁର ମିଶନାରୀ ଗୋଷ୍ଠୀ, ସେମାନଙ୍କ ପତ୍ନୀ ଓ ଅନ୍ୟାନ୍ୟ ଇଉରୋପୀୟ ମହିଳା, ଶିକ୍ଷାପ୍ରେମୀ ଡ୍ରିଙ୍କ୍‌ୱାଟର ବେଥୁନ ସାହେବଙ୍କ ସହରେ ନାରୀ-ଶିକ୍ଷାର ପ୍ରସାର ସମ୍ଭବ ହୋଇଥିଲା । ପରବର୍ତ୍ତୀକାଳରେ ଏହିମାନେ

ମଧ୍ୟ ଆନ୍ଦୋଳନ କରାଯାଇଥିଲା । ବଙ୍ଗଳା 'ସମାଚାର ଦର୍ପଣ' ନାମକ ସମ୍ବାଦ ପତ୍ରରେ ଦୁଇଖଣ୍ଡି ପତ୍ର ପ୍ରକାଶ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ନଦିଆ ଜିଲ୍ଲାର ଶାନ୍ତିପୁର ଅଞ୍ଚଳର କେତେଜଣ ସ୍ତ୍ରୀଲୋକ ମର୍ମଭେଦୀ ଭାଷାରେ ନାରୀସମାଜର ଦୁଃଖ, ବିଧବାମାନଙ୍କ ଦୁର୍ଭୋଗ ବିଷୟ ପ୍ରଥମ ଚିଠିରେ ବର୍ଣ୍ଣନା କରିଥିଲେ । ଦ୍ୱିତୀୟ ପତ୍ରଟି ଚନ୍ଦନପୁରର ସ୍ତ୍ରୀଲୋକଙ୍କ ନାମରେ ପ୍ରକାଶିତ ହୋଇଥିଲା । ଏଥିରେ ସମାଜର ପିତୃ ଓ ଭାତୃ ସ୍ଥାନୀୟ ପୁରୁଷମାନଙ୍କୁ ଆବେଦନ କରାଯାଇ ନାରୀ ଜାତିର ଶିକ୍ଷା ଅବାଧ ଚଳପ୍ରଚଳ, ସ୍ୱାଧିକାର ଓ ବିଧବା ବିବାହ, ସମର୍ଥିତ ହୋଇଥିଲା । ପୁଣି ସ୍ତ୍ରୀଧନ ନାମରେ ନାରୀର ବିଷୟ, ବହୁ ବିବାହ ମଧ୍ୟ ନିନ୍ଦିତ ହୋଇଥିଲା । ଏହି ଦୁଇଟି ପତ୍ର ସମାଜରେ ଆଲୋଡ଼ନ ଓ ସହାନୁଭୂତି ସଞ୍ଚାର କରିଥିଲା । (୪) ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ନାରୀଶିକ୍ଷା ବ୍ୟାପାରରେ ଉଦ୍ୟମ ପୂର୍ଣ୍ଣରୂପେ ଥିଲା ବେସରକାରୀ । ୧୮୫୪ରେ ଶିକ୍ଷା ବିଷୟକ ପ୍ରସିଦ୍ଧ ପ୍ରସ୍ତାବ 'ଉଡ଼ର ଡେସପାଚ'ରେ ନାରୀଶିକ୍ଷା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରା ହୋଇଥିଲା । ଏଥିରେ ଲିଖିତ ଥିଲା, 'ଭାରତ-ବାସୀମାନେ ନିଜ କନ୍ୟାମାନଙ୍କୁ ଶିକ୍ଷା ଦେବା ନିମନ୍ତେ କ୍ରମଶଃ ଉଦବୁଦ୍ଧ ହେଉଥିବାରୁ ଆମେ (ବିଲାତର କର୍ତ୍ତୃପକ୍ଷ) ଆନନ୍ଦିତ । ପୁରୁଷଙ୍କୁ ଶିକ୍ଷା ଦେବା ଅପେକ୍ଷା ନାରୀକୁ ସୁଶିକ୍ଷିତ କରି ପାରିଲେ ସମାଜର ନୈତିକ ଅବସ୍ଥାର ଦ୍ରୁତ ଉନ୍ନତି ସମ୍ଭବ ହୋଇପାରେ । (୫) ଏହି ଡେସପାଚ ଫଳରେ ବଙ୍ଗଳାର ଲେଫ୍ଟନାଣ୍ଟ ସାର ଫ୍ରେଡରିକ

(୪) ସମାଚାର ଦର୍ପଣ—୧୪ । ୩ । ୧୮୩୫ ଓ ୨୧ । ୩ । ୧୮୩୫
Glimpses of Bengal in the 19th century page 55-56 ରେ ଉଦ୍ଧୃତ ।

(୫) ବାଂଲାର ସ୍ତ୍ରୀଶିକ୍ଷା—ଯୋଗେଶଚନ୍ଦ୍ର ବାଗଲ ପୃ ୪୭ ରୁ ଉଦ୍ଧୃତ ।

ସ୍ୱାଳଙ୍କ ବାଳିକା ବିଦ୍ୟାଳୟ ପ୍ରତିଷ୍ଠାରେ ମନୋଯୋଗୀ ହୋଇଥିଲେ । ତାଙ୍କ ଅନୁରୋଧରେ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବିଭିନ୍ନ ଅଞ୍ଚଳରେ ଅବୈତନିକ ଆଦର୍ଶ ବାଳିକା ବିଦ୍ୟାଳୟ ସ୍ଥାପନ କରିଥିଲେ ।

ଓଡ଼ିଶାରେ ୧୮୩୭ରେ କଟକ ମିଶନ ବାଳିକା ବିଦ୍ୟାଳୟ ବା ବୋର୍ଡିଂ ସ୍କୁଲ ସ୍ଥାପିତ ହୋଇଥିଲା । ଶ୍ରୀମତୀ ସଟନ ଏହାର ତତ୍ତ୍ୱାବଧାନ କରୁଥିଲେ । କ୍ରମଶଃ ବ୍ରହ୍ମପୁର ପିପିଲି ଓ ବାଲେଶ୍ୱର ପ୍ରଭୃତି ସ୍ଥାନରେ ବାଳିକା ବିଦ୍ୟାଳୟ ସ୍ଥାପିତ ହେଲା । କିନ୍ତୁ ଏହି ସ୍କୁଲ ଗୁଡ଼ିକରେ ଅଖ୍ରୀଷ୍ଟିୟାନ ଛାତ୍ରୀ ପଢ଼ିବା ଏକପ୍ରକାର ଅସମ୍ଭବ ବ୍ୟାପାର ଥିଲା । (୭) ଏହାର କାରଣ ଧର୍ମପ୍ରଚାର ଜମନ୍ତେ ପାଠ୍ୟପୁସ୍ତକରେ ମିଶନାରୀମାନଙ୍କ ଅଧିକ ଉତ୍ସୁକତା । ପାଠ୍ୟ ତାଲିକାରେ ବାଇବେଲ ଓ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ପୁସ୍ତକାଦି ସ୍ଥାନ ପାଇବାରୁ କ୍ରମଶଃ ହିନ୍ଦୁ ଅଭିଭାବକମାନେ ସନ୍ଦେହ ହେଲେ । ଖ୍ରୀଷ୍ଟିୟାନ ଧର୍ମ ପ୍ରଚାରକମାନଙ୍କର ଏହି ଆଗ୍ରହ ମନୋଭାବ ଡକ୍ଟର ଟମାସ ସ୍ମିଥ୍ ନାମକ ଜଣେ ପାଦ୍ରୀଙ୍କ ସ୍ୱୀକୃତି ମଧ୍ୟରେ ପ୍ରକାଶିତ । ସେ ଲେଖିଥିଲେ, 'ଆମ୍ଭମାନଙ୍କ ହୃଦ୍‌ଗତ ବାସନା, ଭାରତବର୍ଷ ସମ୍ପୂର୍ଣ୍ଣରୂପେ ଖ୍ରୀଷ୍ଟଧର୍ମାନ୍ତରିତ ହେଉ; ଏକଥା ଆମେ କେବେହେଁ ଗୋପନ ରଖି ପାରିବୁ ନାହିଁ । ସ୍ତ୍ରୀଶିକ୍ଷାକୁ ଆମ୍ଭେମାନେ ଏହାର ପ୍ରକୃଷ୍ଟ ଉପାୟ ରୂପେ ଗ୍ରହଣ କରିଅଛୁ ।' (୭) ଏହି କାରଣରୁ

(୭) ଓଡ଼ିଶାରେ ଖ୍ରୀଷ୍ଟୀୟ ମଣ୍ଡଳୀ ସ୍ଥାପନର ଇତିହାସ ଶ୍ରୀ ପ୍ରଫୁଲ୍ଲ କୁମାର ପାଢ଼ୀ ପୃ ୧୫୭ ।

(୭) Calcutta Review—July—September, 1855 Page 102—Native female Education ଶୀର୍ଷକ ପ୍ରବନ୍ଧ ।

ଜାତିଚ୍ୟୁତ ଆଶଙ୍କାରେ ମିଶନ ବାଳିକା ବିଦ୍ୟାଳୟ ଗୁଡ଼ିକରେ ହିନ୍ଦୁ ସ୍ତ୍ରୀମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଅଭିଭାବକମାନେ ଆଗ୍ରହୀ ହେଉ ନ ଥିଲେ । ତେଣୁ ଫକୀରମୋହନ ମିଶନ ବାଳିକା ବିଦ୍ୟାଳୟ ଥିବା ସତ୍ତ୍ୱେ ଅନ୍ୟ ବାଳିକା ବିଦ୍ୟାଳୟ ସ୍ଥାପନରେ ଆଗ୍ରହୀ ହେବା ସ୍ୱାଭାବିକ ।

ବାଲେଶ୍ୱରରେ ବ୍ୟକ୍ତିଗତ ଉଦ୍ୟମରେ ପ୍ରେସ ସ୍ଥାପନ । ଗ୍ରେଟ ଲାଟ ସାର ଜର୍ଜ କାମ୍ପବେଲଙ୍କ ଶିକ୍ଷାମନ୍ତ୍ରୀ ସମର୍ଥନପୂର୍ବକ ଜନଶିକ୍ଷାର ପ୍ରସାର ଦିଗରେ ସାଧୁ ଉଦ୍ୟମ ଭଳି ବାଳିକା ବିଦ୍ୟାଳୟ ସ୍ଥାପନ ଫକୀରମୋହନଙ୍କ ଜୀବନର ଏକ ଅତ୍ୟନ୍ତ ସାହସିକ କର୍ମ । ତାଙ୍କର ଜୀବନର ବିକାଶକ୍ଷମ ବିଭିନ୍ନ କଲ୍ୟାଣକର କର୍ମ ସାଧନ ନିମନ୍ତେ ବାଲେଶ୍ୱରରେ ତାଙ୍କ ଉଦ୍ୟମରେ ଏକ ସଭା ସ୍ଥାପିତ ହୋଇଥିଲା । ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ସାମନ୍ତରାୟ, ଦାମୋଦରପ୍ରସାଦ ଦାସ, ଗୋବିନ୍ଦପ୍ରସାଦ ଦାସ ପ୍ରମୁଖ ଏହି ସଭାର ସଭ୍ୟ ଥିଲେ । ସଭାର ମଧ୍ୟରେ ବାଳିକା ବିଦ୍ୟାଳୟ ସ୍ଥାପନ ପ୍ରସ୍ତାବ ସଭାରେ ଉତ୍ଥାପିତ ଓ ଆଲୋଚିତ ହୋଇ ଏହାର କାର୍ଯ୍ୟକାରିତା ନିମନ୍ତେ ଚେଷ୍ଟା ହେଲା । ସେ କାଳରେ ବାଲେଶ୍ୱରରେ ଶିକ୍ଷିତା ଦେଶୀୟ ସ୍ତ୍ରୀଲୋକ ନ ଥିଲେ । କେବଳ ରୋମ୍ ଖ୍ରୀଷ୍ଟାନ୍ ସ୍ତ୍ରୀମାନେ ଶିକ୍ଷିତା । ଏମାନଙ୍କ ସାହାଯ୍ୟରେ ପ୍ରଥମେ ନିଜ ଘରର ଅଶିକ୍ଷିତା ସ୍ତ୍ରୀମାନଙ୍କୁ ଶିକ୍ଷା ଦେବା ଲାଗି ଫକୀରମୋହନ ଅଭିଳାଷୀ ହେଲେ । ଉଦ୍ଦେଶ୍ୟ—ଶିକ୍ଷିତା ସ୍ତ୍ରୀମାନଙ୍କ ଚାଲି ଓ କଥା ଶୁଣିଲେ, ସେମାନଙ୍କ ଭଦ୍ର ବ୍ୟବହାର, ସିଲେଇ, କାର୍ପେଟ ବୁଣା ଦେଖିଲେ ଦେଶୀୟ ସ୍ତ୍ରୀ ଲୋକମାନଙ୍କ ମନରେ ଶିଖିବା ଓ ପଢ଼ିବା ପାଇଁ ଶ୍ରଦ୍ଧା ଜାତ ହେବ । ନିଜ ବଡ଼ ଭଉଜ, ସ୍ତ୍ରୀ ଓ ଭାଇବୋହୂ ତିନି ଜଣଙ୍କୁ ସେମାନଙ୍କ ଦ୍ୱାରା ଶିକ୍ଷିତା କରାଇବା ପାଇଁ ସେ ଉଦ୍‌ଯୋଗୀ ହେଲେ ।

ଶ୍ରୀମତୀ ସ୍ମିଥ୍ । ଶ୍ରୀମତୀ ହାଲମ୍, ଓ ମାଜିଷ୍ଟ୍ରେଟ ସାହେବଙ୍କ ମେମ୍‌ଙ୍କ ପ୍ରେରଣାରେ ଓ ଶ୍ରୀମତୀ ସ୍ମିଥଙ୍କ ପ୍ରତ୍ୟକ୍ଷ ଯତ୍ନରେ ଫକୀର-ମୋହନଙ୍କ ଘରର କୁଳବୋହୂମାନେ ପଢିବାକୁ ଲାଗିଲେ । କ୍ରମେ ସେହି ମେମ୍ ତିନ ଜଣ ସୁନ୍ଦରୀ ଗ୍ରାମର ପୋଲିସ ଇନ୍‌ସପେକ୍ଟର ଗୋବିନ୍ଦପ୍ରସାଦ ଦାସଙ୍କ ଘରେ ଉପସ୍ଥିତ ହୋଇ ସମ୍ଭ୍ରାନ୍ତ ଝିଅ ବୋହୂମାନଙ୍କୁ ପାଠ ପଢିବା ନିମନ୍ତେ ଉତ୍ସାହିତ କଲେ । ସାହେବାଣୀ ଦେଖିବା, କେତେ ନୂଆ ନୂଆ କଥା ଶୁଣିବା ଲୋଭ ସହଜରେ ସମ୍ଭାଳି ହେବା ନୁହେଁ; କ୍ରମଶଃ ଖ୍ରୀଷ୍ଟିଆନ ଶିକ୍ଷୟିତ୍ରୀମାନେ ଭଦ୍ରଲୋକଙ୍କ ଘରେ ଝିଅ ବୋହୂମାନଙ୍କୁ ପଢାଇବା ଏକ ସାଧାରଣ ବ୍ୟାପାର ହୋଇଗଲା ।

ସ୍ତ୍ରୀ ଶିକ୍ଷା ପ୍ରତି ଏହି କ୍ରମବର୍ଦ୍ଧିଷ୍ଣୁ ଆଗ୍ରହ ଉପରେ ପ୍ରତିଷ୍ଠିତ ହେଲା ଫକୀରମୋହନଙ୍କ ବାଳିକା ବିଦ୍ୟାଳୟ ସ୍ଥାପନର ବାସ୍ତବ କାର୍ଯ୍ୟପନ୍ଥା । ଜଣେ ଶିକ୍ଷିତା ଖ୍ରୀଷ୍ଟାନ୍ ଯୁବତୀ ମେରି ଶିକ୍ଷୟିତ୍ରୀ ହେଲେ । ଛାତ୍ରବୃତ୍ତି ପରୀକ୍ଷା ପର୍ଯ୍ୟନ୍ତ ତାଙ୍କ ପାଠର ପରିସର । ତାଙ୍କ ଉପାଧି ବା ପଦବୀ ସମ୍ପର୍କରେ କଥା ଉଠିଲା । ମିଷ୍ଟ୍ରେସ, ଗୁରୁପତ୍ନୀ, ଅବଧାନିଆଣୀ, ଫକୀରମୋହନ ଶେଷରେ ପଦବୀର ନାମକରଣ କଲେ 'ପାଠମା' । ପଦବୀ ଉଚ୍ଚାରଣ ମାତ୍ରେ ଛାତ୍ର ଓ ଲୋକମାନଙ୍କ ଭକ୍ତି ଯେପରି ଜାତ ହେବ, ସେପରି ନାମକରଣ ଥିଲା ତାଙ୍କ ଉଦ୍ଦେଶ୍ୟ ।

ସ୍କୁଲଘର ତିଆରି ଏକ ସମସ୍ୟା । ଗୋପନରେ ବିଦ୍ୟାଳୟର ଆୟୋଜନ ହେଉଛି । ସଭ୍ୟମାନେ ନିଜ ଶକ୍ତି ମୁତାବକ ଭେଟି ଦେଲେଣି । ଫକୀରମୋହନ କଲିକତା କାଶିମ ବଜାରର ପୁଣ୍ୟମୟୀ ଦାନଶୀଳା ମହାରାଣୀ ସ୍ୱର୍ଣ୍ଣମୟୀଙ୍କୁ ପତ୍ରରେ ଆବେଦନ କଲେ ।

ଆବେଦନର ଫଳ ସ୍ୱରୂପ ଆଠଦିନ ମଧ୍ୟରେ ପଚିଶ ଟଙ୍କାର ସାହାଯ୍ୟ ଆସିଲା । ଉତ୍ସାହରେ ସ୍କୁଲଘର ତିଆରି ହୋଇଗଲା ।

ବିଦ୍ୟାଳୟର ତୃତୀୟ ପ୍ରଧାନ କଥା ଛାତ୍ରୀ ସମସ୍ୟା । କୌଣସି ଭଦ୍ରଲୋକ ପ୍ରକାଶ୍ୟରେ ଆପଣା ଝିଅଙ୍କୁ ସ୍କୁଲକୁ ପଠାଇବା ବିଡମ୍ବିତ ଆଶା । ଶେଷରେ ଫକୀରମୋହନ ନିଜ ଝିଅ, ବଡ଼ଭାଇଙ୍କ ଝିଅ, ଜଣେ ଜ୍ଞାତି କନ୍ୟା ଓ ବାହାରର ଜଣେ ଝିଅ ଏପରି ଚାରି ଜଣଙ୍କୁ ସଂଗ୍ରହ କରି ବିଦ୍ୟାଳୟର କାର୍ଯ୍ୟାରମ୍ଭ କଲେ ।

ଶୁଭରେ କାର୍ଯ୍ୟାରମ୍ଭ ହେଲା, ମାତ୍ର ବାଧା ଆସିଲା ରକ୍ଷଣଶୀଳମାନଙ୍କ ପ୍ରତିକ୍ରିୟାରୁ । ଝିଅ ଗୁଡ଼ାକ ପାଠ ପଢ଼ିଲେ ଅସମ୍ମାନ ହେବେ । ମାନ ମହତ, କୁଳ ଜାତି ଧର୍ମ ସବୁ ବୁଡ଼ିଲା । 'ବଦମାସ, ଭୂତ, ସଇତାନ ଫକୀରମୋହନ'ଙ୍କୁ ଜବତ ନ କଲେ ରକ୍ଷା ନାହିଁ । ପେଟରେ ତାର ଛନ୍ଦ କପଟ, ଓଣ୍ଠିରେ ଚଣ୍ଡିକଟା ଛୁରି । ସାହେବମାନଙ୍କ ସଙ୍ଗେ ସଦ୍ଭାବ ରଖି ସମାଜ ବଦଳା! ସବୁ ନୂଆ କଥାରେ ସେ ଆଗୁସାର । ସହରର ଅମଲା ଓ ମୁଖଣ୍ଡି ଲୋକେ ରାଜା ଶ୍ୟାମାନନ୍ଦ ଦେଙ୍କୁ ଧରିଲେ । ରାଜାସାହେବଙ୍କ ତଲବ ଆସିଲା । ଫକୀରମୋହନଙ୍କୁ ତୀବ୍ର ଭର୍ତ୍ସନା କରି ରାଜା ସ୍କୁଲ ଉଠାଇ ଦେବା ନିମନ୍ତେ ଆଦେଶ ଦେଲେ । ଫକୀରମୋହନ ବିନୀତ ଭାବେ ରାଜାଙ୍କୁ ସମ୍ମାନ ଜଣାଇ ବିଦାୟ ନେଲେ ।

କିନ୍ତୁ ଯେଉଁ ସ୍ଥାନରେ ଦିନେ ଫକୀରମୋହନ ଭର୍ତ୍ସିତ ହୋଇଥିଲେ, ସେହି ସ୍ଥାନରେ ଶ୍ୟାମାନନ୍ଦ ଦେଙ୍କ ପୁତ୍ର ସୁନାମଧନ୍ୟ ଶିକ୍ଷା ସାହିତ୍ୟପ୍ରେମୀ ବୈକୁଣ୍ଠନାଥ ଦେ କିଛି ବର୍ଷପରେ ତିନି ଚାରି ଶତ ଛାତ୍ରୀଙ୍କୁ ପୁରସ୍କାର ଦେଲେ । ସ୍ତ୍ରୀ ଶିକ୍ଷା ଉପଲକ୍ଷରେ

ବାଲେଶ୍ୱରର ସରକାରୀ ସ୍କୁଲରେ ହୋଇଥିବା ବଡ଼ ସଭାରେ ଫକୀରମୋହନଙ୍କୁ 'ବାଲେଶ୍ୱରରେ ସର୍ବପ୍ରଥମ ସ୍ତ୍ରୀଶିକ୍ଷା ଆରମ୍ଭକାରୀ' ଭାବେ ସମ୍ମାନିତ କରାହୋଇଥିଲା । ଏ ହେଲା ବିଂଶଶତାବ୍ଦୀର ଆଦ୍ୟ ଦଶକର ଘଟଣା ।

'ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ସ୍ଥାପନ' ଶୀର୍ଷକ ଅଧ୍ୟାୟର ଐତିହାସିକ ଗୁରୁତ୍ୱ ସଙ୍ଗେ ରଚନାର ସାହିତ୍ୟିକ କୃତିତ୍ୱ ମଧ୍ୟ ସମଧିକ । ଫକୀରମୋହନଙ୍କ ଆତ୍ମଚରିତର ପ୍ରତ୍ୟେକ ଅଧ୍ୟାୟରେ ଐତିହାସିକତା ସଙ୍ଗରେ ସ୍ରଷ୍ଟା ସ୍ରଷ୍ଟଙ୍କ ମାନସମଧୁର ଓ ସୃଷ୍ଟି ସୌନ୍ଦର୍ଯ୍ୟ ସମନ୍ୱିତ । ପ୍ରକାଶଭଙ୍ଗୀର ସ୍ୱଚ୍ଛତା, ଭାଷାଶୈଳୀର ସରଳତା ସହ ସ୍ୱଚ୍ଛନ୍ଦ୍ୟ ଓ ସଂଳାପ ଯୋଜନାର ସ୍ୱାଭାବିକ କୃତିତ୍ୱ ହେତୁ ଆଲୋଚ୍ୟ ଅଧ୍ୟାୟଟି ଏକାନ୍ତ ରସାଣିତ ଓ ଚିତ୍ତାକର୍ଷକ । ପ୍ରସଙ୍ଗତଃ ଦୁଇଟି ଦୃଷ୍ଟାନ୍ତ ଦିଆଯାଇ ପାରେ । ଫକୀରମୋହନଙ୍କ ପରିବାରକୁ ଆସିଥିବା ମେମ୍ ମାନଙ୍କ ମଧ୍ୟରୁ "ଶ୍ରୀମତୀ ହାଲମ ବଡ଼ ବୋହୂଙ୍କୁ ଅନାଇ କହିଲେ, ଏଁ—ଏ–ଏଁ ତୁମ୍ଭ ମୁଣ୍ଡରେ ଲାଲରଙ୍ଗ ଲଗିଥିବ ଯେତେ ଦିନ ପର୍ଯ୍ୟନ୍ତ ନ ମରିଯିବ ତୁମ୍ଭ ସ୍ୱାମୀ ।" ହିନ୍ଦୁ ସ୍ତ୍ରୀଙ୍କ ପକ୍ଷରେ ସ୍ୱାମୀ ମୃତ୍ୟୁ କଥା ଶୁଣିବା ମର୍ମନ୍ତୁଦ ଓ ଅସହ୍ୟ । କୋପନ ସ୍ୱଭାବ ବଡ଼ବୋହୂ ଶ୍ରୀମତୀ ହାଲମଙ୍କ ଉପର ରାଗ ଫକୀରମୋହନଙ୍କ ଉପରେ ଝାଡ଼ିବାକୁ ଲାଗିଲେ । "ଏ ଡ଼ାଆଣୀ ଦୁଷ୍ଟାଣୀକୁ ଘରକୁ ଡାକିଲ କିଆଁ ? ଏହା ନଷ୍ଟସ୍ୱ ମତ ଟାଏ; ଗୋରୁ ଖାଏ ଘଅନ ମାଇକିନାଟା ମୁଣ୍ଡରେ ଲୁଗା ନାହିଁ, ଦାଣ୍ଡରେ ବୁଲୁଛି—ଏ ଗୁଡ଼ାକର ଠିକ୍ ଠିକଣା କଅଣ ? ଏ ଗୁଡ଼ାକୁ କଣ ଭଲ ଲୋକେ ଦୁଆର ଚଢ଼େଇ ଦିଅନ୍ତି । କଥା ନାହିଁ, ବାର୍ତ୍ତା ନାହିଁ, ଭୁଚ୍ଛାଟାରେ ଗାଳି ଦେଇଗଲା ।" ଫକୀରମୋହନ ଶ୍ରୀମତୀ ହାଲମଙ୍କ କଥାର ପ୍ରକୃତ ମର୍ମ ବଡ଼ବୋହୂଙ୍କୁ ବୁଝାଇ ଦେଲେ । ସେ ଟାଙ୍କ ଦେଇ

ନାହାନ୍ତି, କଲ୍ୟାଣ କରିଗଲେ, ଉପଦେଶ ଦେଲେ, ତୁମେ ସଧବା ଥିବାଯାଏ ମୁଣ୍ଡରେ ସିନ୍ଦୂର ଲଗାଉଥିବ । ସେ ଓଡ଼ିଆ କଥା ଭଲ ଭାବେ ଜାଣି ନାହାନ୍ତି, ତାଙ୍କ କଥାର ଅର୍ଥକୁ ଅନର୍ଥ କରିବା ଉଚିତ ନୁହେଁ ।

ଶ୍ୟାମାନନ୍ଦ ଦେଙ୍କ ସଙ୍ଗରେ ଫକୀରମୋହନଙ୍କ ସାକ୍ଷାତ ଓ କଥୋପକଥନ ଆହୁରି ଅଧିକ ହୃଦୟଗ୍ରାହୀ । ଏକ ଦିଗରେ ରକ୍ଷଣଶୀଳଙ୍କ ବଦ୍ଧ କୁସଂସ୍କାର, ଦ୍ୱେଷଗ୍ରସ୍ତ ଚକ୍ଷୁ ସଙ୍ଗକୁ ପ୍ରଗତିପନ୍ଥୀ ଫକୀରମୋହନଙ୍କ ବିନମ୍ର ଓ ଦୃଢ଼ଚରିତ୍ର ପ୍ରକାଶରେ ଏହା ଅଧିକ ମନୋଜ୍ଞ ଓ ଜୀବନ୍ତ ।

"ପନ୍ଦର କୋଡ଼ିଏ ହାତ ଦୂରରୁ ରାଜା ସାହେବଙ୍କର ମୋ ଉପରେ ଯେପରି ଦୃଷ୍ଟି ପଡ଼ିଛି, ଭୟଙ୍କର ଗର୍ଜନଟାଏ କରି କହିଲେ—ଆହେ ସେନାପତି ! ଭଲ କାର୍ଯ୍ୟଟାଏ କଲ ?

ମୁଁ ହାତ ଯୋଡ଼ି ନମସ୍କାର କରି ଖୁବ୍ ଭକ୍ତି ଭାବରେ ପଚାରିଲି, 'ଆଜ୍ଞା ମୁଁ କଣ କଲି ?'

ରାଜା—ତୁମ୍ଭେ ପରା ଗୋଟାଏ ମାଇନ୍ସି ସ୍କୁଲ ବସାଇଛ ?

ମୁଁ—ଆଜ୍ଞା, ଅଜ୍ଞା !

ରାଜା—ଉଠାଓ—ଉଠାଓ—ଉଠାଓ ।

ମୁଁ—ଆଜ୍ଞା—କାରଣ କଣ ?

ରାଜା—ସବୁ ଟୋକା ଦୁଷ୍ଟଚରିତ୍ରା ହୋଇଯିବେ ।

ମୁଁ—ଆଜ୍ଞା ପାଠ ପଢ଼ିଲେ ସିନା ସଚ୍ଚରିତ୍ରା ହୁଅନ୍ତି !

ରାଜା—ନାହିଁ—ନାହିଁ—ନାହିଁ—ସ୍ତ୍ରୀ ଲୋକଙ୍କୁ ଗୋପନରେ ଚିଠି ଲେଖିବେ ।

ମୁଁ—ଆଜ୍ଞା ! ଭାଗବତ, ରାମାୟଣ ଆଦି ପଢ଼ିବେ ।

ରାଜାସାହେବ ଦକ୍ଷିଣ ହସ୍ତଟି ଧନୁକାର କରି ଭୟଙ୍କର ରୂପେ ମୁଣ୍ଡ ଝୁଙ୍କାଇ କହିଲେ, କେଭେଁ ନା, କେଭେଁ ନା । ଉଠାଓ ସ୍କୁଲ—ଉଠାଓ ସ୍କୁଲ—ଉଠାଓ ।

ମୁଁ ହାତ ଯୋଡ଼ି ଭୀମାନ୍ତ ଭାବରେ ନମସ୍କାର କରି ଆଜ୍ଞା, ଆଜ୍ଞା କହି 'ସ୍ଥାନ ତ୍ୟାଗେନ' ମନ୍ତ୍ର ଅବଲମ୍ବନ କଲି ।"

ବାଲେଶ୍ବରରେ ବାଳିକା ବିଦ୍ୟାଳୟ ସ୍ଥାପନ ସହ ଓଡ଼ିଶାର ନାରୀଶିକ୍ଷାର ବିକାଶ ପ୍ରସଙ୍ଗ କ୍ରମେ ସୂଚିତ ହୋଇପାରେ । ଐତିହାସିକ ପ୍ରାଧାନ୍ୟଯୁକ୍ତ ଏହି ବିଷୟଟିର ତଥ୍ୟ ଏପର୍ଯ୍ୟନ୍ତ ବିଧିବଦ୍ଧଭାବେ ସଙ୍କଳିତ ହୋଇନାହିଁ । ପତ୍ରପତ୍ରିକାର ସାମୟିକ ସୂଚନାରୁ ଜଣାଯାଏ । ମିଶନ ବାଳିକା ବିଦ୍ୟାଳୟକୁ ଛାଡ଼ିଦେଲେ '୧୮୭୨ରେ ବାଲୁବଜାରରେ ଅବିନାଶ ଗୃହଠାକୁରଙ୍କ ଦ୍ୱାରା କଟକ ଗାର୍ଲସ୍କୁଲ ଆରମ୍ଭ ହୋଇଥିଲା । ୧୮୮୧ରେ ଏହି ବିଦ୍ୟାଳୟରେ ମାତ୍ର ପଚିଶ ଜଣ ଛାତ୍ରୀ ପାଠ ପଢୁଥିଲେ । ୧୮୭୯ ବେଳକୁ ଓଡ଼ିଶାରେ ମୋଟ ବାଳିକା ବିଦ୍ୟାଳୟ ସଂଖ୍ୟା ୨୨ ଓ ଛାତ୍ରୀ ସଂଖ୍ୟା ୬୮୩ । (୮) ୧୮୯୭ରେ ଉତ୍କଳ ସାହିତ୍ୟ ପତ୍ରିକା ପ୍ରକାଶିତ ହେଲାବେଳେ ସମ୍ପାଦକ ବିବିଧ ପ୍ରସଙ୍ଗ ପର୍ଯ୍ୟାୟରେ 'ସୁସମ୍ବାଦ' ଶୀର୍ଷକ ସୂଚନା ଦେଇଥିଲେ । କଟକ କଲେଜରେ ଦୁଇଜଣ ଯୁବତୀ ନାମ ଲେଖାଇ-ଥିଲେ; ଜଣେ ଶୈଳବାଳା ହାଜର ଓ ଅନ୍ୟ ଜଣକ ଇଶାବେଲ

(୮) ଉତ୍କଳ ଦର୍ପଣ—୮ । ୨ । ୧୮୭୯ ପୃଷ୍ଠା ୨୦୨ ।

ସାମୁଏଲ । ବିଶ୍ୱନାଥ କରଙ୍କ ଦୃଷ୍ଟିରେ ଏହା ଯଥାର୍ଥରେ ଏକ ନବଯୁଗର ଆରମ୍ଭ । ଏଥିରେ ଯୁଗ ସଂକେତ ନିହିତ । (୯) ଓଡ଼ିଶାର ପ୍ରଥମ ମହିଳା ଗ୍ରାଜୁଏଟ ନିର୍ମଳବାଳା ନାୟକ । ସେ ବି.ଟି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରେଭେନସା ବାଳିକା ବିଦ୍ୟାଳୟର ଶିକ୍ଷୟିତ୍ରୀ ହୋଇଥିଲେ । ଶ୍ରୀମତୀ ରେବା ରାୟ ଓ କୁମାରୀ ଶୈଳବାଳା ଦାସଙ୍କ ଉଦ୍ୟମରେ ନାରୀଶିକ୍ଷାର ଅଗ୍ରଗତି ହୋଇଥିଲା । ବିଶ୍ୱନାଥ କରଙ୍କ ସ୍ତ୍ରୀଶିକ୍ଷା (ଉତ୍କଳପ୍ରଭା ୧ ୮ ସଂଖ୍ୟା), Novice ବା ଜଣେ ନବ୍ୟ ଲେଖକଙ୍କ ସ୍ତ୍ରୀଶିକ୍ଷା (ଉତ୍କଳପ୍ରଭା ୧ / ୪), କୃଷ୍ଣପ୍ରସାଦ ଚୌଧୁରୀଙ୍କ 'ମଦ୍ୟ ପୂଜା ଓ ସ୍ତ୍ରୀଶିକ୍ଷା' (ଉ: ସା: ୧ / ୯) ଓ ସ୍ତ୍ରୀ ଜାତିର ସ୍ୱାଧିକାର (ଉ. ସା: ୨୦ / ୫-୬), ଶ୍ରୀବତ୍ସ ପଣ୍ଡାଙ୍କ 'ଉତ୍କଳ ମହିଳାମାନଙ୍କର ଜନନୀ ଅବସ୍ଥା' (ଉ: ସା: ୨ / ୧୨), ଧୀରେନ୍ଦ୍ର-ନାଥ ଚୌଧୁରୀଙ୍କ 'ସ୍ତ୍ରୀ ଜାତିର ଅଧିକାର (ଉ: ସା: ୫ / ୬-୭), ପାରେଶ୍ୱର ମହାନ୍ତିଙ୍କ 'ଉତ୍କଳରମଣୀ ଓ ସେମାନଙ୍କ ଶିକ୍ଷା' (ଉ: ସା: ୯ / ୭-୮) ପ୍ରବନ୍ଧ ସମୂହ ଓ ରୁଦ୍ରନାରାୟଣ ଭଞ୍ଜଙ୍କ 'ସ୍ତ୍ରୀ ଶିକ୍ଷା ପୁସ୍ତକ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ କଲିକତା ଗେଜେଟ (୨ / ୫ / ୧୯୦୪)ରେ ଓଡ଼ିଶାରେ ନାରୀଶିକ୍ଷା ସମ୍ପର୍କରେ ପ୍ରକାଶିତ ମନ୍ତବ୍ୟ 'ଦୁନିଆର ହାଲଚାଲ'ରେ ବିଶ୍ଳେଷଣ ପୂର୍ବକ ବାଲେଶ୍ୱରରେ ନାରୀଶିକ୍ଷାର ଉଲ୍ଲେଖ୍ୟ ଉନ୍ନତିରେ ସନ୍ତୋଷ ପ୍ରକାଶ କରିଥିଲେ । ଓଡ଼ିଶାର ଉଜ୍ଜ୍ୱଳ ଭବିଷ୍ୟତରେ ସମ୍ଭାବନାରେ ମଧ୍ୟ ତାଙ୍କ ଆଶାବାଦ ପ୍ରକାଶିତ ହୋଇଥିଲା । (ଉ: ସା: ୯/୧୨)

ବିଂଶଶତାବ୍ଦୀର ଆଦ୍ୟପାଦ ବେଳକୁ ନାରୀଶିକ୍ଷାରେ ବାଲେଶ୍ୱରର ଅଗ୍ରଗତି ଅତ୍ୟନ୍ତ ସନ୍ତୋଷଜନକ ଥିଲା । ଅଧିକନ୍ତୁ

---

(୯) ଉତ୍କଳ ସାହିତ୍ୟ—୧/୬ ସଂଖ୍ୟା ।

ବାଲେଶ୍ୱର ଜିଲ୍ଲାରେ ସ୍ତ୍ରୀଶିକ୍ଷାର ଜନପ୍ରିୟତା ଯୋଗୁ ୧୯୦୭ ବେଳକୁ ବାଳକ ବିଦ୍ୟାଳୟରେ ପ୍ରାୟ ୩୭୯୧ ଜଣ ବାଳିକା ପଢୁଥିଲେ । ସ୍ୱତନ୍ତ୍ରଭାବେ ବାଳିକା ବିଦ୍ୟାଳୟରେ ଶିକ୍ଷା ଲାଭ କରୁଥିବା ଛାତ୍ରୀସଂଖ୍ୟା ସହିତ ଏହା ପ୍ରାୟ ସମାନ । ଏ କ୍ଷେତ୍ରରେ ବଙ୍ଗ ପ୍ରଦେଶର ଜିଲ୍ଲାଗୁଡ଼ିକ ମଧ୍ୟରେ ବାଲେଶ୍ୱର ଅଗ୍ରଗଣ୍ୟ ଥିଲା । (୧୦) ୧୯୦୧ ରୁ ୧୯୦୫ ପର୍ଯ୍ୟନ୍ତ ପାଞ୍ଚ ବର୍ଷରେ ଓଡ଼ିଶା ଡିଭିଜନରେ ସାଧାରଣ ଶାସନ ସମ୍ପର୍କୀୟ ରିପୋର୍ଟରେ ସୂଚିତ ହୋଇଥିଲା—ବାଲେଶ୍ୱରରେ ସ୍ତ୍ରୀଶିକ୍ଷାର ଆଶାଜନକ ଅଗ୍ରଗତି ଦେଖି ଗଭର୍ଣ୍ଣମେଣ୍ଟ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରୁଛନ୍ତି । ୧୯୦୧ ପର୍ଯ୍ୟନ୍ତ ଜିଲ୍ଲାରେ ପ୍ରାୟ ୨୦୦୫ ଛାତ୍ରୀ ଶିକ୍ଷା ପାଉଥିଲାବେଳେ ୧୯୦୫ ବେଳକୁ ଦେଢ଼ଗୁଣ ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇ ପ୍ରାୟ ସାଢ଼େ ତିନଗୁଣ ହୋଇଥିଲା ଓ ସଂଖ୍ୟା ହୋଇଥିଲା ୭୦୬୨ । ଫକୀରମୋହନଙ୍କ ଦେହାବସାନର ପ୍ରାୟ ପନ୍ଦରବର୍ଷ ପୂର୍ବରୁ ନାରୀଶିକ୍ଷା ବ୍ୟାପାରରେ ବାଲେଶ୍ୱରର ଏହି ସନ୍ତୋଷଜନକ ଓ ପ୍ରଶଂସନୀୟ ଉନ୍ନତି ତାଙ୍କ ପକ୍ଷରେ ନିଶ୍ଚୟ ପରମ ସନ୍ତୋଷର କାରଣ ହୋଇଥିବ । ଯଥାର୍ଥରେ ନାରୀଶିକ୍ଷା ବ୍ୟାପାରରେ ତାଙ୍କ ପ୍ରାରମ୍ଭିକ ଉଦ୍ୟମର ଏହି ସୁଫଳ ଶିକ୍ଷା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ । ଫକୀରମୋହନଙ୍କ ଜୀବନୀ, ବ୍ୟକ୍ତିତ୍ୱ ଓ କୃତିତ୍ୱର ଏ ପ୍ରସଙ୍ଗ ଏକ ଉଲ୍ଲେଖ୍ୟ ଭୂମିକା ଓ ଅନସ୍ୱୀକାର୍ଯ୍ୟ ପ୍ରାଧାନ୍ୟ ରହିଛି ।



---

(୧୦) District gazetter ! Balasore by L. S. S. O. Malley—published 1907

7

# ଫକୀରମୋହନଙ୍କ ଉପନ୍ୟାସର ନାରୀ

**ଅଧ୍ୟାପକ ଉଙ୍ଗାଧର ନାୟକ ଏମ୍.ଏ, ବି,ଇଡ. ଏମ୍.ଫିଲ୍**

ଯୁଗ ଯୁଗ ଧରି ନାରୀ ଏକ ବସ୍ତୁ । ନାରୀର ରୂପ ବୈଚିତ୍ର୍ୟ, ଗୁଣର ବୈଶିଷ୍ଟ୍ୟ, ସବୁକାଳେ କବି, ଲେଖକ, ଦାର୍ଶନିକ, ସମାଜ ସଚେତକମାନଙ୍କୁ ବିମୁଗ୍ଧବିଭୂତ କରିଛି । ଓଡ଼ିଆ ଗଦ୍ୟ ସାହିତ୍ୟର ଯୁଗସ୍ରଷ୍ଟା ଫକୀରମୋହନ ତାଙ୍କ ଛମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ ଉପନ୍ୟାସ ରଚନା କଲାବେଳେ, ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ସମାଜର ଯେଉଁ ଜୀବ ଗୁଡ଼ିକୁ ଅବହେଳିତ ଓ ଅବାଞ୍ଛିତ ଭାବେ ଦୂରକୁ ଫିଙ୍ଗି ଦେଇଥିଲେ, ସମାଜର ସେହି ବାସ୍ତବ ଚରିତ୍ର ଗୁଡ଼ିକୁ ସାହିତ୍ୟିକ ରୂପ ମଧ୍ୟରେ ନୂତନ ମୂଲ୍ୟବୋଧ ଦେଇ ଛିଡ଼ା କରାଇଛନ୍ତି ଜୀବନ୍ତ ଭାବରେ । ତାଙ୍କ ଉପନ୍ୟାସ ସୃଷ୍ଟି-କଳାର ଗୌରବ ହେଉଛି ତାଙ୍କର ସୃଷ୍ଟ ଚରିତ୍ର ସମୂହ । ଫକୀର-ମୋହନଙ୍କ ଉପନ୍ୟାସରେ ପୁରୁଷ ଅପେକ୍ଷା ନାରୀ ହେଉଛି ବେଶୀ ଆକର୍ଷଣୀୟ ଓ କଳାଗୌରବର ଅଧିକାରୀ । ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ର ତାଙ୍କ ଲେଖାରେ ହୋଇଛି ଅଧିକ ଜୀବନ୍ତ ଓ ମୂର୍ତ୍ତିମନ୍ତ । ଓଡ଼ିଶାର ଜନଜୀବନ ସହିତ ଘନିଷ୍ଠ ଭାବେ ଘାର୍ଦ୍ଧ-ଜନର ସମ୍ପର୍କ, ତାଙ୍କ ଚରିତ୍ର ସୃଷ୍ଟି ସଫଳତାର ଅନ୍ୟତମ କାରଣ । ଧୂଳମାଟି ତେଲଲୁଣ ସଂସାରରୁ ଯେଉଁ ନାରୀ ଚରିତ୍ର ଗୁଡ଼ିକ ଗୋଟାଇ ଆଣି ସାହିତ୍ୟ ରାଜ୍ୟରେ ଆସୀନ କରାଇଛନ୍ତି ସେମାନଙ୍କ ଉପସ୍ଥିତି ଓଡ଼ିଆ ସାହିତ୍ୟରେ ଏକ ନବ ପର୍ଯ୍ୟାୟ ସୃଷ୍ଟି କରିଛି ।

'ଫକୀରମୋହନଙ୍କ ଉପନ୍ୟାସ ଗୁଡ଼ିକରେ ଯେଉଁ ନାରୀ ଗୁଡ଼ିକୁ ଦେଖୁଁ ସେମାନେ କେବଳ ଉପନ୍ୟାସର ବସ୍ତୁ ନ ହୋଇ

ରକ୍ତମାଂସ ବିଶିଷ୍ଟ ନାରୀ ରୂପେ ପ୍ରକାଶମାନ ହୁଅନ୍ତି ।" ଏହା କେବଳ ଫକୀରମୋହନଙ୍କ ବର୍ଣ୍ଣନାର ଚମତ୍କାରିତା ଓ ପରିବେଷଣର ଅପୂର୍ବ କଳାକୁଶଳତା ଯୋଗୁ ସମ୍ଭବ ହୋଇ ପାରିଛି । (୧) କେତେକ ସମାଲୋଚକମାନଙ୍କ ମତରେ—"ଫକୀରମୋହନ ସାହିତ୍ୟର ପ୍ରଧାନ ଆକର୍ଷଣ- କେନ୍ଦ୍ର ନାରୀ ନୁହେଁ ପୁରୁଷ ।" (୨) "ପ୍ରକୃତ ପକ୍ଷେ ଫକୀରମୋହନଙ୍କ ଉପନ୍ୟାସରେ ପୁରୁଷ ଚରିତ୍ର ଗୌଣ ଓ ନାରୀ ଚରିତ୍ର ମୁଖ୍ୟ ।" (୩) "ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ର ଚିତ୍ରଣରେ ଫକୀରମୋହନଙ୍କ ପୁଙ୍ଖାନୁପୁଙ୍ଖ, ବାସ୍ତବନିଷ୍ଠ ବର୍ଣ୍ଣନା—ନୈପୁଣ୍ୟ ଓ ବିଶ୍ଳେଷଣୀ ଶକ୍ତିର ଅଧିକ ପରିଚୟ ଦେଇଛନ୍ତି ।" (୪) ଭିନ୍ନ ଦୃଷ୍ଟିକୋଣରୁ ସମାଲୋଚକମାନଙ୍କ ଏ ମତର ସତ୍ୟତା ରହିଛି । ଫକୀରମୋହନଙ୍କ ଉପନ୍ୟାସରେ ପୁରୁଷ ସଂସାର ନାରୀ ସଂସାରଠାରୁ ଢେର ବେଶୀ । ତାଙ୍କ ଉପନ୍ୟାସ ପୁରୁଷର ଚରିତ୍ରକୃତ ଉପରେ ମୁଖ୍ୟତଃ ପର୍ଯ୍ୟବସିତ ହେଲେ ମଧ୍ୟ ନାରୀ ଚରିତ୍ର ଗୁଡ଼ିକ ତାଙ୍କ ଉପନ୍ୟାସରେ ଉଜ୍ଜଳବର୍ତ୍ତିକା ସଦୃଶ ଦେଖା ଦିଅନ୍ତି । ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ର ଚିତ୍ରଣ ଫକୀରମୋହନଙ୍କ ଉତ୍କୃଷ୍ଟ କଳାକୁଶଳତାର ଅନ୍ୟତମ ସ୍ୱାକ୍ଷର ବହନ କରିଛି । ତାଙ୍କ ଉପନ୍ୟାସରେ ନାରୀ ଏକ ପୁତ୍ତଳିକା ପରି

---

(୧) ଔପନ୍ୟାସିକ ଫକୀରମୋହନ—ପୃ. ୩୩, ୧ମ ସଂସ୍କରଣ—
ଅଧ୍ୟାପକ ଉପେନ୍ଦ୍ର ମିଶ୍ର

(୨) ଯୁଗଦ୍ରଷ୍ଟା ଫକୀରମୋହନ—ପୃ. ୧୪, ୧ମ ସଂସ୍କରଣ—
ସର୍ବେଶ୍ୱର ଦାସ

(୩) ଫକୀରମୋହନ ସମୀକ୍ଷା—ପୃ. ୩୦, ସଂଶୋଧିତ ସଂସ୍କରଣ—
ସୁରେନ୍ଦ୍ର ମହାନ୍ତି

(୪) ସାହିତ୍ୟ ସାଧକ ଫକୀରମୋହନ—ପୃ. ୨୩୦, ୧ମ ସଂସ୍କରଣ—
ଅଧ୍ୟାପକ ଚିନ୍ତାମଣି ଦାଶ

ଦେଖା ଦେଇନେ ବରଂ ଅଧିକ ସହିଷ୍ଣୁ ଓ ଗତିଶୀଳ ହୋଇ ଦେଖା ଦେଇଛି ।

'ଫକୀରମୋହନଙ୍କ ନାରୀ ସୃଷ୍ଟି ଏକ ଅପୂର୍ବ ଅଭିନବ ସୃଷ୍ଟି, ଏକାବେଳେକେ ସାର୍ଥକ ଓ ସମ୍ପୂର୍ଣ୍ଣ ।' (୫) ରାଧାନାଥଙ୍କ ନାରୀ ଯେତେବେଳେ ବଙ୍କାଶୟ ଗୁଣରେ ଦୋଷଯୁକ୍ତ । ସେତେବେଳେ ଫକୀରମୋହନଙ୍କ ଉପନ୍ୟାସର ନାରୀ ସମ୍ପୂର୍ଣ୍ଣ ଉତ୍କଳୀୟ । ଉତ୍କଳର ଧୂଳି ମାଟିରୁ ଡାକଆଣି, ତା ମଥାରେ ଶ୍ରଦ୍ଧା ଓ ପ୍ରୀତିର ବିଜୟଟୀକା ଆଙ୍କି ଦେଲେ । ଫକୀରମୋହନଙ୍କ ଉପନ୍ୟାସରେ ନାରୀ ଓ ପୁରୁଷ ଉଭୟ ନିଜ ନିଜର ସ୍ଥିତି ପ୍ରତି ସଚେତନ । ତାଙ୍କ ପୁରୁଷ ଚରିତ୍ରର ବିକାଶ ମୂଳରେ ନାରୀ ଚରିତ୍ର ମୁଖ୍ୟ ଭୂମିକା ଗ୍ରହଣ କରିଛି । ତାଙ୍କ ଉପନ୍ୟାସର ପୁରୁଷ ଚରିତ୍ର ନାରୀ ଚରିତ୍ର ବିନା ଅସମ୍ପୂର୍ଣ୍ଣ ଓ ମ୍ଳାନ ।

ଫକୀରମୋହନଙ୍କ ନାରୀ ସୃଷ୍ଟି ବୈଚିତ୍ର୍ୟମୟ । ତାଙ୍କ ସୃଷ୍ଟ ନାରୀ ଚରିତ୍ର ଗୁଡ଼ିକ ମଧ୍ୟରେ ଦେବୀ ଓ ଦାନବୀର ସଂଘର୍ଷ ଘଟିଛି । ଦାନବୀ ଚରିତ୍ରର ଜୟ ହୋଇ ନ ଥିଲେ ମଧ୍ୟ ଦେବୀ ଓ ସାଧାରଣ ନାରୀ ଚରିତ୍ର ଗୁଡ଼ିକୁ ଦାନବୀ ଚରିତ୍ର ଖୁବ୍ ପୀଡ଼ା ଦେଇଛି । ଫକୀରମୋହନ ତାଙ୍କ ଉପନ୍ୟାସର ନାରୀ ଚରିତ୍ର ମଧ୍ୟରେ ଯେତିକି ଦାନବୀ ଚରିତ୍ରର ଚରମତା ଦେଖାଇଛନ୍ତି ଅନ୍ୟ ପକ୍ଷରେ ଦେବୀ ଚରିତ୍ରର ମହନୀୟତା ସେତିକି ଦେଖାଇଛନ୍ତି । ଏହିପରି ବିରୋଧ ଚରିତ୍ର ସୃଷ୍ଟି କରିବା ଫକୀରମୋହନଙ୍କ ଏକ କଳାଗତ କୌଶଳ । 'ବାଇରନ୍‌ଙ୍କ ପରି ଫକୀରମୋହନ ତାଙ୍କ ଉପନ୍ୟାସରେ ଦେଖାଇ

---

(୫) ଯୁଗସ୍ରଷ୍ଟା ଫକୀରମୋହନ—ପୃ. ୧୬—ସର୍ବେଶ୍ୱର ଦାସ ।

ନାହାନ୍ତି ଯେ ପ୍ରେମ ପାଇଁ କେବଳ ନାରୀର ସୃଷ୍ଟି । ତାଙ୍କ ନାରୀ ଚରିତ୍ର ଗୁଡ଼ିକ ନାନା ସଦ୍‌ଗୁଣର ଆଧାର ଏପରିକି ଅନେକ ଗୁଣରେ ସେ ପୁରୁଷଠାରୁ ଶ୍ରେଷ୍ଠ ।' (୭) ବଙ୍କିମ ଚନ୍ଦ୍ରଙ୍କ ସୃଷ୍ଟ ନାରୀଠାରୁ ଫକୀରମୋହନଙ୍କ ନାରୀ ଚରିତ୍ର ଅଧିକ ବାସ୍ତବ ଓ ଜୀବନ୍ତ ମଧ୍ୟ ।

'ନାରୀ ଚରିତ୍ର ଚିତ୍ରଣରେ ଫକୀରମୋହନ ଚରମ ଆଦର୍ଶବାଦୀ । (୭) 'ମାମୁ' ଉପନ୍ୟାସର ସରସ୍ୱତୀ ଦେଇ, ବୃନ୍ଦମଣି, ସାହୁଆଣୀ, ଛ'ମାଣ ଆଠଗୁଣ୍ଠର ସାନ୍ତାଣୀ, ଲଛମା ଉପନ୍ୟାସର ରାଇବଣିଆ ଦୁର୍ଗର ଅଧିଶ୍ୱରୀ ବୈଷ୍ଣଗଞ୍ଜନ ମାନଧା ତାଙ୍କ ସ୍ତ୍ରୀ ମନ୍ଦାଦେଇ, ପ୍ରାୟଶ୍ଚିତ୍ତ ଉପନ୍ୟାସର ହରପ୍ରିୟା, ଇନ୍ଦୁମତୀ—ଏମାନେ ଫକୀର-ମୋହନଙ୍କ ସୃଷ୍ଟିରେ ଚରମ ଆଦର୍ଶର ଜୀବନ୍ତ ମୂର୍ତ୍ତିମନ୍ତ ଦେବୀ । ଏମାନେ ଫକୀରମୋହନଙ୍କ ଉପନ୍ୟାସର ନାରୀସୃଷ୍ଟିର ପ୍ରଥମ ପର୍ଯ୍ୟାୟଭୁକ୍ତ ।

ସରସ୍ୱତୀ ଦେଇ ମେନକା ଦେଇଙ୍କର ଝୁଡ଼ୁତା ଝିଅ ଭଉଣୀ । ସ୍ୱାମୀ, ପୁତ୍ର ସ୍ନେହ ବଞ୍ଚିତା ସରସ୍ୱତୀ ଦେଇ ଦାଶରଥିଙ୍କ ପରିବାରରେ ଆଶ୍ରିତା । ହାସ୍ୟମୟ ଦାଶରଥିଙ୍କ ପରିବାରର ସେ କେନ୍ଦ୍ର ବିନ୍ଦୁ । ରୋଗଣୀ ମେନକାଦେଇ ପୁତ୍ର କନ୍ୟା ଜନ୍ମ କରନ୍ତି, ସରସ୍ୱତୀ ଦେଇ ଧାଈମା ଭାବରେ ପୁତ୍ର କନ୍ୟାଙ୍କୁ ମଣିଷ କରିଛନ୍ତି । ପର ପୁଅ ଝିଅଙ୍କୁ ନିଜର ପୁଅ ଝିଅଠାରୁ ଅଧିକ ସ୍ନେହ କରିବାରେ ତାଙ୍କର ଚରମ ଆତ୍ମତୃପ୍ତି । କଲ୍ୟାଣମୟୀ ନାରୀ ମୂର୍ତ୍ତି ପବିତ୍ର, ଶାଶ୍ୱତ, ଅସା-ଧାରଣ ଏବଂ ନାରୀଟି । ମାଟିର ଘରସଂସାରକୁ ସ୍ୱର୍ଗରେ ପରିଣତ

---

(୭) ଔପନ୍ୟାସିକ ଫକୀରମୋହନ—ପୃ. ୪୭—ଅଧ୍ୟାପକ ଉପେନ୍ଦ୍ର ମିଶ୍ର ।
(୭) ଯୁଗସ୍ରଷ୍ଟା ଫକୀରମୋହନ— ପୃ. ୧୮—ସର୍ବେଶ୍ୱର ଦାସ ।

କରିବା ପାଇଁ ସତେ ଯେପରି ଏହାଙ୍କ ସୃଷ୍ଟି । 'ଲୁହାପାଇଁ ପାରେ— ସରସ୍ୱତୀ ଦେବୀ ଫେରେନ୍ସଇର ଅଭିଜାତ ରୂପ । "ଆଦ୍ୟ ଆଷାଢ଼ର କରୁଣାମୟୀ ବାରିଧାରା ।" (୮) ଫକୀରମୋହନଙ୍କ ଭାଷାରେ— "ସରସ୍ୱତୀ ଦେଇ ବୁଦ୍ଧିମତୀ, ସଂସାରର ଅନେକ କଥା ବୁଝନ୍ତି, ରୂପ ଦେଖି, ଲୋକର ଦୁଇ ପଦରଟା କଥା ଶୁଣି ଲୋକ ଚିହ୍ନିବାର ଶକ୍ତି ତାଙ୍କର ଖୁବ୍ ଅଛି । ଏତେ ବଡ଼ ଜମିଦାର, ସେହିପରି ସଉଳ— ହେଲେ କ'ଣ ତାଙ୍କୁ କେହି ଠକି ପାରିବ ନାହିଁ ।" (୯) ନାଜର ନଟବର ଦାସର କୂଟକପଟତା ସେ ବେଶ୍ ବୁଝି ପାରିଥିଲେ ମଧ୍ୟ ପରିସ୍ଥିତିର ତାଡ଼ନାରେ ତାଙ୍କ ବୁଦ୍ଧି ଅକାମୀ ହୋଇ ପଡ଼ିଲା । ଫଳରେ ନାଜର ତାର ସୁଯୋଗ ନେଇଛନ୍ତି । ଯାହା ହେଉ ପଛେ ବାପଦେବ ଆପଦେବ ଧର୍ମ ଉପରେ ତାଙ୍କର ଗଭୀର ବିଶ୍ୱାସ ଥାଏ । ଦାଶରଥିଙ୍କ ଘରୁ ଚନ୍ଦ୍ରମଣିଙ୍କ ସାଙ୍ଗରେ ଉତ୍ତରାପୁଙ୍କ ଘରକୁ ଆସିବା ପରଠାରୁ ତାଙ୍କ ଚରିତ୍ରର ମହାନତା ବେଶୀ ଦେଖିବାକୁ ମିଳେ । ଉତ୍ତରାପୁଙ୍କ ମୃତ୍ୟୁପରେ ଚନ୍ଦ୍ରମଣିର ବନ୍ଧୁତାରେ, ବିପଦବେଳେ ଧୈର୍ଯ୍ୟର ସହିତ ସେ ଯେଉଁ କାର୍ଯ୍ୟ ସମ୍ପାଦନ କରିଛନ୍ତି, ସେଥିପାଇଁ ଫକୀରମୋହନଙ୍କ ନାରୀ ଜଗତର ସେ ରାଣୀ । 'ସେ ପରସେବା ଅବା ରୋଗୀ ଶୁଶ୍ରୂଷାକୁ ଜୀବନର କର୍ତ୍ତବ୍ୟ ବୋଲି ଜ୍ଞାନ କରନ୍ତି, ମଧ୍ୟ ସେଥିସକାଶେ ଆନନ୍ଦିତା । ତାଙ୍କର ନଜର ବୋଲି କିଛି ଗୋଟାଏ ନ ଥିଲା । ପରସୁଖଦୁଃଖ ତାଙ୍କର ନିଜସ୍ୱ । × × × ବାସ୍ତବରେ ସେ ସଦା ପ୍ରଫୁଲ୍ଲମୟୀ ଥିଲେ । ଦୁଃଖ ବା ଦୈନ୍ୟର

(୮) କଥା ଶିଳ୍ପୀ ସେନାପତିଙ୍କ ଦୃଷ୍ଟି ଓ ଦୃଷ୍ଟିକୋଣ—ପୃ. ୨୮ ପ୍ରଥମ ସଂସ୍କରଣ—ଅଧ୍ୟାପକ ବାଳକୃଷ୍ଣ ଶତପଥୀ ।

(୯) 'ମାମୁଁ'—ଫକୀରମୋହନ ସେନାପତି—ପୃ. ୧୦୩—୨ୟ ସଂସ୍କରଣ ।

ଶକ୍ତି ତାଙ୍କ ମୃତ୍ୟୁରେ ଲକ୍ଷିତ ହୁଏ ନାହିଁ । (୧୦) ସରସ୍ୱତୀ ଦେଈ ଗୃହମଣି ଉପରେ ତାଙ୍କର ମାତୃତ୍ୱର ଅନାବିଳ ସ୍ନେହର ଫଳଗୁ ଅଜାଡ଼ି ଦେଇଛନ୍ତି । 'ହୃଦୟ ତାଙ୍କର ନିର୍ମଳ, ଅନ୍ତଃ ସ୍ଫଟିକ ସ୍ୱଚ୍ଛ ଓ ପ୍ରେମ ଭରା ଭରା । X X ଆଜିକାଲି ଜଗତରେ କୁଟ କାଠିନ୍ୟ ଲୋଭ କାଳିମାର ମଳିନ ସ୍ପର୍ଶ ତାଙ୍କଠାରେ ବାଜନ । X X X । ତାଙ୍କର ଗଭୀର ଈଶ୍ୱର ବିଶ୍ୱାସ, କଠୋର କର୍ତ୍ତବ୍ୟ ଜ୍ଞାନ, ବିପଦରେ ଅସୀମ ସାହାସ ଓ ଚିତ୍ତର ଦୃଢ଼ତା ଯୋଗୁ ପରିବାର ମଙ୍ଗଳମୟ ହୋଇଛି ।' (୧୧) ଏହି ନାରୀଟିର ସମାନ୍ତରାଳ ଚରିତ୍ର ଫକୀରମୋହନଙ୍କ ସୃଷ୍ଟିରେ ବିରଳ । 'ସରସ୍ୱତୀ ଦେଈ ଆମ ସମାଜ ଜୀବନରେ କଲ୍ୟାଣ, ପବିତ୍ରତା, ସେବା ପରାୟଣତା ଓ ମହତ୍ତ୍ୱର ପ୍ରତୀକ । ଜୀବନର ସାର୍ଥକତା ଲୁଣ୍ଠନରେ ନାହିଁ—ଅଛି ମେଘମାଳା ପରି ବିତରଣ କରିବାରେ । ସରସ୍ୱତୀ ଦେଈଙ୍କ ଚରିତ୍ର ମାଧ୍ୟମରେ ଫକୀରମୋହନ ପ୍ରାକୃତିକ ଘଟଣାର ଏହି ସତ୍ୟକୁହିଁ କଳାତ୍ମକରୂପ ଦେଇଛନ୍ତି ।'(୧୨)

ଗୃହମଣି ଚରିତ୍ର ସୃଷ୍ଟିରେ ଫକୀରମୋହନଙ୍କ ନୂତନତା ବା ସ୍ୱତନ୍ତ୍ର ବୈଶିଷ୍ଟ୍ୟ କିଛି ନାହିଁ । ଅଳିଅଳୀ ଦୁଲାଳୀ ଏହି ଗୃହମଣି । ଦୁଃଖ ଦୈନ୍ୟତାକୁ ସ୍ପର୍ଶ କରି ନାହିଁ । ପ୍ରାଚୁର୍ଯ୍ୟର ସେ ଥିଲେ ଅଧି-କାରିଣୀ । ଭାଗ୍ୟବାଦୀ ଫକୀରମୋହନଙ୍କ ହାତରେ ସେ ବୈଧବ୍ୟ ଯନ୍ତ୍ରଣା ଭୋଗ କରିଛି । ସ୍ୱାମୀ ପ୍ରେମରେ ନିଜକୁ ସମ୍ପୂର୍ଣ୍ଣ ହଜାଇ

(୧୦) ମାମୁ—ପୃ. ୧୧୭, ଫକୀରମୋହନ ।

(୧୧) ଯୁଗଦ୍ରଷ୍ଟା ଫକୀରମୋହନ— ପୃ. ୬୧, ସୁରେନ୍ଦ୍ର ଦାସ ।

(୧୨) ଫକୀରମୋହନଙ୍କ କୃତିରେ ପ୍ରତିଫଳିତ ସମକାଳୀନ ସମାଜ ଚିତ୍ର ଏକ ଅଧ୍ୟୟନ—(Ph. D. thesis)—ପୃ. ୩୧୭, ଡଃ. ଅସିତ କବି ।

ଦେଇ ଧନ୍ୟା ମଣୁଥିଲେ । ସ୍ୱାମୀ ପ୍ରେମର ଅମନ୍ଦ ମନ୍ଦାକିନୀ ତାଙ୍କ ହୃଦୟରେ ସଦା ପ୍ରବାହିତ ହେଉଥିଲା ।

'ତାଙ୍କ ହୃଦୟର ପ୍ରତ୍ୟେକ ତନ୍ତ୍ରୀ ସ୍ୱାମୀ ନାମରେ ଝଙ୍କାରିତ ହୋଇ ଉଠିଥିଲା । ସ୍ୱାମୀ ଥିଲେ ତାଙ୍କ ଜୀବନର ସ୍ପର୍ଶମଣି । ସେଥିରେ ସ୍ୱାମୀଙ୍କର ନୟନାନନ୍ଦ ଦାୟିନୀ ପ୍ରେମ ପ୍ରତିମା ।" (୧୩) ବୈଧବ୍ୟ ଉପସ୍ଥିତିରେ ତାଙ୍କର ସମସ୍ତ ସୁଖ ସରାଗ ଶୁଖି ଯାଇଛି । ସେତେବେଳେ ସେ ସତୀ, ତପସ୍ୱିନୀର କଠୋର ବ୍ରତଗ୍ରହଣୀ ହୋଇ ହିନ୍ଦୁ ନାରୀର ମହତ୍ତ୍ୱ ପ୍ରଦର୍ଶନ କରିଛନ୍ତି ।

ଫକୀରମୋହନଙ୍କ ଆଦର୍ଶର ଆଉ ଗୋଟିଏ ପ୍ରତୀକ ହେଉଛନ୍ତି 'ମାମୁଁ' ଉପନ୍ୟାସର ସାଧୁ ସାହୁଙ୍କ ସ୍ତ୍ରୀ । ଏହା ଗୋଟିଏ ଗୌଣ ଚରିତ୍ର ଓ ଉପନ୍ୟାସର ସ୍ୱଳ୍ପ ସୀମିତ ପରିବେଶରେ ଏହାଙ୍କ ଉପସ୍ଥିତି ହେଲେ ମଧ୍ୟ ଚରିତ୍ର ଚିତ୍ରଣରେ ସେ ପ୍ରଥମ ପର୍ଯ୍ୟାୟଭୁକ୍ତ । ସମାଜ ଆଗରେ ସେ ଜଣେ ଆଦର୍ଶ ନାରୀ । ସାହୁଆଣୀଙ୍କ ଅମାପ ଅପତ୍ୟସ୍ନେହ ଥିଲା । ସାହୁଆଣୀ ଗାଁ ଯାକର ସମସ୍ତଙ୍କର ପ୍ରିୟ । "ସମସ୍ତେ ତାଙ୍କୁ ସାହୁଆଣୀ ମା' ବୋଲି ଡାକନ୍ତି । ସେ ତିକ୍ତ ସେ ଗାଁ ଯାକ ଲୋକଙ୍କୁ ପୁଅ ଝିଅ ପରି ମଣନ୍ତି । କେହି ବାଧିକ ପଡ଼ିଲେ ତା ପାଖକୁ ଛ'ଅର ଧାଇଁ ଯାଉଥିବେ । ଗାଁରେ କିଏ ଖାଇଲା ନ ଖାଇଲା ତନଖି କରନ୍ତି । ଗାଁରେ କାହା ବାହା ପୁଆଣିରେ ଥିଲା ନ ଥିଲା ଚଳାଇ ନଅନ୍ତି । ସାହୁଙ୍କ ଦୁଆରୁ ଅତିଥି ବାହୁଡେ ନାହିଁ ।" (୧୪) ଫକୀରମୋହନ ସାହୁଆଣୀଙ୍କ ଦେବୀ ପ୍ରତିମା ପରି ଚିତ୍ରଣ

(୧୩) ଯୁଗସ୍ରଷ୍ଟା ଫକୀରମୋହନ—ପୃ. ୩୧, ସର୍ବେଶ୍ୱର ଦାସ ।
(୧୪) ମାମୁଁ—ପୃ. ୧୩୨, ଫକୀରମୋହନ ।

କରିଛନ୍ତି । ସାହୁଆଣୀଙ୍କ ଯେପରି ଅପତ୍ୟ ସ୍ନେହ ସେହିପରି ସ୍ୱାମୀ ପ୍ରେମର ଅଧିକାରିଣୀ । ଅତୁଟ ସ୍ୱାମୀଭକ୍ତି ତାଙ୍କର । 'ସକାଳୁ ଉଠି ମୁହଁ ଧୋଇବା ପାଣି ଲୋଟାଏ ଥୋଇ ଦେବାଠୁ ପାଲଟା ଲୁଗାଖଣ୍ଡ କାଢିବା ଯାଏ ସ୍ୱାମୀର ସମସ୍ତ କାର୍ଯ୍ୟ ଶ୍ରୀମତୀ ଆପେ କରିବେ । × × × । ସ୍ୱାମୀ ଭୋଜନ କରି ଉଠିଗଲେ ଯେତିକ ପ୍ରସାଦ ଗୁଡ଼ି-ଦେବେ ସେତିକ ସେବା । ସଞ୍ଜଠାରୁ ରାତି ଛ'ଘଡ଼ି ଯାଏ ସ୍ୱାମୀ ଗୋଡ଼ରେ ତେଲ ମର୍ଦ୍ଦନ କରୁଥିବେ । ସ୍ୱାମୀର ଉଚ୍ଛିଷ୍ଟ ବିନା କୌଣସି ପଦାର୍ଥ ହେଉ ପଛକେ ସାହୁଆଣୀ ଛୁଇଁବେ ନାହିଁ ।" (୧୫) ସାହୁଆଣୀଙ୍କ ଆଉ ଗୋଟିଏ ଗୁଣ ଅଛି—ସାହୁଙ୍କ ସହିତ କଳି କରିବା । ସାହୁ ନାମ ଜପ କରୁଥିବା ବେଳେ ଏପରି କଡ଼ରେ ହୋଇ ପଡନ୍ତି ଯେ ଖାଇବା ଶୋଇବା ବେଳ ତାଙ୍କୁ ଜଣା ପଡ଼େ ନାହିଁ । ସାହୁଆଣୀଙ୍କ କଳି ଏଇଥିପାଇଁ । କୁହାଯାଇ ପାରେ ଛ'ମାଣ ଆଠଗୁଣ୍ଠର ସାନ୍ତାଣୀଙ୍କର ଏକ ସଂସ୍କାରିତ ରୂପ ହେଉଛନ୍ତି ଏହି ସାହୁଆଣୀ । ସଂସ୍କାରପ୍ରେମୀ ଫକୀରମୋହନ ଛ'ମାଣ ଆଠଗୁଣ୍ଠରେ ସାନ୍ତାଣୀଙ୍କୁ ମଙ୍ଗରାଜଙ୍କ ଦ୍ୱାରା ହେୟ କରିବା ବେଳେ ମାମୁଁରେ ସାହୁଆଣୀ ସାଧୁ ସାହୁଙ୍କୁ ନିଜ ନିୟନ୍ତ୍ରଣରୁ ବାହାରକୁ ଛାଡ଼ି ନାହାନ୍ତି । ସାହୁଆଣୀ ତ୍ୟାଗର କରୁଣାମୟୀ ନାରୀ । ସେବା ଧର୍ମର ଅବତାର ।

'ସାନ୍ତାଣୀ ଚରିତ୍ର ଫକୀରମୋହନ ସାହିତ୍ୟର ସର୍ବଶ୍ରେଷ୍ଠ ଅବଦାନ । ସତୀ, ସ୍ୱାର୍ଥୀ ରମଣୀର ଅନ୍ତର୍ଦହନ ଏବଂ ନିର୍ମମ ଆତ୍ମ-ଦାନର ଏପରି କରୁଣ ମର୍ମସ୍ପର୍ଶୀ ଚିତ୍ର ସମଗ୍ର ଓଡ଼ିଆ ସାହିତ୍ୟରେ ଆଉ କେଉଁଠି ନାହିଁ । ବିଧି ସୃଷ୍ଟିର ସମସ୍ତ ସ୍ୱଚ୍ଛତା, ଶୁଭ୍ରତା,

(୧୫) ଏଜେନ—ପୃ. ୧୩୩ ।

କମନୀୟତା ଓ କାରୁଣ୍ୟ ଦେଇ ଗଢ଼ା ହୋଇଛି ଏହି ଅପାର ରହସ୍ୟମୟ ନାରୀର ଅନ୍ତର । ସାନ୍ତାଣୀ ପତିପରାୟଣା, ପତି-ବତ୍ସଳା, ପରଦୁଃଖ କାତରା, ଦରିଦ୍ରର ଶୁଶ୍ରୂଷାକାରିଣୀ ।' (୧୭) ସ୍ୱାମୀ ସ୍ନେହ, ପୁତ୍ର ତଥା ପୁତ୍ରବଧୂମାନଙ୍କ ଭକ୍ତି, ସେବାରୁ ବଞ୍ଚିତା ଏହି ମହୀୟସୀ ନାରୀଟି ଏଠାରେ ସମଗ୍ର ଓଡ଼ିଆ ସାହିତ୍ୟରେ ସମ୍ବେଦନା ଓ ସହାନୁଭୂତି ଅର୍ଜନ କରିପାରେ । ହିନ୍ଦୁ ନାରୀର ଚରମ ପରାକାଷ୍ଠାର ଏକ ସଜ୍ଜଳ ରୂପ ହେଉଛି ଏହି ସାନ୍ତାଣୀ । ନରପିଶାଚ, ପରସ୍ୱାପହରଣକାରୀ, ଧନଲୋଭୀ ମଙ୍ଗରାଜଙ୍କଠାରୁ ଏହି ମହୀୟସୀ ନାରୀଟି ଗୁଡ଼ାଏ ଦୁଃଖ, ଆତ୍ମଦହନ ଛଡ଼ା ଆଉ କିଛି ପାଇନ । ସେଥିପାଇଁ ତାଙ୍କର ଦୁଃଖ ନାହିଁ । ସେ ବୁଝିଥିଲେ ପତି ସେବା ନାରୀର ଶ୍ରେଷ୍ଠ ଧର୍ମ । ସେ ସହଧର୍ମିଣୀ । କାଳକୂଟିମା ଚମ୍ପାର ପ୍ରରୋଚନାରେ ଯେତେବେଳେ ସ୍ୱାମୀ ତାଙ୍କ ଅଧର୍ମାଚରଣରେ ଲିପ୍ତ ସେତେବେଳେ ସେ ଲାଞ୍ଛିତା, ଅପମାନିତା ଓ ପ୍ରତ୍ୟାଖ୍ୟାତା ହେଲେ ମଧ୍ୟ ସ୍ୱାମୀଙ୍କୁ ସତ୍‌ପଥକୁ ଆଣିବାକୁ ଆପ୍ରାଣ ଚେଷ୍ଟା କରିଛନ୍ତି । ଚାରିହିଁ ମାଣ ଆଠଗୁଣ୍ଠ (?) ଭଗିଆ ସାରିଆର ଗାଈ ଫେରାଇ ଦେବାକୁ ସେ ମଙ୍ଗରାଜଙ୍କୁ ଅନୁରୋଧ କରିଛନ୍ତି । ସାରିଆର ଦୟନୀୟ ଅବସ୍ଥା ସାନ୍ତାଣୀଙ୍କ ମନକୁ ବିଚଳିତ କରିଛି । ସେବା, ଦୟା, ଧର୍ମର ଏକ ମୂର୍ତ୍ତିମନ୍ତ ଦେବୀ ଥିଲେ ସାନ୍ତାଣୀ । ଗାଁରେ ଯେ କୌଣସି ଲୋକ ବିପଦରେ ପଡ଼ିଲେ ଅଯାଚିତ ଭାବରେ ସେମାନଙ୍କୁ ସ୍ୱାମୀ ଓ ପୁତ୍ରଙ୍କ ଅଜ୍ଞାତରେ ସାହାଯ୍ୟ କରୁଥିଲେ । 'କାହାର ସଙ୍ଗରେ କଳି ନାହିଁ କିମ୍ବା କାହାର ସଙ୍ଗରେ ଭାବ ନାହିଁ । କାହା ପାଖରେ ବସି ଦୁଃଖ-ସୁଖ ଦୁଇଟା କଥା କହିବାର କେହି ଦେଖି ନାହିଁ । କେବଳ ଉଆସ ମଧ୍ୟରେ କାହାରି ବେମାର ହେଲେ ଦିନ ନାହିଁ, ରାତି ନାହିଁ

---

୧୭) ଯୁଗସ୍ରଷ୍ଟା ଫକୀରମୋହନ—ପୃ. ୩୨, ସର୍ବେଶ୍ୱର ଦାସ ।

ଜଗି ବସି ସେବା କରନ୍ତି । ବେମାର ସମୟରେ ପୋଇଲି ହେଉ ବା ବୋହୂ ହେଉ, ନାହିଁ କରୁ କରୁ ଗୋଡରେ ହାତରେ ହାତ ବୁଲାଇବେ । ବାହାରେ ହେଉ ବା ଘରେ ହେଉ କେହି ଉପାସ ଥିଲେ ତାକୁ ନ ଖୁଆଇ ଜଳ ଛୁଅନ୍ତି ନାହିଁ । ଗାଁର ଦରିଦ୍ର ବା ଅନାଥା ବିଧବାମାନଙ୍କର ସର୍ବଦା ଖବର ନିଅନ୍ତି । କାହାରି ଘରେ ଖାଇବାକୁ ନ ଥିବାର ଶୁଣିଲେ ସାଆନ୍ତଙ୍କୁ ଲୁଚାଇ, ପୁଅ ବୋହୂଙ୍କୁ ଲୁଚାଇ ଚାଉଳ ମାଣେ, ବିରିଜାଇ ମୁଠାଏ, ଲୁଣ ବକଟେ, ତେଲ ଟିକିଏ, କଖାରୁ ଖଣ୍ଡେ, ଭେଣ୍ଡି କନ୍ଦି ପୁଂଖାଏ ଯାହାର ଯାହା ଦରକାର ପଠାଇ ଦିଅନ୍ତି । ଗାଁର କାହାରି ବୋହୂ ଝିଅ ଦେହକୁ ପୋଇଲି ପଠାଇ ତନଖି କରନ୍ତି । ଦେଉନ୍ତୁ ନ ଦେଉନ୍ତୁ, ଗରିବ ଦୁଃଖୀମାନଙ୍କର ତାଙ୍କଠାରେ ଗୋଟାଏ ବଡ଼ ଆଶା ଭରସା ଥାଏ । ଅନେକ ପରଜାଏ ଖାତକ, ଅନେକ ଦରିଦ୍ର ପ୍ରଜା ସାନ୍ତାଣୀଙ୍କ ଯତ୍ନରେ ମଙ୍ଗରାଜଙ୍କ ହାତରୁ ମୁକ୍ତି ପାଇଥିବାର ଶୁଣାଯାଏ ।"(୧୭)

ସାନ୍ତାଣୀଙ୍କ ବୃନ୍ଦାବତୀ ଚଉଁରା ସହିତ ବହୁତ ସଂପର୍କ ଥାଏ । ହିନ୍ଦୁ ନାରୀର ପରମ ମୁକ୍ତି ପ୍ରଦାୟିନୀ, ସନ୍ତୋଷ ଦାୟିନୀ ଏହି ବୃନ୍ଦା-ବତୀ ଦେବୀ । ସାନ୍ତାଣୀଙ୍କ ଅଚଳାଭକ୍ତି ଏହି ବୃନ୍ଦାବତୀ ଚଉଁରା ପାଖରେ । ଧନ୍ୟା, ସାଧ୍ୱୀ, ମହୀୟସୀ ନାରୀ-ସାନ୍ତାଣୀଙ୍କ ପକ୍ଷରେ ସ୍ୱାମୀ ସମ୍ମୁଖରେ ଚଂପାର ଅବଜ୍ଞାସୂଚକ 'ହୁଁ' ମୃତ୍ୟୁର ଶେଷ କାରଣ ହେଲା । ସ୍ୱାର୍ଥପର, ନରପିଶାଚ, ଧନଲୋଭୀ ମଙ୍ଗରାଜ ପାଖରେ ଦେବୀପ୍ରତିମ ମହୀୟସୀ ନାରୀ-ସାନ୍ତାଣୀଙ୍କର ମହତ୍ତ୍ୱପୂର୍ଣ୍ଣ ଗୁଣ ଅର୍ଥଶୂନ୍ୟ ହୋଇ ପଡ଼ିଲା । ସାନ୍ତାଣୀ ମଙ୍ଗରାଜ, ଚଂପା ପାଖରେ ହେୟ, ଅବାଞ୍ଛିତ ଓ ଅବଜ୍ଞାର ପାତ୍ର ହେଲେ ମଧ୍ୟ ଓଡ଼ିଆ ପାଠକ ପାଖରୁ

(୧୭) ଛ'ମାଣ ଆଠଗୁଣ୍ଠ—ପୃ. ୬୯, ଫକୀରମୋହନ—୫ମ ନାଳନ୍ଦା ସଂସ୍କରଣ ।

ସବୁଠାରୁ ବେଶି ସ୍ନେହ ସହାନୁଭୂତି ପାଇପାରିଛନ୍ତି । ସୃଷ୍ଟିକର୍ତ୍ତା ଭଗବାନ ଯେପରି ପଙ୍କ ମଧ୍ୟରେ ପଙ୍କଜ ସୃଷ୍ଟି କରି ତାଙ୍କ ସୃଷ୍ଟି ବୈଶିଷ୍ଟ୍ୟ ପ୍ରଦର୍ଶନ କରିଥାନ୍ତି, ସେହିପରି ଫକୀର-ମୋହନ ପାପ, ପଙ୍କିଳ ପରିବେଶରୁ ଗୋଟିଏ ଗୋଟିଏ ପଙ୍କଜ ସଦୃଶ ନାରୀ—ସରସ୍ୱତୀଦେଈ, ସାଧୁଆଣୀ, ସାନ୍ତାଣୀ, ହରିପ୍ରିୟା, ମହାଦେଈ, ଇନ୍ଦ୍ରମଣି ସୃଷ୍ଟି କରି ତାଙ୍କ କଳାନୈପୁଣ୍ୟତାର ଚରମ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଚମ୍ପା, ମଙ୍ଗରାଜପରି ଅର୍ଥଲୋଭୀ, ପାପୀଚରିତ୍ର ସୃଷ୍ଟି ମୂଳରେ ଫକୀରମୋହନଙ୍କ ଲକ୍ଷ୍ୟ ଥିଲା ଅନ୍ୟ ପ୍ରକାରର ।

ପ୍ରାୟଶ୍ଚିତ ଉପନ୍ୟାସର ବୈଷ୍ଣବଚରଣ ପଟ୍ଟନାୟକଙ୍କ ସ୍ତ୍ରୀ ହରିପ୍ରିୟା । ଖୁବ୍ ଧର୍ମପ୍ରାଣା । କୁଳଦେବତା ଗୋବିନ୍ଦଚନ୍ଦ୍ରଙ୍କ ପୂଜା ଆରାଧନା କରି ପୁତ୍ର ଗୋବିନ୍ଦଙ୍କୁ ପାଇଛନ୍ତି । ଅପତ୍ୟ ସ୍ନେହ ତାଙ୍କର ସମଗ୍ର ଫକୀରମୋହନ ସାହିତ୍ୟରେ ସର୍ବଶ୍ରେଷ୍ଠ । ଫକୀର-ମୋହନଙ୍କ ଆଦର୍ଶର ସେ ଅସାମାନ୍ୟା । ପ୍ରାୟଶ୍ଚିତ ଉପନ୍ୟାସଟି ପୁରୁଷ ସମ୍ପର୍କିତ ଘଟଣାର ଗୁରୁତ୍ୱ ଆରୋପିତ ହୋଇ ଥିବାରୁ ଇନ୍ଦ୍ରମଣି କିମ୍ବା ହରିପ୍ରିୟାଙ୍କ ଉପରେ ବେଶୀ ଆଲୋକ ସମ୍ପାତ କରିପାରି ନାହାନ୍ତି । ସ୍ୱଳ୍ପ ପରିସରରେ ହରିପ୍ରିୟା ପୂର୍ବାକାଶର ପାହାନ୍ତି ତାରା ସଦୃଶ ଜାଜ୍ୱଲ୍ୟମାନ । ହରିପ୍ରିୟା ସଦାନନ୍ଦଙ୍କୁ ବେଶୀ ସ୍ନେହ କରନ୍ତି । ଡାକିଲେ ଆଗ ଡାକିବେ ସଦେଇକୁ । ତାଙ୍କର ସଦାନନ୍ଦ ଗରିବ ପୁଅ ବୋଲି କାଳେ ମନଦୁଃଖ କରିବ । କେତେଜଣ ପୁତ୍ରବତ୍ସଳା ନାରୀ ପକ୍ଷରେ ଏହା ସମ୍ଭବ । ଗୋବିନ୍ଦ ତାଙ୍କର ଥିଲା ଅନ୍ଧରଲଉଡ଼ି । ବାତ୍ସଲ୍ୟସ୍ନେହ ତାଙ୍କର ଅସୀମ । ସଦାନନ୍ଦର ହୀନଚରିତ୍ରା ସରଳା, କଷ୍ଟପଠା ହରିପ୍ରିୟା କୁଆଡ଼ୁ

ବୁଝନ୍ତେ । ସେ ଯେତେବେଳେ ଶୁଣିଲେ ତାଙ୍କ ପୁତ୍ର ଗୋବିନ୍ଦ ସଙ୍କର୍ଷଣ ମହାନ୍ତିଙ୍କ କନ୍ୟା ଇନ୍ଦୁମତୀକୁ ବିବାହ କରିଛି ସେତେବେଳେ ସେ ଏକ ଅଜଣା ଆଶଙ୍କାରେ ଅଧୀର ହୋଇ ବିଛଣା ଧରିଛନ୍ତି । ତାଙ୍କର ଗୋଟିଏ ଚିନ୍ତା ପୁଅକୁ ଦେଖିବେ । ଶେଷରେ ପୁତ୍ର ଅଧୀର ହୋଇ ମୃତ୍ୟୁକୁ ବାଛି ନେଇଛନ୍ତି ।

ଇନ୍ଦୁମତୀ ଚରିତ୍ରରେ ଫକୀରମୋହନ କୌଣସି କଳାଗତ ବୈଶିଷ୍ଟ୍ୟ ଝଟି ପାରି ନାହାଁନ୍ତି । କିନ୍ତୁ ସତୀତ୍ୱ ମହୋଜ୍ଜ୍ୱଳତାର ଯେଉଁ ନିଦର୍ଶନ ତା' ଚରିତ୍ରରେ ସେଥିରେ ତାର ଆଦର୍ଶ ଫକୀରମୋହନଙ୍କ ସୃଷ୍ଟି ସମ୍ଭାର ମଧ୍ୟରେ ଫୁଟି ଉଠିଛି । 'କୁଟିଳ, କଳୁଷମୟ ସ୍ୱାର୍ଥପୂର୍ଣ୍ଣ ସଂସାର—ସରୋବରରେ ଇନ୍ଦୁମତୀ ଏକ ସ୍ୱଚ୍ଛ ଇନ୍ଦୀବର । ପ୍ରାୟଶଃ ଏ ଉପନ୍ୟାସରେ ପୁରୁଷର ସ୍ଥାନ ଉତ୍ପନ୍ନ, ମାତ୍ର ପ୍ରତାରଣା ଉତ୍କଟ ନୈତିକ ଅଧୋଗତି ଓ ନିର୍ଲଜ୍ଜ ସ୍ୱାର୍ଥର ବିକଟ ତାଣ୍ଡବନୃତ୍ୟ ସପକ୍ଷରେ ଏହି ଷୋଡ଼ଶବର୍ଷ ବୟସ୍କା ବାଳିକାର କଠୋର କର୍ତ୍ତବ୍ୟ ବୋଧ, ଦୃଢ଼ଧର୍ମ ଧାରଣା, ଗଭୀର ସତ୍ୟାନୁଭୂତି, ଅପାପବିଦ୍ଧ ଚରିତ୍ର-ମାଧୁର୍ଯ୍ୟ, ମର୍ମମ ଆତ୍ମୋତ୍ସର୍ଗ ଏବଂ ପ୍ରଗାଢ଼ ପତିପ୍ରେମ ପାଠକକୁ ଅପାର ବିସ୍ମୟରେ ଅଭିଭୂତ କରେ ।' (୧୮) ପତି କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ମରଣାନ୍ତକ ଅବସ୍ଥା ପାଇଁ ନିଜକୁ ଦାୟୀ କରି ପାପିନୀଭାବେ ତାଙ୍କ ହୃଦୟ ତଳିଯାଇଛି ମୃତ୍ୟୁର କରାଳ ଗହ୍ୱରକୁ । ଫକୀରମୋହନ ଇନ୍ଦୁମତୀଙ୍କୁ ଅନ୍ତର୍ମୁଖୀ କରିଛନ୍ତି । ମାମୁଁ, ଛମାଣ ଆଠଗୁଣ୍ଠର ନାରୀ ଚରିତ୍ରରେ ଏ ଅନ୍ତର୍ମୁଖିନତା ଦେଖାଯାଏ ନାହିଁ । ଇନ୍ଦୁମତୀଙ୍କ କାର୍ଯ୍ୟ କେବଳ ସତୀନାରୀ ପକ୍ଷରେ ସମ୍ଭବ ।

---

(୧୮) ଯୁଗସ୍ରଷ୍ଟା ଫକୀରମୋହନ— ପୃ. ୩୨, ସର୍ବେଶ୍ୱର ଦାସ ।

ଲଛମା ଉପନ୍ୟାସର ବଳବଣିଆ ଦୁର୍ଗ ଅଧୀଶ୍ୱର ବୈଷ୍ଣ ଗଞ୍ଜନ ମାନଧାତାଙ୍କ ସ୍ତ୍ରୀ ମହାଦେଇ ନାରୀ ଜାତିର ମଣ୍ଡନମଣି । ତାଙ୍କଠାରେ ସରସ୍ୱତୀଦେଇ ଓ ସାହୁଆଣୀ ଏକ ମିଶ୍ରିତ ରୂପ ଦେଖିବାକୁ ମିଳେ । ମହାଦେଇ ଅଧୀଶ୍ୱରୀ ହେଲେ ମଧ୍ୟ ଜଣେ ସୁଗୃହିଣୀ । ବିରାଟ ବ୍ୟକ୍ତିତ୍ୱର ଅଧିକାରିଣୀ । ସେ ଜଣେ ସମ୍ବେଦନଶୀଳା ଶାସନକର୍ତ୍ତ୍ରୀ । ଉଆସର ସୁପରିଚାଳନା କେବଳ ମହାଦେଇଙ୍କ ଉନ୍ନତ ବୁଦ୍ଧି ଓ କୌଶଳରୁ ସମ୍ଭବ ହୋଇପାରିଥିଲା । ସ୍ୱାଭାବିକ ଭାବରେ ଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଥିଲା । ଧର୍ମ ମାଧ୍ୟମରେ ସମସ୍ତଙ୍କୁ ପରିବର୍ତ୍ତନ କରିହୁଏ ଏହା ଥିଲା ତାଙ୍କର ଧାରଣା । ତେଣୁ ଚୋରଲୋକମାନଙ୍କୁ ଧରି ସେ ସୁଧାରି ଆଣୁଥିଲେ । 'ତାଙ୍କର ଦୟା, ତାଙ୍କର ମାୟା, ତାଙ୍କର ସମବେଦନା ସମସ୍ତଙ୍କୁ ଚମତ୍କୃତ କରି ରଖିଥିଲା । ପ୍ରଜାଜନମାନେ ତାଙ୍କୁ ମାତାରୂପେ, ଦେବୀରୂପେ ଭକ୍ତି କରୁଥିଲେ ।' (୧୯) ଫକୀରମୋହନ ମହାଦେଇଙ୍କୁ ଦେବୀ ରୂପରେ ଭୂଷିତ କରିବା ସଙ୍ଗେ ସଙ୍ଗେ ଦେବୀ ଗୁଣରେ ମଧ୍ୟ ଭୂଷିତ କରିଛନ୍ତି । ମହାଦେଇ ଦୟାଦାକ୍ଷିଣ୍ୟର ଏକ ଆଦର୍ଶମୂର୍ତ୍ତି । "ମହାଦେଇଙ୍କ ଶ୍ରୀମୁଖରୁ କର୍କଶ କଥା କେହି କେବେ ଶୁଣିନାହିଁ । + + + । ଶ୍ରୀମତୀ ମହାଦେଈ ପ୍ରତିଦିନ ସକାଳେ ଉଆସରେ ସବୁ ସ୍ଥାନରେ ଭ୍ରମଣ କରି ଦେଖନ୍ତି, କାହାରି ଦୁଆରେ ବା କୌଣସି ସ୍ଥାନରେ ଅଳିଆ ଟିକିଏ ପଡ଼ିଥିବାର ଦେଖିଲେ ଆପେ ଗୁଞ୍ଜୁଣି ମୁଠାଏ ଧରି ଓଳାଇ ବସନ୍ତି ।" (୨୦) ମହାଦେଇଙ୍କ ଆଦର୍ଶ, ସେବାଧର୍ମ ଥିଲା ଅନନ୍ୟସାଧାରଣ ।" ମାନଧାତାଙ୍କ ଉକ୍ତିରେ

---

(୧୯) ଲଛମା—ପୃ-୬୮୨, ଫକୀରମୋହନ ଗ୍ରନ୍ଥାବଳୀ ୨ୟ ଖଣ୍ଡ ୨ୟ ସଂସ୍କରଣ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ;

(୨୦) ଏତଦ୍—ପୃ-୬୮୩

ମତ, ପାସଶା, ଶେଜପଟା ପ୍ରଭୃତି ସମସ୍ତ କାର୍ଯ୍ୟ ନିଜହାତେ ସୁନ୍ଦରରେ ସମ୍ପାଦନ କରୁଥିଲେ । + + + । ମାନଧାତାଙ୍କ ପୂଜା ସମାପ୍ତି ପର୍ଯ୍ୟନ୍ତ ମହାଦେଈଙ୍କ ଜଳସ୍ପର୍ଶ ପର୍ଯ୍ୟନ୍ତ ହୋଇ ନ ଥାଏ । + + + । ମହାଦେଈଙ୍କ ଦେବତା ବ୍ରାହ୍ମଣଠାରେ ଅଚଳା ଭକ୍ତି ଥିଲା । + + + । ପତି ତାଙ୍କର ଧ୍ୟାନ, ପତି ତାଙ୍କର ଜ୍ଞାନ, ପତି ଇଷ୍ଟ ଦେବତା ପତି ଜପମନ୍ତ୍ର—ପତିଙ୍କୁ ସର୍ବସ୍ୱ କରି ମଣୁଥିଲେ ।”(୨୧) ଅପତ୍ୟସ୍ନେହା ମହାଦେଈ ନଣନ୍ଦଝିଅ ଲଛମା ପ୍ରତି ବାତ୍ସଲ୍ୟ ମମତାର ଯେଉଁ ଗୁଞ୍ଜରଣଟି ଟେକିଛନ୍ତି ତାଙ୍କ ଗୁଣକୁ ଆହୁରି ପ୍ରଜ୍ୱଳିତ କରିଛି । ହିନ୍ଦୁର ଚରମାଦର୍ଶ ମହାଦେଈଙ୍କଠାରେ ନିହିତ ଥିଲା । ସ୍ୱାମୀଙ୍କ ମୃତ୍ୟୁପରେ ହିନ୍ଦୁ ରମଣୀର ଶ୍ରେଷ୍ଠ ସମ୍ପଦକୁ ବଜାୟ ରଖି ଆତ୍ମହତ୍ୟା କରିଛନ୍ତି । ଫକୀରମୋହନଙ୍କ ଉପନ୍ୟାସରେ ଆଦର୍ଶ ହିନ୍ଦୁ ନାରୀଭାବେ ଯେଉଁ ନାରୀ ସୃଷ୍ଟି କରିଛନ୍ତି ତା ମୂଳରେ ତାଙ୍କର ଦ୍ୱିତୀୟ ପତ୍ନୀଙ୍କ ଚରିତ୍ରବଳର ପ୍ରେରଣା ରହିଛି ।

ଫକୀରମୋହନଙ୍କ ଉପନ୍ୟାସର ନାରୀ ସଂସାର ମଧ୍ୟରେ ଲଛମା ଉପନ୍ୟାସର ମନୁଆ, ଛମାଣ ଆଠଗୁଣ୍ଠର ସାରିଆ, ମାଣିକ, ମାମୁଁ ଉପନ୍ୟାସର ଗେହ୍ଲେଇ, ନାକ ଫୋଡ଼ିଆଣୀ, ମେନକା-ଦେଈ, ମଙ୍ଗଳାଦେଈଙ୍କୁ ଦ୍ୱିତୀୟ ପର୍ଯ୍ୟାୟ ଭୁକ୍ତ କରାଯାଇପାରେ ।

ଲଛମା ଉପନ୍ୟାସର ଲଛମା କେବଳ ଏକ ଐତିହାସିକ ଚରିତ୍ର ନୁହେଁ । ମାତ୍ର ଇତିହାସର ଦରବାରରୁ ସେ ଚକ୍ରିତ ନୁହେଁ । ଦୁଇଟି ପ୍ରଧାନ ଘଟଣା ମଧ୍ୟରେ ନାରୀ ଚରିତ୍ର ଅଙ୍କିତ ଅଛି । ଲଛମା ଜଣେ ପଶ୍ଚିମା ନବବିବାହିତା ଯୁବତୀ । ଜଗନ୍ନାଥଙ୍କ ଦର୍ଶନ ସକାଶେ ଆସିବା ପଥରେ ବର୍ଗୀମାନଙ୍କ ଅତ୍ୟାଚାରରେ ସ୍ୱାମୀ, ପରିଜନଙ୍କ-

---

(୨୧) ଏକ୍ର—ପୃ-୫୭

ଠାରୁ ବଞ୍ଚିତ ହୋଇ ସେଇ ଝଣିଆ ଦୁର୍ଗରେ ଆଶ୍ରୟ ନେଇଛି । ଦୁର୍ଗରେ ଲଛମୀ ଅତି ନିରାଶ୍ରୟା, ଶଙ୍କାକୁଳା ଭାବରେ ଦେଖା ଦିଏ । ପରେ ସେ ମରହଟ୍ଟା ସୈନ୍ୟ ଗୁଳ୍ପୁଣରେ ଯାନସୀ ଭାବରେ ଦେଖା ଯାଇଛି । ସଞ୍ଜାଭୂର ପରାକାଷ୍ଠା ଉପରେ ତାର ଗଭୀର ବିଶ୍ୱାସ । ସଞ୍ଜାଭୂ ଦ୍ୱାରା ନିଜ ସ୍ୱାମୀକୁ ପାଇ ପାରିବ ବୋଲି ଆଶା ରଖି ନିଜ ଚରିତ୍ରକୁ ଶକ୍ତିଶାଳୀ କରିଛି । ସେ ନିର୍ଭୀକ ଭାବରେ ମରହଟ୍ଟା ଓ ମୁସଲମାନ ସୈନ୍ୟ ଗୁଳ୍ପଣିରେ ଚଳପ୍ରଚଳ କରିଛି । ତା ଚରିତ୍ରରେ ଅସାମାନ୍ୟ ଧୈର୍ଯ୍ୟ ଓ ସାହସିକତାର ପରିଚୟ ମିଳେ । ସର୍ବ ନାରୀ ଲଛମୀ ଭଯୁଙ୍କରୀ ରୂପ ଧରି ଭାସ୍କର ପଣ୍ଡିତକୁ ହତ୍ୟା କରିଛି ପିତୃହନ୍ତା ମରହଟ୍ଟାର ପ୍ରତିଶୋଧ ନେବା ପାଇଁ ।

ଜଗାଫତେ ସିଂ ମା' ଗୌଣ ଚରିତ୍ର ଭାବରେ ତାର ଉପସ୍ଥାପନା ଅନାବଶ୍ୟକ ହେଲେ ମଧ୍ୟ ମରହଟ୍ଟାମାନଙ୍କ ଦ୍ୱାରା ସର୍ବସ୍ୱାନ୍ତ ହେବାର ଏକ ଜ୍ୱଳନ୍ତ କାହାଣୀର ପ୍ରତୀକ ସେ । ଜଗାଫତେ ସିଂ ମା'ର ଉପସ୍ଥାପନା ଅଯୌକ୍ତିକ ବା ଅପ୍ରାସଙ୍ଗିକ ନୁହେଁ । ଉତ୍କଳର ଗୋଟିଏ ଜାତିର ଭୀରୁ, ଦଳିତ, ଅତ୍ୟାଚରିତ ଗୋଷ୍ଠୀ ପ୍ରତି ତାର ଅଭିଶାପ ବର୍ଷଣ ଜଗାଫତେ ସିଂ ମା' ମାଧ୍ୟମରେ ଫକୀରମୋହନ ପ୍ରକାଶ କରିଛନ୍ତି ବୃଦ୍ଧିକା ଚରିତ୍ର ଏଥିରେ ଅତି ଗୌଣ ହେଲେ ମଧ୍ୟ ଅବାଞ୍ଛିତ ନୁହେଁ । ବୃଦ୍ଧିକା ଜଗାଫତେ ସିଂ ମା'ର କଥାକୁ ଅତିରଞ୍ଜନ କରିବା ମୂଳରେ ଗୋଟିଏ ଉତ୍ପୀଡ଼ିତ ଜାତିର ଇତିହାସ ଚିତ୍ରିତ ହୋଇଛି ।

"ପ୍ରାୟଶ୍ଚିତ୍ତ ଉପନ୍ୟାସର ମରୁଆ ଚରିତ୍ର ତ୍ୟାଗର ଏ ଜ୍ୱଳନ୍ତ ଉଦାହରଣ । କାସୁା ସଙ୍ଗେ ଟୁପୁା ପରି ଇନ୍ଦୁଙ୍କ ସଙ୍ଗେ ମୁହୂର୍ତ୍ତିଙ୍କ

ମାତ୍ର ପରିତ୍ୟାଗ କରିନାହିଁ । ସାରାଜୀବନ ତାକୁ ସୁଖୀ କରାଇବାରେ ସେ ଦ୍ୱିଧା କରିନାହିଁ । + + + । ଇନ୍ଦୁମଣିଙ୍କ ଆତ୍ମହତ୍ୟାରେ ମରୁଆର ସମସ୍ତ ସୁଖ ଅନ୍ତର୍ହିତ ହୋଇଥିଲା ।" (୨୨) ଉଚ୍ଚକୁଳ ସମ୍ଭୂତ ନାରୀଚରିତ୍ରରେ ମହନୀୟ ଗୁଣ ପ୍ରଦର୍ଶନ କରିବା ଫକୀର-ମୋହନଙ୍କର ଆଦର୍ଶ ଥିଲେ ମଧ୍ୟ ଦରିଦ୍ର କୁଳରେ ସମ୍ଭୂତା ମରୁଆ ଚରିତ୍ରରେ ତ୍ୟାଗର ଆଦର୍ଶ ଦେଖାଇଛନ୍ତି । ଇନ୍ଦୁମଣି ଚରିତ୍ର ପରି ଫକୀରମୋହନ ମରୁଆ ଚରିତ୍ରର ଅନ୍ତର୍ମୁଖିନତା ଦେଖାଇଛନ୍ତି । ମରୁଆ ଭାବୁଛି ନିଜ ଅବହେଳାରୁ ଇନ୍ଦୁମଣିର ମୃତ୍ୟୁ ହେଲା । ସେଥିପାଇଁ ସେ ନିଜକୁ ଦୋଷୀ ମଣି ପ୍ରାୟଶ୍ଚିତ କରିବା ଆଶାରେ ସଂସାରରେ ଥାଇ ମଧ୍ୟ ଅବଶିଷ୍ଟ ସମୟ ସନ୍ୟାସିନୀଭାବେ ଜୀବନ କଟାଉଛି ।

ମାମୁଁ ଉପନ୍ୟାସର ଟେଙ୍କେଇ, ନାକଫୋଡ଼ିଆ ମା, ଏମାନେ ଫକୀରମୋହନଙ୍କ ହାତରେ ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟର ଅଧିକାରିଣୀ । ସମାଜର ଅବହେଳିତ, ଅବାଞ୍ଛିତ ଏଇ ଚରିତ୍ର ଦୁଇଟି ଓଡ଼ିଆ ପାଠକମାନଙ୍କ ସମ୍ମୁଖରେ ସଜୀବ ଜୀବନ୍ତ ରୂପ ନେଇ ଠିଆ ହୋଇଛନ୍ତି । ନାକଫୋଡ଼ିଆ ମା' ମାମୁଁ ଉପନ୍ୟାସର ଏକ ସ୍ୱତନ୍ତ୍ର ପରିଚ୍ଛେଦରେ ସ୍ୱଚ୍ଛନ୍ଦ ଗତିକରିଛି । ମୁଖ୍ୟ ଚରିତ୍ର ଶିବକଲା, ବଣାଖାଦେଇଙ୍କ ସ୍ୱରୂପ ଉଦ୍‌ଘାଟନ କରିବାରେ ସହାୟକ ହୋଇଛି । ଜୀବନ ଅନ୍ୱେଷଣକାରୀ ଫକୀରମୋହନ ସାଧାରଣ ନାରୀ ହେଲେ ମଧ୍ୟ ନାକ ଫୋଡ଼ିଆ ମା'ର ଜୀବନ ଖୋଜିଛନ୍ତି । ନିରାଶ୍ରୟୀ ବୁଢ଼ୀର ଅସହାୟତା, ଏବଂ ଏହି ଅସହାୟତା ମଧ୍ୟରେ ବଞ୍ଚିବାର ପ୍ରଚେଷ୍ଟା

(୨୨) ଔପନ୍ୟାସିକ ଫକୀରମୋହନ—ପୃ. ୯-୪୦, ଅଧ୍ୟାପକ ଉପେନ୍ଦ୍ର ମିଶ୍ର ।

ନାକ ଫୋଡ଼ଅା ମା' ପାଖରେ ଦେଖାଇଛନ୍ତି । "କୋଡ଼ିଏବର୍ଷରୁ ଚୋଷଣାହାର୍ଷା ହେଣ୍ଡ୍ରିଆ ପୂଅ ନାକଫୋଡ଼ଆଟା ବାଡ଼ ବେପାଗ୍ଧରେ ଗୃଲଗଲ୍ପ ତନୁ ତା ମା ବୁଢ଼ୀଟା ଢେର ଦନଯାଏ ଦୁଆରକି ଆଉଜାଇ ଦେଇ ଏକୁଟିଆ ପଡ଼ରହ୍ଲ । +++ । ଏଣିକ ମଡାକୁ ନ ବାହାରଲେ ନ ଚଳେ । ++ । ବୁଢ଼ୀର ଆଗୁ ଗୋଟିଏ ଗୁଣ ଥିଲ—ସେ ଭଲ ଜୁଡ଼ା ବାନ୍ଧି ଜାଣେ । +++ । ବୋହୂ ଝିଅଙ୍କୁ ସାକୁଲସୁକୁଲ କର କଥା କହ୍ୱ କଣେ । କେହ୍ବ ତପ୍ପା କଣ୍ଠ ଖଣ୍ଡେ ପୁରୁଣା ଲୁଗା ଫୋପାଡ଼ ଦେଲେ ତାହାର ବେଡ଼ଣ ବାଉଟା ଚଳଯାଏ । ଏମିତ ସଠା ବଠା କର ଦନ କାଟେ ।" ୨୩) ଫକୀର- ମୋହନଙ୍କ ଉପନ୍ୟାସରେ ନାକ ଫୋଡ଼ଅା ମା'ର ଏ ସ୍ୱରୂପଟି ବେଶ୍ ସହାନୁଭୂତିଶୀଳ ହୋଇଥାଏ । ନାକଫୋଡ଼ଆ ମା ନାଜରାଣୀଙ୍କ ସ୍ୱରୂପ ଜାଣି ନିଜର ବୁଦ୍ଧିକୌଶଳ ପ୍ରୟୋଗ କରଥିଲ କିଛି ଉପାର୍ଜନ କରିବା ପାଇଁ । ଅପତ୍ୟହୀନା ନାଜରାଣୀଙ୍କର ମାତୃତ୍ୱର ବିକଳଭାବ ନାକଫୋଡ଼ଆ ମା' ବୁଝିପାରି ତାଙ୍କଠାରୁ କିଛି ହାସଲ କରିବା ପାଇଁ କହିଥିଲ ସବରରେ ସେ ବହୁ ବାଂଝ୍ଙ୍କର ପୁତ୍ରକନ୍ୟା ଜନ୍ମାଇ ଦେଇଛି । ମାତ୍ର ତାର ପ୍ରତିଯୋଗିନୀ ହୋଇଛି ଚମ୍ପକଳା । ଖାଇବା ପଥରେ ଧୂଳି ଦେଇଛି । ଚରିତ୍ରଟିକୁ ଭସ୍ମ କରନି ନାକ ଫୋଡ଼ଆ ମା । ବରଂ ଚମ୍ପକଳା ସହିତ ସମତ କରିଛି । ଫକୀର- ମୋହନ ଚମ୍ପକଳା ମାଧ୍ୟମରେ ଏହି ନାରୀଟିକୁ ଜୀବନ୍ତ କରି ସୃଷ୍ଟି କରିଛନ୍ତି । "ତାର ଗତିବିଧି ଏକାନ୍ତଭାବେ ନାଟକୀୟ ଏବଂ ତାହାର ଆକୃତି ପ୍ରକୃତି ଉଭୟର ବର୍ଣ୍ଣନା ବେଶ୍ ପ୍ରାଞ୍ଜଳ ଓ ପୁଙ୍ଖାନୁପୁଙ୍ଖ ।" (୨୪)

---

(୨୩) ମାମୁ—ପୃ. ୫୫, ଫକୀରମୋହନ ।
(୨୪) ଏଜ୍ନ—ପୃ. ୩୫ ।

ଫକୀରମୋହନଙ୍କ କଥା ସାହିତ୍ୟର 'ଗେହ୍ଲେଇ' ଏକ ଅସାଧାରଣ ଗାଉଁଲି ସ୍ତ୍ରୀ । "ଶକ୍ତି, 'ସାହାସ, ସଂଯମ ଓ ସେବାର ପ୍ରତୀକ ସେ । × × × । ଛମାଣ ଆଠଗୁଣ୍ଠର ମାଣିକ , ଲଚ୍ଛମୀର ରାଧିକା ଚରିତ୍ର ପରି ତାହାର ଦୁନିଆର ବୃତ୍ତିକଥା ତାକୁ ଜଣା । ହେଉପଛେ ଆଗତ କଷ୍ଟ, ଉପଦ୍ରବ, ଟିକେଟିକେ ଧୀରପଣ ଜଣା । ପରଉପକାର କରିବା ଅନ୍ୟର କାର୍ଯ୍ୟ ବେଳ ଉପସ୍ଥିତ ରହି ନିଜର ଭଳି ସବୁ କାମ କରିଯିବା ଏମାନଙ୍କ ସ୍ୱଭାବସିଦ୍ଧ । ଏହି ମହାପୁରୁଷୀ ମହିଳାଗଣ ସ୍ନିଗ୍ଧ, ଶାନ୍ତ ପଲ୍ଲୀର ବାସ୍ତବିକ ଶ୍ରୀସମ୍ପଦ ।" (୨୫) ବାଡ଼ରେ ଗେହ୍ଲେଇର ଶାଶୁ, ସ୍ୱାମୀ-ଧନ ବର୍ଷାକ ଆଉ ଡେଢ଼ବର୍ଷର ପୁଅ ଚାଲିଗଲେ । ଗୁ ଚୁଟିବାର ଉଠାଇବାକୁ କେହି ନାହାନ୍ତି । ବୋହୂଟା ଘରୁ ବାହାର ନାହିଁ—କାହାକୁବା ଚଳେ । କାହାକୁ ଡାକିବାକୁ ଯିବ । × × × । ବୃନ୍ଦାବଣଙ୍କୁ ବଡ଼ଭକ୍ତି କରେ । × × × ତା ଜାଣିବାରେ ବୃନ୍ଦାବଣ ସଂସାର ଆତଯାତ କରୁଛନ୍ତି ।—ସମସ୍ତଙ୍କ ଦୁଃଖ ଗୁହାରି ଶୁଣନ୍ତି । ବୃନ୍ଦାବଣଙ୍କୁ ଗୁହିଁ ଢେର କାନ୍ଦିଲା—ଢେର ମୁଣ୍ଡିଆ ମାରିଲା—ଢେର ପ୍ରାର୍ଥନା କଲା । ସେତିକି ବେଳେ ଘରୁ ଗୋଟିଏ ହେମନ୍ତ ବାନ୍ଧିଲା—ପଣତ କାନିଟା ଅଣ୍ଟାରେ ଭିଡ଼ି ଦେଲା—ଗୋଟି ଗୋଟି କରି ମୁରୁଦାରକୁ ଘୋଷାରି ଘୋଷାରି ନେଇକି ମଶାଣିରେ ପୋପାଡ଼ି ଦେଇ ଆସିଲା । କେବଳ ମନ ଟିକିଏ ଘାବରି ଗଲେ ବୃନ୍ଦାବଣ ବୃନ୍ଦାବଣ, ମା-ମା-ମା ମାଁ ବୃନ୍ଦାବଣ ବୋଲି ଘାଣ୍ଟି କରେ—ହେମନ୍ତ ବାନ୍ଧିଯାଏ ।" (୨୬) ଏମାନଙ୍କ ମୃତ୍ୟୁରେ ଗେହ୍ଲେଇ ଭାଙ୍ଗି ପଡ଼ିନ । ଆପଣା ଦୁଃଖଭର

---

(୨୫) କଥାଶିଳ୍ପୀ ସେନାପତିଙ୍କ ଦୃଷ୍ଟି ଓ ଦୃଗ୍‌ବଳୟ ପୃ. ୨୪
ଅଧ୍ୟାପକ ବାଳକୃଷ୍ଣ ଶତପଥୀ ।

(୨୬) ମାମୁ—ପୃ. ୨୪

ଆପେ କାଳ କାଟୁଥିଲା । "ସବୁବେଳେ କବାଟ କିଳା । — ଇଚ୍ଛା ତା ଦୁଆରକୁ କେହି ନ ଆସୁ । କେହି ବୋହୂଭୂଆସୁଣୀ ହେଲେ କେବେ ତା ଦୁଆର ମାଡନ୍ତୁ — ତାହା ବ ଖୁବ୍ ଦରକାରେ ପଡିଲେ ।" (୨୭) ପରବର୍ତ୍ତୀ ସମୟରେ ଗେଣ୍ଡେଇ ଚରିତ୍ରର ପରିବର୍ତ୍ତନ ଆସିଛି । ପତିବ୍ରତା, ସତୀ ନାରୀଟିଏ ଗେଣ୍ଡେଇ । ଦେହରେ ନବ ଯୌବନ । ନବଶୟୂ ହେଲେ ମଧ୍ୟ ପତିବ୍ରତାର ଅଖଣ୍ଡ ଦୀପ ଜାଳିଛି । ଫକୀରମୋହନ ଯେଉଁଠି ସୁଗୃହିଣୀର ଆଭାସ ପାଇଛନ୍ତି ସେଠି ରୂପର ମହକ ମଧ୍ୟ ଲେପି ଦେବାକୁ ଭୁଲିଯାଇ ନାହାନ୍ତି । ସେହିପରି ଫକୀରମୋହନଙ୍କ ଦୃଷ୍ଟିରେ ଏ ଗେଣ୍ଡେଇଟି । ଗେଣ୍ଡେଇର ବୈଚିତ୍ର୍ୟମୟ ଚରିତ୍ରରେ ଫକୀରମୋହନଙ୍କ କଳାଗତ ବୈଶିଷ୍ଟ୍ୟ ପ୍ରକଟ ରହିଛି । ଫକୀରମୋହନଙ୍କ ଲେଖାରେ ସେ ହୋଇଛି "ଗ୍ରାମରେ ସମସ୍ତଙ୍କ ଚହ୍ଲା, କେହି ତାକୁ ଭଲ ପାଏ, କେହି ତାକୁ ସ୍ନେହ କରେ । × × ×, କାହାର ଅମାନ୍ତ କଥା ଦେଖିଲେ ସେ ଏପରି ଗୋଟିଏ ଛଟା ମେଲି ଦିଏ ଯେ ଲୋକ ମରଣ-ସନ୍ତୋଷ ହୋଇଯାଏ, ମାଡ଼ଠାରୁ ବଳି ପଡ଼େ, ଲୋକଟା ଗାଁରେ ମୁଣ୍ଡଟେକି ପାରେ ନାହିଁ ।" (୨୮) ଗେଣ୍ଡେଇର ନାରୀ ସ୍ୱରୂପଟିକୁ ଉଦ୍‌ଘାଟନ କରି ଫକୀରମୋହନ ପୁଣି ଲେଖିଛନ୍ତି "କେହି ଦୁଷ୍ଟ ଭେଣ୍ଡିଆ ତା ଆଡ଼କୁ ଅନାଇଲେ କମ୍ବା ଆଉ ତାକୁ ଲଗେଇ ପକେଇ ଠାପୁରା ଟୁପୁରି କଥାଟାଏ କହି ଦେଲେ ଗେଣ୍ଡେଇର ପାଟି ଫିଟାଇ କାହାକୁ କିଛି ଗାଳି ମାଗି ଗାଳି ଗୁଲଜ କରେ ନାହିଁ, ହେଲେ ତା ଆଡ଼କୁ ଏମନ୍ତ ଗୋଟାଏ କଟମଟିଆ ଚାହାଣି ଚାହେଁ ଯେ—ତା ଆତ୍ମାପୁରୁଷ ଚମକି ଯାଏ—ଡରରେ ପଳାଇ ଯିବାକୁ

(୨୭) ଏକ୍‌ନ—ପୃ. ୨୫
(୨୮) ଏକ୍‌ନ—ପୃ. ୨[illegible]

ବାନ୍ଧ ହଏ ନାହିଁ ।" (୨୯) ଗେନ୍ଦ୍ରେଇ ପାଖରେ ଫକୀରମୋହନ ଗୋଟିଏ ଭଲ ଗୁଣ ଖଞ୍ଜିଛନ୍ତି । ପଇସା କଉଡ଼ିକୁ ଲୋଭ ନ ରଖି ଧାନ୍ଦପଣ କରେ । ଡ଼ାକ୍ତ ନ ଡ଼ାକ୍ତ ତାଘରେ ପହଞ୍ଚେ । ଗାଁରେ କେଉଁ ଝିଆଣ୍ଡୀ ଲୋକ ବାଧିକ ପଡ଼ିଲେ ରାତି ସାରା ତାପାଖରେ ଜଗି ବସିବ । ଗାଁ ସାରାକର ସେ ଅତି ପ୍ରିୟ । କାହାର ବଡ଼ ନ, କାହାର ଆତ୍ମକିଷି । ଫକୀରମୋହନଙ୍କ ସାହିତ୍ୟରେ ଗେନ୍ଦ୍ରେଇ ଚରିତ୍ରଟି ଏକ ଅନନ୍ୟଚରିତ୍ର ।

ମାମୁଁ ଉପନ୍ୟାସର ମଙ୍ଗଳା ଦେଇ ଚରିତ୍ର ଫକୀରମୋହନଙ୍କ ସୃଷ୍ଟିରେ ଏକ ଘୃଣିତ ଚରିତ୍ର । ମଙ୍ଗଳା ଦେଈ ବିଶାଖା ଦେଈ ଓ ରାଘବର ମାଆ ଓ ଅସୁରେ ଗଡ଼ ମୌଜାର ପିଆଦା ଛକଡ଼ି ପଟ୍ଟନାୟକର ବିଧବା ସ୍ତ୍ରୀ । ବିଶାଖା ଦେଈ ନାଜରପୁଅରେ ଘରଣୀ ହୋଇ ଚାଲିଗଲେ ମଙ୍ଗଳା ନେଇ ଓ ରାଘବ ବିଶାଖାଙ୍କ କଟକ ବସାକୁ ଆସିଛନ୍ତି । "ଦାରିଦ୍ର ଓ ସଂସ୍କାର ହୀନତା ଅତି ମାତ୍ରାରେ ମଙ୍ଗଳାଦେଈଙ୍କୁ ସ୍ୱାର୍ଥପର, ମିଥ୍ୟାବାଦିନୀ ଓ ଅନାତ୍ମୀୟ କରିଅଛି । × × × । ଜୁଆଁଇବାବୁ ସିପେଇମାନଙ୍କ ହାତ ବନ୍ଧା ହୋଇ ଗଲେଣି ଏଥିରେ ମଙ୍ଗଳାଦେଇ ବିବ୍ରତ ନୁହନ୍ତି ।" (୩୦) ସନ୍ତୁଷ୍ଟି ସ୍ୱାର୍ଥପରାୟଣା ଏହି ନାରୀ ଗେନ୍ଦ୍ରେଇକୁ କହନ୍ତି' ମା ଶରି ସାହେବଙ୍କ ଯୋଡ଼ାଏ ସିପେଇ ଆସି ଜୁଆଁଇବାବୁଙ୍କୁ ଧରିନେଲେ, 'ଘରେ'ଙ୍କୁ ଖୋଜୁଛନ୍ତି । ମା ଶରି ! ସାହେବ ଲୋକଙ୍କୁ ବୁଝାଇ କହିବୁ, ରଘୋଟି ବଡ଼ ଭଲ ପିଲା । ହଳଦି ପାଣିରେ ଗୋଡ଼ ଦିଏନାହିଁ । ସେ କିଛି ଜାଣେ ନାହିଁ, ଦିନଯାକ ମୋ ପାଖରେ ଥିଲା ଡ଼ରରେ ପଳାଇଛି ।"

---

(୨୯) ଏନ୍ନ— ପୃ. ୨୭

(୩୦) କଥା ଶିଳ୍ପୀ ସେନାପତିଙ୍କ ଦୃଷ୍ଟି ଓ ଦୃଗ୍‌ବଳୟ ପୃ. ୩୬ ଅଧ୍ୟାପକ ବାଳକୃଷ୍ଣ ଶତପଥୀ ।

(୩୧) ଆଠଣା ପୁଅର ବୋଝକୁ ଘଣ୍ଟ ଘୋଡ଼ାଇ ଗୋଃଡ଼ାପଣି ତୁଳସୀ ପତ୍ର କରିବାର ମା' ହେଉଛନ୍ତି ଏକ୍ସ ମଙ୍ଗଳାଦେଇ । ସ୍ୱଭବ ବ୍ୟକ୍ତିତ ଅନ୍ୟ କାହା ପ୍ରତି ଏହାଙ୍କ ମାତୃତ୍ୱ ନିଷ୍କରୁଣ । ମିଥ୍ୟାବାଦିନୀ, ସ୍ୱାର୍ଥପର ବୁଢ଼ୀକୁ ଫକୀରମୋହନଙ୍କ ଦରଦୀ ପ୍ରାଣରେ ଟିକଏ କ ଦୟା ଆସିନି । ନାଜର ଜେଲକୁ ଗଲାପରେ ବାନାମ୍ବର ତାକୁ କଣ୍ଠକରେ ଗ୍ରୁଡ଼ ଦେଇ ସାନ ବୋହୂକୁ ଧରି ଗାଁକୁ ପାଇଛି ।

ମେନକା ଦେଇ ନାଜରଙ୍କ ମାତା ଓ ଦାଶରଥି ଦାସଙ୍କ ସ୍ତ୍ରୀ । ଫକୀରମୋହନ ତାଙ୍କୁ ଜୀବନ୍ତ କରି ଗଢ଼ିବାରେ ବିଶେଷ ଯତ୍ନ କରି ନାହାଁନ୍ତି । ସବୁବେଳେ ରୋଗିଣୀ । ବାର୍ଦ୍ଧକ୍ୟରେ ବାନାମ୍ବର ପାଖରେ ରହିଛନ୍ତି । ନିଜ ତାଙ୍କର ଘରଦ୍ୱାର୍ଡ଼ା ନ ଦେଇ ଆତ୍ମସାତ କରିଛି । ହେଲେ ତାଙ୍କ ଉପରେ ଘାର୍ଘ ନିଶ୍ୱାସ ଟିକେ ପକାଇ ନାହାଁନ୍ତି କାଳେ ପୁଅର ଅମଙ୍ଗଳ ହେବ । ପୁତ୍ରବତ୍ସଳା ମା ମେନକା ଦେଇ ଏଥିପାଇଁ ଧନ୍ୟା ହୋଇଛନ୍ତି ।" ମେନକାଦେଇ ଏକ ନିସ୍ପରଙ୍ଗ ପୁଷ୍କରିଣୀ ।" (୩୨)

ମାମୁଁର ଗେହ୍ଲେଇ ଚିତ୍ରିତ ପରି ଛ ମାଣ ଆଠଗୁଣ୍ଠର ମାଣିକ ଚରିତ୍ରଟି । ମାଣିକ ଦାଣ୍ଡୁରୁଣୀ । ଆଗର କହି ଓବଡ଼ଗୀ, ମିଚେଇ ହେଲେ ମଧ୍ୟ ମର ନସବାନର ଲାଗଥିବ । ଧାଈ ପଣ ତାକୁ ଜଣା । ବୋହୂଝିଅ ଛୁଆ ଜନ୍ମ କଲେ ଉଠିଆର ପର୍ଯ୍ୟନ୍ତ ଲଗଥିବ । ପରଉପକାର କରିବାକୁ ଯେପରି, ହୁମ୍ ହୁମ୍ ଉପରେ ପଡ଼ି କଳି କଜିଆ କରିବାକୁ ସେହିପରି ମଜଭୂତ । କଳି ଲାଗିଛି ତ ନ ଖାଇ ନ ପିଇ କଳି କରୁଥିବ । ତାକୁ କଏ କଅଁଲେଇ କହିଛି କହିଲା ନ ଖାଇ ନ ପିଇ

(୩୧) ମାମୁ—ପୃ. ୨୩୨

(୩୨) କଥାଶିଳ୍ପୀ ସେନାପତିଙ୍କ ଦୃଷ୍ଟି ଓ ଦର୍ଶନଲବ୍ଧ ପୃ. ୩୭

ତା ସେବାରେ ଲାଗିଥିବ । ଫକୀରମୋହନଙ୍କ ସୃଷ୍ଟିରେ ଏ ଏକ ବିରଳନାରୀ ।

ଛମାଣ ଆଠଗୁଣ୍ଠର ମୂଳ ନାରୀ ଚରିତ୍ର ହେଉଛନ୍ତି ସାରିଆ । ଯାହା ଯୋଗୁ ଘଟଣା ଗଣ୍ଠି ମୁଖର ହୋଇଛି । ଯିଏ ମଙ୍ଗରାଜଙ୍କ ଜୀବନରେ କାଳ ବୈଶାଖୀ ହୋଇଛନ୍ତି । ସାରିଆର ଛମାଣ ଆଠଗୁଣ୍ଠ, ତାର ନେଡ଼ି ଗାଈ ମଙ୍ଗରାଜଙ୍କ ମୃତ୍ୟୁର କାରଣ ହୋଇଛନ୍ତି । ବଡ଼ ନମ୍ରା ଓ ହତଭାଗିନୀ ଏ ସାରିଆ । ସମାଜର ଅବାଞ୍ଛିତ ଓ ଅବହେଳିତ ହେଲେ ମଧ୍ୟ ଅନ୍ତରରେ ମାତୃତ୍ୱର ଅନନ୍ତ ବୁଭୁକ୍ଷା ଓ ପ୍ରେମର ଅସରନ୍ତି ଜାହ୍ନବୀ ପ୍ରବାହ ଧରି ଜନ୍ମ ହୋଇଥିଲା ସେ । × × × × । ସହସ୍ର କାକୁତି-ମିନତି, ପୂଜା-ଆରାଧନାରେ ବନ୍ଧ୍ୟାତ୍ୱର ବିଷମ ଗ୍ରନ୍ଥି ତାର ଫିଟିଲାନି । ଗୋଟିଏ ଅମୃତମୟ ଶିଶୁର କୁଆଁ କୁଆଁ ରବରେ ତାର ଶୂନ୍ୟ କୋଳ ମୁଖରିତ ହେଲା ନାହିଁ । ସେଥିପାଇଁ ସେ ତା'ର ସର୍ବସ୍ୱ ଦେଲା । ସ୍ୱାମୀ ବାପୁ ହୋଇ ଗଲା । ଜୀବନରେ ଏକମାତ୍ର ଅବଲମ୍ବନ ଛ'ମାଣ ଆଠଗୁଣ୍ଠ ଗଲା । ଆପେ ନ ଖାଇ ନ ପିଇ ଘର ବାରଣ୍ଡାରେ ପଡ଼ି ପ୍ରାଣ ହରାଇଲା ।" (୬୩) ମାତୃତ୍ୱ ପାଇଁ ନାରୀର ଯେଉଁ ଅଦମ୍ୟ ପିପାସାର ପଟାନ୍ତର ନାହିଁ । ମାତୃତ୍ୱ ନାରୀ ଜାତିର ମହତ୍ତ୍ୱ । ଏ ମହତ୍ତ୍ୱ ଠିକ୍‌ କି ସେ ନ ପାଇଲେ ଜୀବନ ବୃଥା ମଣେ । ତେଣୁଆଣି ସାରିଆର ମାତୃତ୍ୱର ଚଳନ୍ତ କ୍ରନ୍ଦନ ପାଠକଙ୍କୁ ସ୍ତମ୍ଭୀଭୂତ କରେ । ଦାଣ୍ଡର ପିଲାଟିଏ ଦେଖିଲେ ଘଡ଼ିଏ ସାରି ଅନାଏ । ଅନ୍ଧବିଶ୍ୱାସ ହେଉଥିଲେ ବୁଢ଼ୀ ମଙ୍ଗଳାଙ୍କ ଆଶୀର୍ବାଦରୁ ତା'ର ସନ୍ତାନ ହେବ ବୋଲି ସେ ବିଶ୍ୱାସ କରେ । ସାରିଆର ଏ ଦୁର୍ବଳତାର ସୁଯୋଗ ନେଇଛନ୍ତି ଚମ୍ପା । ଯେତେବେଳେ

(୬୩) ଯୁଗଦ୍ରଷ୍ଟା ଫକୀରମୋହନ—ପୃ. ୬୦ ଝଙ୍କେଶ୍ୱର ଦାସ ।

ଚମ୍ପା ସାରିଆକୁ କହୁଛି "ଦେଖ ସାରିଆ ଟଙ୍କାରେ କ'ଣ ଅଛି, ସୁନାରେ କ'ଣ ଅଛି ? × × × ମୂଳକଥା ହେଲା ପିଲା ଛୁଆ । ଯେଉଁ ଘରେ ପିଲା ନାହିଁ ସେ ଘରଟି ଦିନ ଦ୍ୱିପହରେ ଅନ୍ଧାର । ବାଂଝୀ ବରଂଟି ହେବାକୁ ଉଣା ପାପ ?" (୩୪) ଚମ୍ପାର ଏ ବାକ୍ୟ ବାଣରେ ସାରିଆର ମାତୃତ୍ୱ ସେଇଠି ଆତ୍ମକ ରୋଦନ କରୁଛି । ସତୀ ସାଧ୍ୱୀନାରୀ ସେ । ଗରିବ, ଲାଞ୍ଛିତା, ଅବହେଳିତା ଅଶିକ୍ଷିତା ହେଲେ ମଧ୍ୟ ସ୍ୱାମୀ ତାର ଦେବତା । ଚମ୍ପା ଯେତେବେଳେ କହୁଛି "ଗୋପୀନାଥପୁରର ତିନିଜଣ ମଇକିନିଆ ଠ.କୁରାଣୀଙ୍କ କଥା ନ ମାନିବାରୁ ଏକାବେଳେକେ ରାଣ୍ଡ ହୋଇଗଲେ ।" (୩୫) ଅଶିକ୍ଷିତ ହେଲେ ମଧ୍ୟ ସ୍ୱାମୀର ମହତ୍ତ୍ୱ ସେ ବୁଝିପାରିଲା । ଚମ୍ପାର ଏ କଥା ସାରିଆ ପକ୍ଷରେ ଥିଲା ସବୁଠାରୁ ଶ୍ରେଷ୍ଠ ଚାବୁକ ! ଚମ୍ପା କଥାରେ ରାଜି ନ ହେବାରେ ତା'ର ଉପାୟ ନ ଥିଲା । ନିରୀହ ସାରିଆ କୁଆଡୁ ବୁଝିବ ଚମ୍ପାର କପଟ ? ସାରିଆର ନେତ ବୋଲି ଗୋଟିଏ ଗାଈ ଥାଏ । ପୁତ୍ରକନ୍ୟାର ଅନାବିଳ ଅଫୁରନ୍ତ ସ୍ନେହ ତାହାର ଉପରେ ଅଜାଡ଼ି ଦେଇ ଅନନ୍ତ କ୍ଷୁଧିତ ମାତୃତ୍ୱକୁ ଅବଦମିତ କରେ । ମଙ୍ଗରାଜ ତାର ପ୍ରିୟ ନେତକୁ ଦୁଆରେ ନେଇଗଲା ପରେ ମଙ୍ଗରାଜ ଘରେ ଉପାସରେ ପଡ଼ି ମରୁଛି । ନୀଚ ଜାତି, ଅଶିକ୍ଷିତ ହେଲେ ମଧ୍ୟ ତାଙ୍କ ମଧୁମୟ ଦାମ୍ପତ୍ୟ ପ୍ରେମର ପଟାନ୍ତର ନାହିଁ ।

'ମାମୁଁ' ଉପନ୍ୟାସର ଚାଂଶାଗାଡେଇଙ୍କୁ ଫକୀରମୋହନଙ୍କ ନାରୀ ସଂସାରର ଏକ ସ୍ୱତନ୍ତ୍ର ପର୍ଯ୍ୟାୟଭୁକ୍ତ କରାଯାଇପାରେ । ସେ ଏକ ବିଚିତ୍ର ରକମର ନାରୀ । ଫକୀରମୋହନଙ୍କ ନାରୀ ସୃଷ୍ଟିରେ ବିଶାଖା ଦେଇ ଓରଫ୍ ନାଜରାଣୀ ଏକ ଅନନ୍ୟ ସୃଷ୍ଟି । ନାଜରାଣୀ

(୩୪, ଛ'ମାଣ ଆଠଗୁଣ—ପୃ. ୪୯
(୩୫) ଏଜନ୍ନ—ପୃ. ୫୦

ଅଶିକ୍ଷିତା, ନିତାନ୍ତ ଧାନକୁଟି ଘରର ଝିଅ । କିନ୍ତୁ ନାଜରଙ୍କ ଧନ ସମ୍ପଦର ଅଧିକାରିଣୀ ନାଜରାଣୀ ହେବାଟା ତାର ସବୁଠୁ ଗୌରବ । ଗରିବ ଘରର ଝିଅ ପ୍ରାଚୁର୍ଯ୍ୟ ମଧ୍ୟକୁ ଆସିଲାବେଳେ ମନକୁ ଫୁଲେଇ ଦେଇଛି । 'ରାଣୀ' ହେବା ତାର ଗୋଟିଏ ଝୁଙ୍କ୍ । ନଟବର ଦାସେ ଯେତେବେଳେ ବିଶାଖା ଦେଇଙ୍କୁ ରାଣୀ କରେଇ ଦେବେ ବୋଲି କହିଛନ୍ତି ଏବଂ ନରପୁର କଲ୍ଲା ହସ୍ତଗତ କରିବାର ଉପାୟ ତା ପାଖରେ ବଖାଣି ବସିଛନ୍ତି ସେତେବେଳେ ବିଶାଖା କହିଛି—" ମ, ମ, ତୁମେ ହାକମ, ତୁମେ ମାଲିକ ହେବ ନାହିଁ ଏ ପିଲା ଖଣ୍ଡେ ମାଲିକ ହେବ ? (୩୬) ନାଜର କହିଲେ ସେ କଲ୍ଲା କିଣିବାକୁ ଢେର ଟଙ୍କା ଦରକାର । ବିଶାଖ ଦେଇ କିଛି ନ ବୁଝି ପାରି କହିଲେ "ନାହିଁ, ନାହିଁ, ତୁମେ ମାଲିକ ହେବ, ଏ ମାଙ୍କଡ଼ ପିଲା ଖଣ୍ଡେ କ'ଣ ହେବ ? ମୋ ପାଖରେ ପାଞ୍ଚ କୋଡ଼ି, ଦଶ କୋଡ଼ି ଟଙ୍କା ଅଛି ସବୁ ଦେବି, ତୁମେ ସାଇବଙ୍କୁ ଦେଇ ମାଲିକ ହୋଇ ଆସ—ମୋତେ ରାଣୀ କରେଇ ଦିଅ ।" (୩୭) ନାଜରାଣୀ ନାଜରଙ୍କ ମିଛ, ପ୍ରବଞ୍ଚନାମୟ ସ୍ତ୍ରୀ ପ୍ରେମକୁ ବୁଝି ପାରି ନାହାନ୍ତି । ରାଣୀ ହେବାର ଝୁଙ୍କ୍‌ରେ ନାଜରାଣୀଙ୍କର ନିର୍ବୋଧତାର ପରିଚୟ ବେଶୀ ମିଳେ । ନାଜରଙ୍କ ଦୁଷ୍କର୍ମ ଓ ପରିଣତି ପାଇଁ ନାଜରାଣୀ କୌଣସି ମତେ ଦାୟୀ ନୁହନ୍ତି । ବିଶାଖା ନିର୍ବୋଧା, ସାଧାରଣ ବୁଦ୍ଧିହୀନା (୩୮) ଏକଥା ସତ୍ୟ ନୁହେଁ । ସେ ଦୁର୍ବୃତ୍ତା ହୋଇ ପାରି ନ ଥାଏ ।

---

(୩୬) ମାମୁ—ପୃ. ୧୨୪

(୩୭) ଏଜନ—ପୃ. ୧୨୪

(୩୮) ଫକୀରମୋହନ ସମୀକ୍ଷା—ପୃ. ୩୪ ସୁରେନ୍ଦ୍ର ମହାନ୍ତି ।

ନାଜରଙ୍କ ପାଖରେ ଶାଶୁ, ଜାଆ ନାଆଁରେ ଯେଉଁ ମିଛର ଜାଲ ଖୁବ୍ ଚତୁରତାର ସହିତ ଖଞ୍ଜି ସ୍ୱାମୀଙ୍କ ମନକୁ ଭୁଲେଇ ପାରୁଛି, ଏବଂ ନାଜରଙ୍କ ଉଠକ ବସାରେ ଚଞ୍ଚଳତାର ଭାବଭଙ୍ଗୀକୁ ଦେଖି ସେ ଯେଉଁ ଚିନ୍ତାଧାରା ମନରେ ଆଣିଛି, ଏଥିରୁ ବିଶାଖା ଦେଇଙ୍କୁ ଅପର ବୁଦ୍ଧିହୀନା, ନିର୍ବୋଧା ବୋଲି ବୁଝାଯିବ । ନାଜରାଣୀ ଏକ ପକ୍ଷରେ ଗାଉଁଲି, ଗରିବର ଝିଅ, ଦ୍ୱିତୀୟରେ ଅଶିକ୍ଷିତା । ଫଳରେ ଚମ୍ପାର ବୁଦ୍ଧି ଓ ସାହସ ଚାଲିଚଳଣ ପାଖରେ ନିଷ୍ପ୍ରଭ ହୋଇ ପଡ଼ୁଛି । ନିଜ ଭଣଜା ନରୁବାବୁ ପ୍ରତି ଏହି ଅପତ୍ୟସ୍ନେହ: ନାଜରାଣୀ ଯେଉଁ କଠୋର, ରୁକ୍ଷ ବ୍ୟବହାର ଦେଖାଇଛି, ଏସବୁ ତ୍ରୁଟିକୁ ଦୂର କଲେ ନାଜରାଣୀ ସରଳା ବା ନିର୍ବୋଧା ନୁହନ୍ତି । ବିଶାଖା ଦେଇଙ୍କୁ ଅଶିକ୍ଷିତା କରାଇବାରେ ଫକୀରମୋହନ ଏକ ଗୁପ୍ତ ରହସ୍ୟ ସୃଷ୍ଟି କରିଥିଲେ ପରି ମନେହୁଏ । ବିଶାଖା ଦେଇଙ୍କର ଉପସ୍ଥିତ ବୁଦ୍ଧି ନ ଥିବାରୁ ଚମ୍ପା ଓ ନାକଫୋଡ଼ିଆ ମା'ର ଶିକାର ହୋଇଛି । ସାହସୀ ଚମ୍ପା ପାଖରେ ଏଇ ଗାଉଁଲି ନାରୀଟିର ବୁଦ୍ଧି 'ଗାରିମା, କୌଶଳ ନିଷ୍ପ୍ରଭ ହୋଇ ପଡ଼ୁଛି । ନାରୀ ହେଲେ ମଧ୍ୟ ନାଜରାଣୀଙ୍କ ହୃଦୟଟା କଠିନ, ନୀରସ । ପର ପିଲା ବୋଲି ତା ପ୍ରତି ଟିକିଏ ଦୟା, ଟିକିଏ ସ୍ନେହ ବିଶାଖା ଦେଇଙ୍କ ହୃଦୟରେ ନ ଥିଲା । ନିର୍ବୋଧତା ନାଜରାଣୀଙ୍କ ଅନ୍ୟତମ ଗୁଣ । କିନ୍ତୁ "ବିଶାଖା ଦେଇଙ୍କ ପରି ନିଜର ସୁଖ-ଦୁଃଖ ବର୍ତ୍ତମାନ ଓ ଭବିଷ୍ୟତ ସମ୍ବନ୍ଧରେ କୌଣସି ଚରିତ୍ରକୁ ଏପରି ଚିନ୍ତାଶୀଳ କିମ୍ବା ସାବଧାନ ହେବାର ଫକୀରମୋହନଙ୍କ ଉପନ୍ୟାସରେ ଦେଖାଯାଏ ନାହିଁ ।"(୩୯) ସ୍ୱାର୍ଥପରାୟଣ ଏହି ନାରୀଟି ହୃଦୟରେ ମାତୃତ୍ୱର ଝଲକ ଦେଇ ଫକୀରମୋହନ ତା

(୩୯) ସାହିତ୍ୟ ସାଧକ ଫକୀରମୋହନ—ପୃ. ୨୨୨, ଅଧ୍ୟାପକ ଚିନ୍ତାମଣି ଦାଶ ।

ଚରିତ୍ରରେ ବୈଚିତ୍ର୍ୟ ଫୁଟାଇଛନ୍ତି । ମାଆ ହେବାର ଅଭିପ୍ସା ନାଜରାଣୀଙ୍କର ଥିଲା । ଯେତେବେଳେ ନାକଫୋଡ଼ିଆ ମା' କହୁଛି ଅନ୍ତରରେ ଅନେକ ବାଂଝ ସ୍ତ୍ରୀଙ୍କର ଛୁଆ ପିଲା କରାଇ ଦେଇଛି । ଅପତ୍ୟସ୍ନେହ ନାଜରାଣୀଙ୍କ ଏଥିପ୍ରତି ବିଶ୍ୱାସ ଆସିଛି । ହଣାଖା ଦେଇଙ୍କର ନିର୍ବୋଧତା ଯୋଗୁ ଚମ୍ପକଳା ହନାଦ୍ୱିଧାରେ ତା କାର୍ଯ୍ୟ ସମ୍ପାଦନ କରିଗଲା । ଶ୍ରେଷ୍ଠ ଗରିବ ଘରର ଝିଅ ହଣାଖା ବଡ଼ ଘରକୁ ଆସିଥିଲେ ମଧ୍ୟ ସେଠି ଶ୍ରେଷ୍ଠ ବୁଦ୍ଧିର ପରିଚୟ ଦେଇଛି । ତେହେଲେ ତା'ର ନିର୍ବୋଧ୍ୟ ମା ଓ ଭାଇ ପ୍ରତି ପ୍ରବଳ ମମତା ଜନ୍ମିଛି, ଏବଂ ତାଙ୍କୁ ଆଣି ପାଖରେ ରଖିଛି ।

ଛମାଣ ଆଠଗୁଣ୍ଠର ଚମ୍ପା, ମଙ୍ଗୁଆ, ମାମୁଁ ଉପନ୍ୟାସର ଚମ୍ପକଳାକୁ ଫକୀରମୋହନଙ୍କ ନାରୀ ସୃଷ୍ଟିରେ ତୃତୀୟ ପର୍ଯ୍ୟାୟଭୁକ୍ତ କରାଯାଇ ପାରେ । ଏମାନେ ବେଶ୍ୟା ଓ ଇତର ଶ୍ରେଣୀର । ଏମାନଙ୍କ କୁଳ ଗୋତ୍ରର ପରିଚୟ ନାହିଁ । ଚମ୍ପା ଓ ଚମ୍ପକଳା କେବଳ ଫକୀରମୋହନଙ୍କ ସାହିତ୍ୟରେ ନୁହେଁ ସମଗ୍ର ଓଡ଼ିଆ ସାହିତ୍ୟରେ ଏକ ଅନନ୍ୟ ସୃଷ୍ଟି । ସେମାନଙ୍କ ଗତି ପ୍ରକୃତ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର । ଏ ଦୁଇଟି ଚରିତ୍ର ସୃଷ୍ଟି କରିବାରେ ଫକୀରମୋହନଙ୍କ କଳା କୁଶଳତାର ଶ୍ରେଷ୍ଠ ପରିଚୟ ପ୍ରଦାନ କରେ । ଏମାନେ ଓଡ଼ିଆ ସାହିତ୍ୟରେ ଯେତିକି ଜୀବନ୍ତ ସେତିକି ଜ୍ୱଳନ୍ତ ନିଦର୍ଶନ । "ଚମ୍ପା ଓଡ଼ିଆ ସାହିତ୍ୟର ଲେଡିମ୍ୟାକ୍‌ବେଥ୍ ।" (୪୦) ଚମ୍ପାର ରୂପ ବର୍ଣ୍ଣନା ଫକୀରମୋହନ ଖୁବ୍ ଚମତ୍କାର ଭାବେ କରିଛନ୍ତି । ଏପରି ରୂପ ବର୍ଣ୍ଣନା ଓଡ଼ିଆ ସାହିତ୍ୟରେ ଅଭିନବ । ଚମ୍ପା ମଙ୍ଗରାଜଙ୍କ ଭୁଆସରେ ପୋଇଲି ଭାବେ ଆସିଥିଲା । ନଜର

(୪୦) ଫକୀରମୋହନ ସମୀକ୍ଷା—ପୃ. ୩୭ ସୁରେନ୍ଦ୍ର ମହାନ୍ତି ।

ବୁଦ୍ଧି ଓ କୌଶଳ ବଳରେ ମଙ୍ଗରାଜଙ୍କୁ ପୋଷା ମାନେଇ ନିଜେ ନିଜେ ସାନ୍ତାଣୀ ହେବାର କାମନା କରିଥିଲା । ଚମ୍ପାର ପ୍ରଥମ ନାମ ଥିଲା ହରିକଳା । ହରିକଳା ଡାକଲେ ଚମ୍ପା ଛାଡ଼ୁ । ମଙ୍ଗରାଜଙ୍କ ଆଦେଶରେ ହରିକଳା ବଦଳରେ ସମସ୍ତେ ଚମ୍ପା ଡାକଲେ । ଚମ୍ପା ଖୁବ୍ ଧୂର୍ତ୍ତା, ବୁଦ୍ଧିମତୀ, ଚତୁରା । ଧନଲୋଭୀ ପରସ୍ୱାପହରଣ-କାରୀ ମଙ୍ଗରାଜଙ୍କ ନାଡ଼ି ଛପି ନିଜର କାର୍ଯ୍ୟ କରି ଚାଲିଛି । ମଙ୍ଗରାଜଙ୍କ ନର୍କଗାମୀ ହେବାରେ ଚମ୍ପା ଦାୟୀ । ମଙ୍ଗରାଜଙ୍କ ପରିଣତି, ଭଗିଆ ସାରିଆର ମୃତ୍ୟୁ ପାଇଁ ଚମ୍ପା ସମ୍ପୂର୍ଣ୍ଣ ଦାୟୀ । ଚମ୍ପା ଉପରେ ସମସ୍ତ ପାଠକ ଓ ସମାଲୋଚକମାନଙ୍କ ରାଗ ଓ ଘୃଣା ଜନ୍ମେ, ଯେତେବେଳେ ଦେଖା ପ୍ରତିମା ସାନ୍ତାଣୀଙ୍କୁ ତାଙ୍କ ସ୍ୱାମୀ ପ୍ରେମରୁ ବଞ୍ଚିତା କରିଛି ଏବଂ ରାତି ଅଧରେ ମଙ୍ଗରାଜଙ୍କ ସହିତ ମନ୍ତ୍ରଣା ଲିପ୍ତ ଥିବାବେଳେ ସାନ୍ତାଣୀଙ୍କୁ ଅବଜ୍ଞା କରିଛି । ଚମ୍ପାର ଉଦ୍ଦେଶ୍ୟ ଥିଲା ସାନ୍ତାଣୀଙ୍କୁ ମଙ୍ଗରାଜଙ୍କ ପାଖରୁ ହଟେଇ ନିଜେ ସାନ୍ତାଣୀ ବୋଲାଇବ । ଉଆସରେ କେହି ଚମ୍ପାକୁ ସାନ୍ତାଣୀ ବୋଲି ଡାକି ଦେଲେ ଖୁସି ତାର ଗର୍ବରେ ଫୁଲି ଉଠେ । ଯେତେବେଳେ ମଙ୍ଗରାଜ ଜେଲ୍ ଗଲେ ଚମ୍ପା ଜାଣିଲା ସେ ଆଉ ସାନ୍ତାଣୀ ହୋଇ ପାରିବ ନାହିଁ । ତେଣୁ କୌଶଳରେ ମଙ୍ଗରାଜଙ୍କ ପାଖରୁ ଗୃହକାଠି ଆଣି ସୁନାରୂପା ଗହଣାଗାଣ୍ଠି ଧରି ଗୋବିନ୍ଦା ଭଣ୍ଡାରି ସାଙ୍ଗରେ ପଳାଇ ଯାଇଛି । ଦେହ ବନ୍ଧନମୟରେ ମଙ୍ଗରାଜଙ୍କୁ ବଶୀଭୂତ କରିବା (୪୧) ଫକୀରମୋହନ କେଉଁଠାରେ ସୂଚନା ମଧ୍ୟ ଦେଇ ନାହାନ୍ତି । ଚମ୍ପା ପାଖରେ ମଙ୍ଗରାଜ ବଶୀଭୂତ ହେବା ମୂଳରେ ଥିଲା ଚମ୍ପାର ବୁଦ୍ଧି । ତାର କୌଶଳ ପାଖରେ ମଙ୍ଗରାଜ ହାରି ମାନିଥିଲେ । ତେଣୁ ଚମ୍ପାକୁ ଆଗ କରିଥିଲେ । ନିଷ୍ଠୁର ସାରିଆ ଭଗିଆ ପ୍ରତି ଟିକିଏ ବି ମମତା

(୪୧) ଫକୀରମୋହନ ସମୀକ୍ଷା— ପୃ. ୭୬ ସୁରେନ୍ଦ୍ର ମହାନ୍ତି ।

ଚମ୍ପାର ନ ଥିଲା । ପର ଅର୍ଥ ଆଣି ମଙ୍ଗରାଜଙ୍କୁ ଦେଇ ତାଙ୍କ ମନ କିଣିବାରେ ଚମ୍ପାର ଥିଲା ନିଶା । ମଙ୍ଗରାଜଙ୍କ ପ୍ରତିପକ୍ଷ ବାଘ ସିଂହ ବଂଶକୁ ଶର୍ଣ୍ଣି ମାଉସୀ ରୂପରେ ଯାଇ ଚମ୍ପା ଯେଉଁରି ଧଳିଘାତ କରି ଦେଲା, ଏଥିରୁ ତାର ପ୍ରଖର ବୁଦ୍ଧିର ପରିଚୟ ମିଳେ । ଉପସ୍ଥିତ ବୁଦ୍ଧି ଚମ୍ପାର ଥିଲା । ନାରୀ ମନକୁ ବୁଝିବାର ଶକ୍ତି ଚମ୍ପାର ଥିଲା । ହିତୋପଦେଶ ପରିଚ୍ଛେଦରେ ସାରିଆ ମନର ଦୁର୍ବଳତାର ସୁଯୋଗ ନେଇ ତାର ପ୍ରିୟ ନେତ ଗାଈ ଓ ଛ'ମାଣ ଆଠଗୁଣ୍ଠ ଜମିକୁ ଆଣି ମଙ୍ଗରାଜଙ୍କୁ ଦେଇଛି । ମଙ୍ଗରାଜଙ୍କୁ ମନଭୁଲା କଥା କହିବାରେ ଚମ୍ପା ପାରଙ୍ଗମ । ଚମ୍ପା ମଙ୍ଗରାଜଙ୍କୁ କହୁଛି, ସତେ ଯେପରି ସେ ସାନ୍ତାଣୀଙ୍କଠାରୁ ଆଦର ମଙ୍ଗରାଜଙ୍କ ଅଦସାର । "ମୋତେ କେହି ଗାଳି ଦେଇ ଗୁଞ୍ଜୁରୀ ମାରୁ ପଛକେ କାଟିବ ନାହିଁ, ମାତ୍ର ତୁମକୁ ପଦେ କଥା କହିଲେ ମୋ ହୃଦ ଫାଟି ହୋଇଯାଏ ।" (୪୨) ଚମ୍ପାର ବୁଦ୍ଧିକୁ ମଙ୍ଗରାଜ ତାରିଫ୍ ନ କରି ରହି ପାରନ୍ତି ନାହିଁ "ଦେଖ, ମୁଁ ତିନବରଷ ଲଗି ଚନ୍ଦୀକୁ ପାନ ନ ଥିଲି, ତୁ ସେପରି ହାତ ଦେଲୁ କାମ ସରେ ।" (୪୩) "ପୁରାଣ ବର୍ଣ୍ଣିତ ଏକ ରାକ୍ଷସୀର ସମାଜଗତ ରୂପାନ୍ତର ଏହି ଚମ୍ପା । ଗମ୍ଭୀର ସମୁଦ୍ରର ଏକ ଭୟାନକ ଅକ୍ଟୋପାସ୍। (୪୪) ଚମ୍ପା ଯିନା ଏତେ ଚତୁର, ବୁଦ୍ଧିମତୀ, ଧୂର୍ତ୍ତା, ମଙ୍ଗରାଜଙ୍କୁ କାବୁ କରି ରଖିଥିଲା, ହେଲେ ଧନର ମୋହରେ ଏତେ ମୁହ୍ୟମାନ ହୋଇ ପଡ଼ିଲା ଯେ ଗୋବନ୍ଦା ଭଣ୍ଡାରୀକୁ କାବୁ କରିବାର ବୁଦ୍ଧି ତାର ଲୋପ ପାଇଥିଲା । ଫଳରେ ସେହି ଗୋବିନ୍ଦା

---

(୪୨) ଛ'ମାଣ ଅଠଗୁଣ୍ଠ—ପୃ. ୫୬

(୪୩) ଏକ ନ—ପୃ. ୫୪

(୪୪) କଥାଶିଳ୍ପୀ ସେନାପତିଙ୍କ ଦୃଷ୍ଟି ଓ ଦର୍ଶନ—ପୃ. ୭୨
ଅଧ୍ୟାପକ ବାଳକୃଷ୍ଣ ଶତପଥୀ ।

ଭଣ୍ଡାରୀ ହାତରେ ପ୍ରାଣ ଦେଲେ । ଚମ୍ପାର ଏ ପରିଣତି ସୃଷ୍ଟି କରିବା ଥିଲା ଆଦର୍ଶବାଦୀ, ଯଥାର୍ଥବାଦୀ ଫକୀରମୋହନଙ୍କ ଉଦ୍ଦେଶ୍ୟ । ଚମ୍ପା ଛମାଣ ଆଠଗୁଣ୍ଠର ମୁଖ୍ୟ ଚରିତ୍ର । ଚମ୍ପା ଘଟଣାକୁ ଗତିଶୀଳ କରିଛି । ଚମ୍ପା କୁଚକ୍ରୀ, ଧୂର୍ତ୍ତା, ପିଶାଚିନୀ, ବୋଲି ତା ଉପରେ ଫକୀରମୋହନ ଓ ସମାଲୋଚକଗଣ ବିଷବାଣ ପ୍ରୟୋଗ କରିଅଛନ୍ତି । ମାତ୍ର ଚମ୍ପା ଥିଲା କଳାତ୍ମିକା । ମଙ୍ଗରାଜଙ୍କ ବଙ୍କା ଗୋଡ଼ ଯେଉଁ ବାଟ ଅଙ୍କା ଯାଉଥିଲା ତାହା ଚମ୍ପାର ଅଙ୍କା ଥିଲା । (୪୫) ମାମୁଁ ଉପନ୍ୟାସର ଚନ୍ଦ୍ରକଳା ଚମ୍ପାର ଅନୁରୂପା । ହେଲେ ଚମ୍ପା ପରି ଧୂର୍ତ୍ତ ନୁହେଁ । ଚମ୍ପା ମଙ୍ଗରାଜଙ୍କ ବିଷୟସ୍ଥ ପରିଣତି ପାଇଁ ଯେପରି ଦାୟୀ ତଥା ସେହିପରି ନାଜରଙ୍କ ପରିଣତି ପାଇଁ ଦାୟୀ । "ଚମ୍ପା ଚନ୍ଦ୍ରକଳା ଠେଣୁ ଗୋଟିଏ ଗୁଣ, ଗୋଟିଏ ଉପାଦାନରେ ବଡ଼ । ଚନ୍ଦ୍ରକଳା ଚମ୍ପାର କେବଳ ଅନୁକରଣ ନୁହେଁ—ବିକୃତି ।" (୪୬) ଏ କଥା ସ୍ୱୀକାର କରାଯାଇ ନ ପାରେ । ଗଭୀର ଭାବେ ଏ ଚରିତ୍ର ଦୁଇଟିକୁ ଅନୁଶୀଳନ କଲେ ଉଭୟଙ୍କ ମଧ୍ୟରେ ସାମ୍ୟ ଅପେକ୍ଷା ବୈଷମ୍ୟ ବେଶୀ । "ଚମ୍ପା ଓ ଚନ୍ଦ୍ରକଳା ଅତୃପ୍ତ ସ୍ୱର୍ଣ୍ଣ ବାସନାର ଦୁଇଟି ପ୍ରତିମୂର୍ତ୍ତି ।" (୪୭) ମଙ୍ଗରାଜଙ୍କ ଭୋଗ କରିବାର ବାସନା ଚମ୍ପାର କେଉଁଠାରେ ଦେଖାଯାଏ ନାହିଁ । ମାତ୍ର ଦେହକୁ ବିକ୍ରୀ କରି ଅର୍ଥ ଉପାର୍ଜ୍ଜନ କରିବା ତାର ଚେଷ୍ଟା ଥିଲା । ସେ ନାଜରଙ୍କୁ କେବଳ ଦେହ ଦାନ କରି ନାହିଁ ପ୍ରବୃତ୍ତିଟିକୁ ମଧ୍ୟ ଦେଇ ଦେଇ ତାକୁ ସର୍ବସ୍ୱାନ୍ତ କରିଛି । ଚମ୍ପାଠାରୁ ତଥା ଆହୁରି ବୁଦ୍ଧିମତୀ । ପାଖରେ ପ୍ରଭୂ

(୪୫) ଛମାଣ ଆଠଗୁଣ୍ଠ—ପୃ. ୪

(୪୬) ଫକୀରମୋହନଙ୍କ ସମୀକ୍ଷା—ପୃ. ୩୭ —ସୁରେନ୍ଦ୍ର ମହାନ୍ତି ।

(୪୭) ଔପନ୍ୟାସିକ ଫକୀରମୋହନ—ପୃ. ୧୩, ଅଧ୍ୟାପକ ଉପେନ୍ଦ୍ର ମିଶ୍ର ।

ଦମ୍ଭାଳ ଥିବା ସମୟରେ ନାଜରଙ୍କ ସେଠାରେ ଉପସ୍ଥିତିରେ ପ୍ରଭୁ ଦମ୍ଭାଳଙ୍କୁ ଧର୍ମ ଘର କନ୍ୟା ଚରିତ୍ରିକୁ ସମ୍ଭାଳି ନେଇଛି । ନାଜରାଣୀର ଦୁର୍ବଳତାର ସୁଯୋଗ ନେଇ ନାଜରଙ୍କୁ ଆପଣାର କରି କାର୍ଯ୍ୟ ହାସଲ କରେଛି । ନାଜରାଣୀ ଓର ମାଙ୍କିଡ଼ୀଠାକୁ କପର ଅନୁକୂଳ କରିବାକୁ ହେବ ସେ ବୁଦ୍ଧି ତାହାକୁ ଜଣା । ନିଜ ଦେହକୁ ସଜେଇ ପୁରୁଷ ମନ ହରଣ କରିବା ତାହାର ବେଉସା । 'ଗୁଡ୍ ଫ୍ରାଇଡେ' ଦିନ ସେ ଦେଶି ବୈଠକ କରି ଟଙ୍କା ଚୋରି କରିଯାଉଛି, ସେଥିରେ ତାହାର ଉନ୍ନତ ବୁଦ୍ଧିମତାର ପରିଚୟ ମିଳେ । ନଜରପୁର ଜଅସରୁ ସୁନା ଗହଣା ପୁଟୁଳା ଚୋରାଇ ଅଣିବାରେ ଲଳିତା ବେଶରେ ନାଜରଙ୍କୁ ସାହାଯ୍ୟ କରିଛି । ଚମ୍ପା ଅପେକ୍ଷା ତାହାର ଦମ୍ଭ ଓ ସାହାସ ବେଶୀ । ଜଗଙ୍କ ପାଖରେ ତମ୍ବର ସହିତ କହୁଛି "ମୁଁ ଟଙ୍କା ଚୋରି କରିଛି, କିଏ ଦେଖିଛି ? ମୋ ଘରୁ କାଢ଼ ମାଲ ବାହାର ନାହିଁ—କେଉଁଠି ନେଇ ଦୁଃମେମ କରି ମୋ ଘର ହାତରେ ସୁନ୍ଦରେ ଚିଖି ଦେଇ ଯାଉଛି ।"(୮) ଉପସ୍ଥିତ ବୁଦ୍ଧି ନେଇ ସେ ନାଜରାଣୀଙ୍କ ଯେପରି ଭାବୁ କରି ଦେଇଛି ସେଥିରୁ ତାର ଚତୁରତାର ପରିଚୟ ମିଳେ । ତାହା ଅନ୍ୟ ପାଳନ୍ତୁ କାର୍ଯ୍ୟହାସଲ କରିବାରେ ପାରଙ୍ଗମ । ଏପରିକି ଏହି କାମ ପାଇଁ ବାଘବର ଚୋଡ଼ି ମଧ୍ୟ ଧୋଇ ଦେଉଛି । ତାହାକୁ ଯେତେ ଦାନର ଗୃହରେ ଲୁଚିତ କରି ଦୋହାଟୋପ କଲେ ମଧ୍ୟ ତା ମନରେ ଅଦେତ୍ୟ ଅଶ୍ରୁବିନ୍ଦୁ ମାତୃତ୍ୱ ଝୁଡ଼ି ହୋଇ ଉଠୁଛି । ନରୁବାବୁଙ୍କ ପ୍ରତି ତା'ର ମମତା ଜନ୍ମିଛି । ନରୁବାବୁଙ୍କ ପ୍ରତି ନାଜରାଣୀର କଠୋର ଦୁର୍ବ୍ୟବହାରରେ ତାହା କହୁଛି—"ଦୁଷ୍ଟ ଅଣୀଠା କଣ ଦେବତା ପୁଅକୁ ଚିହ୍ନିବ ।"

---

(୮) ମାମୁଁ—ପୃ. ୨୦୮

(୪୯) ଚମ୍ପାଠାରେ ତଥା କାହାରି ସର୍ବନାଶ କରିନାହିଁ । ଦେହଭୋଗ ସମ୍ବୃତ ଅର୍ଥ ଭୋଗ ଥିଲା ତାର ଶ୍ରେଷ୍ଠ ଲକ୍ଷ୍ୟ । "ଚମ୍ପା ଫକୀରମୋହନଙ୍କ ସମକାଳୀନ ଓଡ଼ିଶାରେ ସହଗ୍ର ସ୍ଵାର୍ଥତାର ବାସ୍ତବାସ୍ତବ ଭୟଙ୍କର ରୂପ ।" (୫୦) ଏହାପରେ ଲଲିତ ଓ ବେଶ୍ୟା ଚରିତ୍ର ହେଉଛି ଛ'ମାଣ ଆଠଗୁଣ୍ଠର ମଙ୍ଗୁଆ । ମଙ୍ଗୁଆ କାଳୀରୁ ବିଧବା । ପୋଇଲା ସବଠାରେ ମଙ୍ଗରାଜଙ୍କ ଭୂଆସଂରେ ଥିଲା । ଶେଷରେ ମଙ୍ଗରାଜ ଜେଲ୍‌ରେ ମଙ୍ଗରାଜଙ୍କ ସାନ୍ଦୋହୁର ଗହଣା ଧରି ବାବାଜୀ ଲଳିତା ଦାସ ସଙ୍ଗେ ପଳାଇ ଯାଇଛି ।

ଫକୀରମୋହନଙ୍କ ଉପନ୍ୟାସରେ ଛ'ମାଣ ଆଠଗୁଣ୍ଠର ବାସ ସିଂହ ବଂଶର ବୋହୂ, ପୋଇଲି, ମାମୁଁ ଉପନ୍ୟାସର ଗାଁ ଭିତରେ ମାଇପିମାନଙ୍କୁ ଅନ୍ୟ ଏକ ଶ୍ରେଣୀଭୁକ୍ତ କରାଯାଇପାରେ । ମାମୁଁ ଉପନ୍ୟାସରେ ପୋଖରୀ ଭିତରେ ମନ୍ଦାମା, ଚମ୍ପୀଅପା, ଚେମିନାନି, କଉଶୁଲ୍ୟା, ପାରି ପ୍ରଭୃତି ଫକୀରମୋହନଙ୍କ ହାତରେ ଜୀବନ୍ତ ହୋଇ ପାରିଛନ୍ତି । ପଲ୍ଲୀ ଅଞ୍ଚଳର ଅନ୍ଧବିଶ୍ଵାସ, କୁସଂସ୍କାରକୁ ଏମାନଙ୍କ ମାଧ୍ୟମରେ ଫକୀରମୋହନ ପ୍ରକାଶ କରିଛନ୍ତି ।

ଫକୀରମୋହନଙ୍କ ଉପନ୍ୟାସର ନାରୀ ଚରିତ୍ର ଗୋଟିଏ ଉଚ୍ଛଳ ତରଙ୍ଗମୟୀ ସର୍ପ-କୂର୍ମୀର ସଙ୍କୁଳା କୂଳପ୍ଲାବିନୀ ଚର୍ମଣ୍ଵତୀ-ଏମାନେ ହେଲେ ଚମ୍ପା, ଚମ୍ପାକଳୀ, ବଣଧଳେଇ, ମଙ୍ଗୁଆ (ଛ'ମାଣ ଆଠଗୁଣ୍ଠ), ଆଉ ଗୋଟିଏ ଅନ୍ତଃସ୍ରୋତା ପୂତ ସଲିଳା କୂଳପ୍ଲାବିନୀ ଫଲଗୁ—ଏମାନେ ହେଲେ ସରସ୍ଵତୀଦେଈ, ମହାଦେଈ, ଗୃହମଣି,

(୪୯, ଏକ୍‌ଜ—ପୃ. ୧୨୮

(୫୦) ଫକୀରମୋହନଙ୍କ କୃତିତ୍ଵର ପ୍ରତିଫଳିତ ସମକାଳୀନ ସମାଜ ଚିତ୍ରର ଏକ ଅଧ୍ୟୟନ—(Ph. D. thesis) ପୃ. ୩୯୨ ଡ଼. ଅସିତ କବି ।

ହରପ୍ରିୟା, ସାନ୍ତାଣୀ । ଅନ୍ୟ ନାରୀମାନେ ସାଧାରଣ । "ପୁରୁଷ ଚରିତ୍ର ବିଭିନ୍ନତା ଅପେକ୍ଷା ନାରୀ ଚରିତ୍ର ବିଭିନ୍ନତା ଫକୀରମୋହନ ଅଧିକ ଜୀବନ୍ତ ଭାବେ ଅଙ୍କନ କରିଛନ୍ତି ।" (୫୧) ନାରୀ ଚରିତ୍ର ଚିତ୍ରଣରେ ଫକୀରମୋହନ ଖାଣ୍ଟି ସନାତନୀ ।" (୫୨) ଫକୀରମୋହନ ନାରୀ ଚରିତ୍ର ଗୁଡ଼ିକର ଗଭୀର ମନସ୍ତତ୍ତ୍ୱ ବିଶ୍ଳେଷଣ କରିବାର ସୁଯୋଗ ଦେଇ ନାହାନ୍ତି । ଘଟଣା ପ୍ରଧାନ ଉପନ୍ୟାସରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ କ୍ଷୀଣ ହୋଇପଡ଼େ । ତଥାପି କେତେକ ସ୍ଥଳରେ ନାରୀ ମନର ନିଭୃତ କୋଣରୁ କେତେକ ତଥ୍ୟ ଖୋଜି ବାହାର କରିବାକୁ ଫକୀରମୋହନ ଚେଷ୍ଟା କରିଛନ୍ତି । ଚନ୍ଦ୍ରମଣିର ବାହାଘର ପ୍ରସଙ୍ଗ ପଡ଼ିବାବେଳେ ବିଲେଇ କାନ ମୋଡ଼ିବା, ପରପିଲାକୁ ସାରିଆର ମାତୃତ୍ୱର ବିକାଶ, ନରୁବାବୁ ପ୍ରତି ଚମ୍ପକଳା ହୃଦୟରେ ଦୟା, ନାଜରଙ୍କ ବସାରେ ନାଜରାଣୀ ଚମ୍ପକଳାକୁ ଦେଖି ସେଥିପାଇଁ ପ୍ରତିହିଂସା ପ୍ରବୃତ୍ତ ହେବାର ନମୁନା ।

ନାରୀ ଚରିତ୍ର ଚିତ୍ରଣ କଲାବେଳେ ନୀତିବୋଧ, ସଂସ୍କାରବୋଧ ଓ ଭାଗ୍ୟବୋଧ ଫକୀରମୋହନ ତାଙ୍କର ବାସ୍ତବବୋଧ ଚିନ୍ତାଧାରାକୁ କୂଳ ଲଙ୍ଘିନୀ ନଦୀପରି ଗତି କରିବାକୁ ଛାଡ଼ି ଦେଇ ନାହାନ୍ତି । ନାରୀର ଯୌନ କାମନା ବର୍ଣ୍ଣନାରେ ଫକୀରମୋହନ ସୂଚନାଧର୍ମୀ । "ବନ୍ଧ୍ୟା

---

(୫୧) ସାହିତ୍ୟ ସାଧକ ଫକୀରମୋହନ—ପୃ. ୨୩୦ ଅଧ୍ୟାପକ ଚିନ୍ତାମଣି ଦାଶ ।

(୫୨) ଯୁଗସ୍ରଷ୍ଟା ଫକୀରମୋହନ—ପୃ. ୩୬ ସର୍ବେଶ୍ୱର ଦାସ ।

ସନ୍ତାନହୀନା ରମଣୀର କ୍ଷୁଧିତ, ବଞ୍ଚିତ ମାତୃତ୍ୱ ପ୍ରତି ଫକୀରମୋହନଙ୍କ ସହାନୁଭୂତିର ଅନ୍ତ ନାହିଁ ।" (୫୩) "ଫକୀର୍‌ମୋହନଙ୍କ ନାୟିକା କେବଳ ସେଇଠି ନରକର ଅତଳ ଗହ୍ୱରକୁ ଓହ୍ଲାଇ ଯାଇଛି, ଯେଉଁଠି ମାତୃତ୍ୱର ମଳୟ ସ୍ପର୍ଶରେ ତାର ଜୀବନ ବୃକ୍ଷ ପଲ୍ଲବିତ ହୋଇନାହିଁ ।" (୫୪)



(୫୩) ଏଜନ—ପୃ. ୨୩

(୫୪) ଏଜନ—ପୃ. ୨୬

## "ଅବସର ବାସରେ ଓ କବି ଫକୀରମୋହନ ।"

ଅଧ୍ୟାପକ—ଶ୍ରୀ ଶରତ୍‌ଚନ୍ଦ୍ର ଭଞ୍ଜ, ଏମ୍.-ଏ.

'ଅବସର ବାସରେ' ବିଭିନ୍ନ ବିଷୟକ ଏକ ଶହ ଛପ୍ପନବେଟି କବିତାର ଏକ ସମାହାର । ଏହି କବିତାଗୁଡ଼ିକ ଫକୀରମୋହନଙ୍କ ଉତ୍ତର ଜୀବନର ରଚନା । ଏହାର ରଚନାକାଳକୁ ୧୯୦୩ ରୁ ୧୯୧୭ ମଧ୍ୟରେ ସୀମିତ କରିଯାଇପାରେ । 'ଅବସର ବାସରେ'ର ଅଧିକାଂଶ କବିତା ବିଶ୍ୱନାଥ କରଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ' ଓ ବ୍ରଜସୁନ୍ଦର ଦାସଙ୍କ ସମ୍ପାଦିତ 'ମୁକୁର' ପତ୍ରିକା ପୃଷ୍ଠାରେ ପ୍ରକାଶ ଲାଭ କରିଥିଲା । ଦାରୁଣ ଦୁର୍ଯୋଗ କାଳରେ ଫକୀରମୋହନ ଏହି କବିତାଗୁଡ଼ିକୁ ରଚନା କରିଥିଲେ । ଦୀର୍ଘଦିନ ଧରି ଦାରୁଣ ଶାରୀରିକ ପୀଡ଼ାରେ ସେ ଶଯ୍ୟାଗତ ହୋଇ ପଡ଼ିଲେ । ଗୃହଆଡ଼େ ବିପଦଜାଲ ତାଙ୍କୁ ଅବସନ୍ନ କରି ପକାଇଥିଲା । ଏହି ଅବସରରେ କବିତା ରଚନା କରିବାର ପ୍ରବୃତ୍ତି ତାଙ୍କଠାରେ ଜାଗ୍ରତ ହୋଇଥିଲା । ପୀଡ଼ା ଜନିତ ଯନ୍ତ୍ରଣା ବା ଅନ୍ୟ ପ୍ରକାର ବିପତ୍ପାତ ହେତୁ ଚିତ୍ତ ଅବସନ୍ନ ହୋଇ ପଡ଼ିଲେ ଶାନ୍ତ ଓ ଧୈର୍ଯ୍ୟର ପ୍ରତିଷ୍ଠା ନିମିତ୍ତ ସେ କବିତା ରଚନାରେ ମନୋନିବେଶ କରନ୍ତି । ଏହି ସମୟରେ ପରିଦୃଷ୍ଟ ବସ୍ତୁସମୂହ ଓ ମନରେ ଉଦିତ ଭାବରାଜି ତାଙ୍କ କବିତାରେ ରୂପ ପରିଗ୍ରହ କରେ । ଦୁର୍ଯୋଗ ମୁହୂର୍ତ୍ତ ତାଙ୍କ ପକ୍ଷରେ କବିତା ସୃଷ୍ଟିର ପ୍ରକୃଷ୍ଟ ସମୟ । ଏ ବିଷୟ ଫକୀରମୋହନ 'ଅବସରବାସରେ' ୧ମ ଭୂମିକାରେ ସ୍ୱୀକାର କରିଛନ୍ତି । (୧)

(୧) ଫକୀରମୋହନ ଗ୍ରନ୍ଥାବଳୀ—୧ମ ଭାଗ—ପୃ. ୩୬୩ ଦ୍ରଷ୍ଟବ୍ୟ ।

"ଅବସର ବାସରେ" ସଙ୍କଳନରେ ସ୍ଥାନ ପାଇଥିବା କବିତାଗୁଡ଼ିକ ଦାର୍ଶନିକ, ଐତିହାସିକ, ପୌରାଣିକ, ଜୀବନ ଚରିତ ମୂଳକ, ଓ ମନସ୍ତାତ୍ତ୍ୱିକ ରଚନା । ଅଳ୍ପ ବୟସ୍କ ବାଳକ ବାଳିକା-ମାନଙ୍କର ଚିତ୍ତବିନୋଦକ ଅଥଚ ଉପଦେଶପୂର୍ଣ୍ଣ କେତେକ କବିତା ଏଥିରେ ସନ୍ନିବେଶିତ । ଧର୍ମପିପାସୁ ପରିଣତ ବୟସ୍କ ଲୋକ, କାବ୍ୟାମୋଦୀ ଶିକ୍ଷିତ ଯୁବକ, ତରଳମତି ଆମୋଦପ୍ରିୟ ବାଳକ ବାଳିକା ସମସ୍ତଙ୍କ ପଠନୋପଯୋଗୀ କବିତା ଏଥିରେ ସଂଗୃହୀତ । ଧର୍ମସମ୍ବନ୍ଧୀୟ କବିତାଗୁଡ଼ିକର ଭାବ ସାର୍ବଜନୀନ ଓ ସର୍ବବାଦୀ ସମ୍ମତ । କବିତାର ବିଷୟବସ୍ତୁର ସୀମା ବହୁବିସ୍ତୃତ । କ୍ଷୁଦ୍ର ଉତ୍କଳ, ବୃହତ୍ ଭାରତ ଓ ବିଶାଳ ପୃଥିବୀର ବିଭିନ୍ନ ବ୍ୟକ୍ତି, ବସ୍ତୁ ଓ ଭାବନା ଏଥିରେ ରୂପାୟିତ ।

ଆଲୋଚ୍ୟ କବିତା ପୁସ୍ତକଟି ସାତଗୋଟି ଅଧ୍ୟାୟରେ ବିଭକ୍ତ । ପ୍ରଥମ ଅଧ୍ୟାୟରେ "ଭଗବାନ"ଙ୍କ ସମ୍ପର୍କରେ କବିଙ୍କର ଜିଜ୍ଞାସା ପ୍ରକାଶ ପାଇଛି । ଦ୍ୱିତୀୟ ଅଧ୍ୟାୟରେ ବ୍ୟକ୍ତିଗତ, ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରର କେତେକ ବ୍ୟକ୍ତି ବିଶେଷ ଚର୍ଚ୍ଚିତ । ତୃତୀୟ ଅଧ୍ୟାୟରେ 'ସ୍ଥାନ ବିଶେଷ' ୪ର୍ଥ ଅଧ୍ୟାୟରେ 'ପ୍ରାକୃତିକ ବସ୍ତୁ' ୫ମ ଅଧ୍ୟାୟରେ "ମାନବଜୀବନ", ୬ଷ୍ଠ ଅଧ୍ୟାୟରେ "ଜନ୍ମ ଓ ମୃତ୍ୟୁ" ସମ୍ପର୍କରେ ଫକୀରମୋହନଙ୍କ ଚିନ୍ତା ପ୍ରକାଶ ପାଇଛି । ସପ୍ତମ ପର୍ଯ୍ୟାୟାନୁଭୁକ୍ତ କବିତାବଳୀରେ ବିଭିନ୍ନ ଚିନ୍ତାମୂଳକ କବିତା ସଂକଳିତ । ଫକୀରମୋହନ ଏହି ଅଧ୍ୟାୟର ନାମକରଣ କରିଛନ୍ତି "ବିବିଧ" ।

ଜୀବନର ଅନ୍ତିମ ପର୍ଯ୍ୟାୟରେ ସୁଦ୍ଧା ଉତ୍କଳ ଜନନୀଙ୍କ ସେବା ତାଙ୍କ ପକ୍ଷରେ ପରମ ଓ ଚରମ କର୍ତ୍ତବ୍ୟ ରୂପରେ ଦେଖାଦେଇଛି ।

"ମାତୃସ୍ତବ", "ମୋ କ୍ଷୁଦ୍ର ଶକ୍ତି", କବିର ସାନ୍ତ୍ୱନା" "ଜନମୀ ଉତ୍କଳ ଭାଷା"ରେ ଏହି ଭାବ ପ୍ରକଟିତ । ପ୍ରଥମ କବିତାଟିରେ ଓ ବିବିଧ ପର୍ଯ୍ୟାୟରେ ସଙ୍କଳିତ "ମୋ ଗୀତର ଭଣିତ" କବିତାରୁ ଫକୀରମୋହନଙ୍କ କାବ୍ୟାଦର୍ଶର ପ୍ରକୃଷ୍ଟ ପରିଚୟ ମିଳିଥାଏ । ସରଳ ଭାଷାରେ ଅନାୟାସରେ କବିତାମାଳା ରଚନା କରି ସେ ଉତ୍କଳ ଭାରତୀଙ୍କ ଗଳାରେ ଅର୍ପଣ କରିଛନ୍ତି । ଏହାଦ୍ୱାରା ତାଙ୍କର ଆକୁଳ ପ୍ରାଣର ଶାନ୍ତି ପ୍ରତିଷ୍ଠିତ ହୋଇଛି ଓ ମାତୃ ସାହିତ୍ୟ କଞ୍ଚିତ ପରିମାଣରେ ଅଭିବୃଦ୍ଧ ହୋଇଛି । କୀର୍ତ୍ତି ଅର୍ଜନ କରିବା ତାଙ୍କର ଲକ୍ଷ୍ୟ ନ ଥିଲା । ନବ ନବ ଭାବପ୍ରକାଶର ଶକ୍ତି ତାଙ୍କର ନାହିଁ । ତାଙ୍କ କବିତାରେ ଅଳଙ୍କାରର ପ୍ରାଚର୍ଯ୍ୟ ନାହିଁ, ଭାବର ଗାମ୍ଭୀର୍ଯ୍ୟ ନାହିଁ, ପଦର ମାଧୁର୍ଯ୍ୟ ନାହିଁ, ଛନ୍ଦବନ୍ଧ ଓ ତାନମାନର ବିଳାସ ନାହିଁ । ଦୈନନ୍ଦିନ ଜୀବନର କ୍ରିୟାକଳାପ, ଜାଗତିକ ବସ୍ତୁର ଯଥାଦୃଷ୍ଟ ଓ ଯଥାପ୍ରାପ୍ତରୂପ, ନିହାତି ବ୍ୟକ୍ତିଗତ ଅନୁଭୂତିକୁ ଉପଜୀବ୍ୟ କରି ଫକୀରମୋହନଙ୍କ କବିତାଗୁଡ଼ିକ ରଚିତ । ଫକୀର-ମୋହନଙ୍କ କବିତା ସରଳ, ସ୍ୱତଃସ୍ଫୂର୍ତ୍ତ, ଅନୁଭୂତିର ନିରନୁରଞ୍ଜିତ ପ୍ରକାଶ । ତାଙ୍କ ଦୃଷ୍ଟିରେ ସବୁ ଲୋକ କବି, କେହି ବିଶେଷ ଅଥବା କେହି ଅଳ୍ପ । "ମୂଢ଼କବି ଯଶପ୍ରାର୍ଥୀ" କବିତାରେ ଏହି ଭାବ ଅଭିବ୍ୟଞ୍ଜିତ । ନିଜ କାବ୍ୟାଦର୍ଶ ସମ୍ପର୍କରେ ସୂଚନା ଦେଇ ଫକୀରମୋହନ ଲେଖିଛନ୍ତି—

"ନାହିଁ ମୋ ହିଆର ଆଶା କୀର୍ତ୍ତିର ମନ୍ଦିର
ସେବିବି ମୋ ମାତୃଭାଷା କରିଅଛି ସ୍ଥିର ।

× × × × ×

ରୁଦ୍ରତାଳ ରୁଦ୍ରରସ ମୋର ସାଧାଶତ
ପାଇବ ପବିତ୍ର ଶାନ୍ତ କରୁଣା ସଙ୍ଗୀତ ।" (୨)

ଭଗବତ୍‌ପ୍ରୀତି କବିତାଗୁଚ୍ଛରେ କବିଙ୍କର ଭକ୍ତିଭାବନା ପ୍ରକାଶ ପାଇଛି । 'ମାତୃସ୍ତବ', 'ଶରଣ' 'ଚୌତିଶ ପ୍ରାର୍ଥନା', 'ଶାନ୍ତିଃ ଶାନ୍ତିଃ ଶାନ୍ତିଃ', 'ପ୍ରାଣେଶ', 'ସର୍ବବାଧାସଙ୍କଟ ନାମ', 'ଭସ୍ମମୂର୍ତ୍ତି', 'ମୋକ୍ଷ ଦ୍ୱ ଶକ୍ତି', ମାନବ ଅବସ୍ଥା', 'ହରି ସଂସ୍ପର୍ଶ', 'କାହିଁପାଇଁ ?' 'ପ୍ରେମ', "ଦାଅ ଦରଶନ", 'କରନ୍ତୁ କଲ୍ୟାଣ', 'କୃପା ନିଧାନ', 'ମାତଃ ବୋଲନ୍ତୁ', 'ସଞ୍ଜୀବନୀ ସୁଧା', 'ଚୈତନ୍ୟ ସ୍ୱରୂପ' ଓ 'ତୁମ୍ଭଙ୍କୁ ଅନାଇ' କବିତାରେ କବିଙ୍କର ଈଶ୍ୱରାନୁରାଗ ଅଭିବ୍ୟକ୍ତ । ଜରାଗ୍ରସ୍ତ ଫକୀର-ମୋହନ ଜୀବନର ମାୟାଜାଲରୁ ମୁକ୍ତ ହେବା ପାଇଁ ଈଶ୍ୱରାନୁଚିନ୍ତାରେ ତାଙ୍କର ଅବସର ଅତିବାହିତ କରିଛନ୍ତି । ଏହି ପର୍ଯ୍ୟାୟର ସମସ୍ତ କବିତା ବିଷାଦର ଗୀତ । ସୁଖ, ଦୁଃଖ, ଶୋକ, ଆଲୋକ, ଅନ୍ଧାର, ଉତ୍ସବ, ବିପଦ, ସ୍ୱଦେଶ, ବିଦେଶ, ନୈରାଶ୍ୟବିଷାଦ କମ୍ବା ଉଲ୍ଲାସରେ ଫକୀରମୋହନ ପ୍ରାଣେଶଙ୍କ ଚରଣରେ ଶରଣ ଭିକ୍ଷା କରି ଅଛନ୍ତି । ସାଗର ସଙ୍ଗମ ଲାଭ କରିବା ପାଇଁ ନଦୀ ଯେପରି ପରମ ଆବେଗରେ ଧାଇଁଯାଏ, ଭଗବାନଙ୍କ ପ୍ରେମ ସିନ୍ଧୁରେ ବୁଡ଼ିବା ପାଇଁ ଫକୀରମୋହନଙ୍କ ପ୍ରାଣନଦୀ ସେହିପରି ପ୍ରବାହିତ ହୋଇଛି । ମାୟାର ବନ୍ଧନ କାଟି, ଧନର ଲାଳସା ତ୍ୟାଗ କରି, ଜୀବନର ଆଶା ତୁଟାଇ ପ୍ରଭୁଙ୍କ ପଦପ୍ରାନ୍ତରେ ଜୀବନକୁ ଅର୍ପଣ କରି ଫକୀରମୋହନଙ୍କ ଆତ୍ମା ଶାନ୍ତିଲାଭ କରିବାକୁ ଚାହିଁଛି—

---

(୨) ମାତୃସ୍ତବ —ଫକୀରମୋହନ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ ପୃ. ୩୨୧

"ମୋ ଜୀବନ ସୁଖ-ସୂର୍ଯ୍ୟ ଯାଉଛି ତ ବୁଡ଼ି
ଚତୁର୍ଦ୍ଦିଗୁଁ ଛୋଟିଆସେ ତିମିର-କୁହୁଡ଼ି ।
ନିଭିଅଛି, ନିଭିଯାଉ, ସୁଖର ଆଲୋକ
ଜଳିଉଠୁ ହୃଦେ ଧ୍ୟାନ-ଚୈତନ୍ୟ- ପାବକ ।
ସଂସାର ସୌଭାଗ୍ୟ ସ୍ୱପ୍ନ ହୋଇଛି ଅତୀତ
ଗାଏ କେତେବେଳ ବସି ବିଷାଦର ଗୀତ ।"(୩)

ଦୀର୍ଘ ଜୀବନ-ପଥ ଅତିକ୍ରମ କରି ଜୀବନ ସମ୍ପର୍କରେ ବିଚିତ୍ର ଓ ବିଶାଳ ଅଭିଜ୍ଞତା ଫକୀରମୋହନ ଲାଭ କରିଛନ୍ତି । ନିର୍ମୋହ ମୂର୍ତ୍ତି ସଳିତା ପରି ସେ ଜୀବନ-ତୈଳ ନିଃଶେଷିତ କରି ଜଳି ଚାଲିଛନ୍ତି । ପ୍ରାଣ-ପ୍ରଦୀପ ଦୁର୍ବିପାକ-ପବନରେ ଥରି ଥରି ଉଠୁଛି । କେଉଁ ମୁହୂର୍ତ୍ତରେ ଲିଭି ଯାଇପାରେ । ଜୀବନର ଏହି ସ୍ୱାଭାବିକ ସତ୍ୟ ପ୍ରତି ଫକୀରମୋହନ ସଚେତନ । ମୃତ୍ୟୁର ନାମ ଉଚ୍ଚାରଣରେ ଜୀବନ-ରଙ୍କ ଆତଙ୍କିତ ହୁଏ । କିନ୍ତୁ ମୃତ୍ୟୁର ଶୀତଳ-ସ୍ପର୍ଶକୁ ଫକୀରମୋହନ ସ୍ୱାଗତ କରିଛନ୍ତି । ଏହା ଜୀବନ ମୁକ୍ତି । ଜୀବନ କ୍ଷଣିକ । ପୃଥିବୀ-ବାସ ତାଙ୍କ ପକ୍ଷରେ ପ୍ରବାସ । ଭବଲୀଳା ଉଦ୍‌ଯାପିତ କରି ଅମର ଆତ୍ମା ପରମପିତାଙ୍କର ଆଦେଶରେ ପଞ୍ଚମହାଭୂତ ନିର୍ମିତ ଶରୀର ପରିତ୍ୟାଗ କରି ପ୍ରାଣାରାମଙ୍କଠାରେ ଲୀନ ହେବ । ଅଶାଶ୍ୱତ ଶରୀର 'ଭସ୍ମମୁଷ୍ଟି'ରେ ପରିଣତ ହେବ । ଏହି ଅଧ୍ୟାୟରେ ଥିବା ଅନେକ କବିତାରେ ମୃତ୍ୟୁର ସ୍ୱାଗତିକା ଗାଇଛନ୍ତି ଫକୀରମୋହନ । ପ୍ରାଣେଶଙ୍କ ପାଦତଳେ ଅମର-ଆତ୍ମାର-ମିଳନ-ସଙ୍ଗୀତ ଫକୀରମୋହନଙ୍କ କଣ୍ଠରେ ଉଚ୍ଚରିତ ହୋଇଛି:—

(୩) ଶାନ୍ତିଃ ଶାନ୍ତିଃ-ଶାନ୍ତିଃ—ପ୍ରଥମ ଭାଗ ପୃ. ୩୨୩

"ରକ୍ଷିଛନ୍ତି ପିତା ମୋତେ ଜଗତ ସଂସାରେ
ପରକାଳେ ମିଳିବ ମୁଁ ଯାଇ ତାଙ୍କଠାରେ ।
ଅଛୁ ଦୂରେ ଯିବୁ ପାଶେ, ସୌଭାଗ୍ୟ ମହାନ
ଯିବୁ ଯେତେବେଳେ ପିତା କରିବେ ଆହ୍ୱାନ ।" (୪)

"ମାତଃ ବୋଲନ୍ତୁ" କବିତାରେ ଏହି ଘରବାହୁଡ଼ା ସଙ୍ଗୀତର କରୁଣ ସ୍ୱର ଅଭିମୂର୍ଚ୍ଛିତ । ଏହା ଯଥାର୍ଥରେ କବିଙ୍କ ପକ୍ଷରେ "Spiritual Home Coming" । କରୁଣ ଜୀବନର ବିସ୍ତୃତ ପୃଷ୍ଠଭୂମିରେ ଫକୀରମୋହନ ତାଙ୍କର ସକଳକର୍ମ ଓ ତା'ର ଫଳାଫଳ ପ୍ରଭୁଙ୍କ ପାଦରେ ସମର୍ପଣ କରିଛନ୍ତି । ମାତାଙ୍କ କରୁଣା-ସ୍ପର୍ଶରେ ସ୍ୱାର୍ଥାନ୍ଧକାରରେ ତାଙ୍କର ଅନ୍ତର-ରାଜ୍ୟ ଦିବ୍ୟ ଆଲୋକରେ ଉଦ୍‌ଭାସିତ ହୋଇ ଉଠିବ । ଧନ, ଜନ, ପ୍ରତିପତ୍ତି, ଖ୍ୟାତି ପ୍ରଭୃତି ବିତୃଷ୍ଣ ହୋଇ ଉଠିଛି ମନ । ଯାହା ପାଇଁ ବହୁ କଷ୍ଟରେ ସେ ଜୀବନ କଟାଇଛନ୍ତି, ସେ ସବୁ ଛାଡ଼ି ସେ ଏକାନ୍ତ ପଥରେ ଚାଲିଯିବେ । ଜୀବନ ହୋଇ ଉଠିଛି ତାଙ୍କ ପକ୍ଷରେ ଯନ୍ତ୍ରଣାମୟ ପ୍ରତୀକ୍ଷାର ସ୍ତର । ସଂସାର କଣ୍ଟକିତ ସରଣୀ । ମୃତ୍ୟୁ ଏହି ଯାତ୍ରାର ପରିସମାପ୍ତି । ଏହି ଦୀର୍ଘ ପ୍ରତୀକ୍ଷାର ଶେଷ ହେବ ଅନନ୍ତ ସହିତ ତାଙ୍କର ସାନ୍ତ-ଶାଶ୍ୱତ-ସତ୍ତାର ମିଳନରେ ।

ପ୍ରଥମ ଅଧ୍ୟାୟର କବିତାଗୁଡ଼ିକ ଆତ୍ମୋପଲବ୍ଧି-ମୂଳକ । ଏ ଗୁଡ଼ିକରେ ଶାଶ୍ୱତ ଭକ୍ତ ହୃଦୟର ଭାବନା ଅଭିବ୍ୟକ୍ତ । ଏହି କବିତାବଳୀ ରଚନା କରିବା ପୂର୍ବରୁ ଫକୀରମୋହନ ଉପନିଷଦ୍-ଗୁଡ଼ିକର ଭାଷାନୁବାଦ କରିଥିଲେ । ଉପନିଷଦ୍‌ର ଆଧାରରେ ସେ

(୪) "ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ" ଫକୀରମୋହନ ଗ୍ରନ୍ଥାବଳୀ—ପ୍ରଥମ ଭାଗ ପୃ. ୩୨୪ ।

ଉଲ୍ଲିଖିତ କବିତାରେ ବ୍ରହ୍ମର ଜଗତ୍ ବ୍ୟାପକତା ଓ ଜୀବ ସହିତ ବ୍ରହ୍ମର ସମ୍ପର୍କ ନିରୂପଣ କରିଛନ୍ତି । ଈଶ୍ୱରଙ୍କ ସତ୍ତାର ସ୍ୱରୂପ ଉପଲବ୍ଧି, ଭଗବତ୍ ସତ୍ତାରେ ଆତ୍ମବିସର୍ଜନ ଓ ପରିପୂର୍ଣ୍ଣ ଆତ୍ମ ସମର୍ପଣ କେଉଁ କେଉଁ କବିତାର ବିଷୟବସ୍ତୁ ହୋଇଛି । କିନ୍ତୁ ଏଥିରେ ଭକ୍ତ ହୃଦୟର ସ୍ୱାଭିମାନର ସ୍ପର୍ଶ କେଉଁଠି ନାହିଁ । କବିସୂର୍ଯ୍ୟ ବଳଦେବ ରଥଙ୍କ କବିତାରେ ତାଙ୍କ ହୃଦୟର ସୂକ୍ଷ୍ମ ଅଭିମାନ (ପ୍ରକାରାନ୍ତରେ ଅହଂକାର) ଯେପରି ପ୍ରକାଶ ପାଇଛି, ସେପରି ଭକ୍ତ ଫକୀରମୋହନଙ୍କ କୌଣସି ଗୋଟିଏ କବିତାରେ ପ୍ରକଟିତ ହୋଇ ନାହିଁ । ଏପରିକି ପରବର୍ତ୍ତୀକାଳରେ କାନ୍ତକବି ଲକ୍ଷ୍ମୀକାନ୍ତ କିମ୍ବା କୁନ୍ତଳାକୁମାରୀ କିମ୍ବା ବୈକୁଣ୍ଠନାଥଙ୍କ କବିତାରେ ଯେଉଁ ଅନୁରାଗମୟ ପ୍ରାଣପ୍ରବଣତାର ପ୍ରକାଶ ଘଟିଛି, ତାହା ଫକୀରମୋହନଙ୍କ କବିତାରେ ଦୁର୍ଲଭ । ଅଧିକନ୍ତୁ ଏ କବିତାମାନଙ୍କରେ ଜୀବନ ସତ୍ୟକୁ ଉପଲବ୍ଧିରେ ଆଣିଥିବା ପ୍ରାଜ୍ଞ ଫକୀରମୋହନଙ୍କ ଜୀବନଦର୍ଶନର ପ୍ରକାଶ ଘଟିଛି । ଓଡ଼ିଆ ଭକ୍ତି ସାହିତ୍ୟକୁ ଏହାର ଦାନ ଅ-କାଷ୍ଟର କର ।

"ଅବସର ବାସରେ"ର ବିଶେଷ ଅଧ୍ୟାୟରେ ସଙ୍କଳିତ ଅଧିକାଂଶ କବିତାବଳୀରେ ଫକୀରମୋହନଙ୍କ କବି ପ୍ରତିଭାର ଯଥାର୍ଥ ବିକାଶ ଘଟିଛି । କେତେକ ବ୍ୟକ୍ତି ବିଶେଷଙ୍କୁ ନେଇ ଏ କବିତାଗୁଡ଼ିକ ରଚିତ । ଏଥିରେ ସ୍ଥାନ ପାଇଛନ୍ତି ଓଡ଼ିଶାର କବି, ସମାଜ ସଂସ୍କାରକ, ରାଜା, ମହାରାଜା, ଧର୍ମୀୟ ମହାପୁରୁଷ ଓ ଐତିହାସିକ ବ୍ୟକ୍ତି ବିଶେଷ । ବିଶ୍ୱ ଇତିହାସର ନରନାରୀଙ୍କ ବୃତ୍ତାନ୍ତ ମଧ୍ୟ ଏହି ପର୍ଯ୍ୟାୟରେ ବର୍ଣ୍ଣିତ ହୋଇଛି । 'ମହାରାଜ କୃଷ୍ଣସିଂହ', 'ସୁବର୍ଣ୍ଣ ଶରଚନ୍ଦ୍ର', 'ମଧୁସୂଦନ ରାଓ', 'ପଦ୍ମନାଭ ନାରାୟଣ', 'ମଧୁସୂଦନ

ଦାସ "ଦାମୋଦର ପଟ୍ଟନାୟକ," "କବି ଅନ୍ନପୂର୍ଣ୍ଣା ', "ମାଧବୀ ଦେବୀ", "ନୀଳମଣି ବିଦ୍ୟାରତ୍ନ", "ବୈକୁଣ୍ଠନାଥ ବାହାଦୁର", ଜୀବନୀ ମୂଳକ କବିତା । ସମସାମୟିକ କାଳର ଓଡ଼ିଆ ସାହିତ୍ୟ ଓ ସମାଜକୁ ଏମାନଙ୍କ ଦାନର ବିବରଣୀ ଏହି କବିତାଗୁଡ଼ିକରେ ଦିଆଯାଇଛି । "ଉତ୍କଳ ଭ୍ରମଣଂ" କାବ୍ୟରେ ଫକୀରମୋହନ ଏହି ପରି ଅନେକ ବ୍ୟକ୍ତି ବିଶେଷଙ୍କୁ ସ୍ୱୀୟ ହାସ୍ୟ ରସିକତା ଦ୍ୱାରା ଅଭିନନ୍ଦିତ କରି ପ୍ରକାଶ କରିଛନ୍ତି । ନିଷ୍କପଟ ଉଦାର ଚେତନା-ଦ୍ୱାରା ଅନୁପ୍ରାଣିତ ହୋଇ ପୂର୍ବୋକ୍ତ କାବ୍ୟରେ ଚର୍ଚ୍ଚିତ ବ୍ୟକ୍ତିତ୍ୱ-ଗୁଡ଼ିକ ସ୍ୱାଭାବିକତାରେ ଅନନ୍ୟ ହୋଇ ଉଠିଛନ୍ତି । ଏହି ଦୃଷ୍ଟିରୁ ବିଚାର କଲେ, 'ଅବସର—ବାସରେ" ଦ୍ୱିତୀୟ ଅଧ୍ୟାୟରେ ସଙ୍କଳିତ କବିତାଗୁଡ଼ିକରେ ଦିଆ ଯାଇଥିବା ଚରିତ୍ର-ଚିତ୍ର ସର୍ବାଦୌ ଅପୂର୍ବ ଓ ଫକୀରମୋହନଙ୍କ ଲେଖନୀର ଆନ୍ତରିକ-ସ୍ପର୍ଶ ବିରହିତ ନିର୍ଜୀବ ପିତୁଳା ସଦୃଶ ପ୍ରତୀୟମାନ ହୁଅନ୍ତି । ଯଥା— "ଲୁକ୍ରେସିୟା," "କଳୁ ଓ ପତ୍ନୀ", "ସନ୍ଥ ତୁକାରାମ", "ଯୀଶୁ ଖ୍ରୀଷ୍ଟ', କବିତା ଐତିହାସିକ କବିତା । ଏହି ଅଧ୍ୟାୟରେ ସଙ୍କଳିତ କବିତାବଳୀ ମଧ୍ୟରୁ ପାଠକର ପ୍ରାଣକୁ ଆକର୍ଷଣ କରେ ଫକୀର ମୋହନଙ୍କ ବ୍ୟକ୍ତିଗତ ଜୀବନର ଦୁଃଖଦ ଅନୁଭୂତି ବହନ କରୁଥିବା କତେକ କବିତା, ଯାହାର ମୂଲ୍ୟ ସମଗ୍ର କବିତା ସଙ୍କଳନ ମଧ୍ୟରେ ଅନନ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି କବିତାଗୁଡ଼ିକରେ ଫକୀରମୋହନ ମୃତ ଶିଶୁପୁତ୍ର ମନୋମୋହନ, ସ୍ତ୍ରୀ କୃଷ୍ଣକୁମାରୀ ଓ ପିତାମହୀ କୁଚିଳା ଦେବୀଙ୍କ ସ୍ମୃତି ଚାରଣା କରିଛନ୍ତି ।

ଠାକୁର ମା କୁଚିଳା ଦେବୀ ଥିଲେ ଫକୀରମୋହନଙ୍କ ପ୍ରାଣ-ରକ୍ଷାକାରିଣୀ ଓ ପତ୍ନୀ କୃଷ୍ଣା କୁମାରୀ ଥିଲେ ତାଙ୍କର କାବ୍ୟ

ପ୍ରେରଣାର ଉତ୍ସ । ପରମ କଲ୍ୟାଣମୟୀ ଏଇ ଦୁଇ ନାରୀଙ୍କର ମଙ୍ଗଳମୟ ସ୍ପର୍ଶ ଫକୀରମୋହନଙ୍କ ଜୀବନକୁ କିପରି ପ୍ରଭାବିତ କରିଥିଲା ଫକୀରମୋହନ ତାଙ୍କର ଜୀବନଚରିତରେ ଏହାର ପ୍ରମାଣ ଛାଡ଼ି ଯାଇଛନ୍ତି । ପ୍ରିୟା ବିଚ୍ଛେଦରେ ଫକୀରମୋହନ ବିରହୀ ଚକୋର ପରି ନୀରବ ଅଶ୍ରୁପାତ କରି ଚାଲିଛନ୍ତି । ପାରିବାରିକ ଜୀବନର ଏହି ବ୍ୟଥା-ବିଧୁର ଅନୁଭୂତି ତାଙ୍କର କବିତାକୁ କରୁଣ— ସଜଳ କରିଛି । 'ପୁଷ୍ପମାଳା' କବିତା ସଂକଳନରେ 'ପୁଣି କି ଦେଖିବି ସେହି ସହାସ୍ୟ ବଦନ', 'ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ' କବିତା ଦ୍ୱୟରେ ପତ୍ନୀ-ବିଧୁର କବିର ପ୍ରାଣବାଣୀ ପ୍ରକାଶିତ । କୃଷ୍ଣକୁମାରୀଙ୍କ ମନରେ ଶାନ୍ତି ଓ ସ୍ଥିରତା ଆଣି ଦେବା ପାଇଁ ସେ ପୁରାଣ ଅନୁବାଦ କରିଥିଲେ ଓ ତାଙ୍କର ମନୋରଞ୍ଜନ ପାଇଁ ସେ କବିତା ରଚନା'ରେ ମନୋନିବେଶ କରିଥିଲେ । ଫକୀର-ମୋହନ ଅନେକସ୍ଥଳେ ଏକଥା ସ୍ୱୀକାର କରିଛନ୍ତି—'ମୁଁ ଯେ କବିତା ଲେଖୁଛି, ସେଥିରେ ଅନ୍ୟତମ କାରଣ, ମୋର ସ୍ତ୍ରୀ । ସେ ମୋ କବିତା ଶୁଣିବାକୁ ବଡ଼ ଭଲ ପାଉଥିଲେ । ପ୍ରଥମେ ତାଙ୍କର ମନୋରଞ୍ଜନ ସକାଶେ ମୁଁ କବିତା ଲେଖୁଥିଲି । ତାଙ୍କର ମୃତ୍ୟୁ-ପରେ, ମୋର ବ୍ୟାକୁଳତା ନିବାରଣ ନିମନ୍ତେ ହିଁ, ମୁଁ କବିତା ଲେଖେ ।' × × × ×

"ମୋର ଶୈଶବାବସ୍ଥାରେ ପିତାମାତା ଚାଲି ଯାଇଥିଲେ । ମୋ ଜୀବନଧାରିଣୀ, ରକ୍ଷାକାରିଣୀ ଠାକୁର ମା ମୋତେ ପରିତ୍ୟାଗ କରି ଚାଲି ଯାଇଥିଲେ । ଜ୍ଞାତିବନ୍ଧୁମାନଙ୍କର ମୋ ପ୍ରତି କିଛି ମାତ୍ର ସହାନୁଭୂତି ନ ଥିଲା । ମୋର ଦ୍ୱିତୀୟ ବିବାହ ସମୟରେ ମୋର ବୟସ ଊନତିରିଶ ଏବଂ କୃଷ୍ଣକୁମାରୀଙ୍କ ବୟସ ବାର ବର୍ଷ ମାତ୍ର ।

ସେହି ଅଳ୍ପ ବୟସରୁ ସେ ମନପ୍ରାଣ ଦେଇ ମୋର ମଙ୍ଗଳ କାମନା କରି ଆସୁଥିଲେ । ତାଙ୍କର ପୁଣ୍ୟ ସ୍ମୃତି ଅଦ୍ୟାବଧି ହୃଦୟରେ ପୋଷଣ କରି ରଖିଅଛି । ମୋର ସ୍ତ୍ରୀ-ବିୟୋଗର ଆଜକୁ ତେବିଶି ବର୍ଷ ଗତ ହୋଇ ଯାଇଛି । ବର୍ତ୍ତମାନ ଦେଖୁଛି ମୋର ହୃଦୟ ଶୂନ୍ୟମୟ । ମୋର ମନୋବେଦନା ଜଣାଇବାକୁ ଜଗତରେ ଆଉ କେହି ନାହିଁ । ମୋ ହୃଦୟରେ ଦାରୁଣ କଷ୍ଟ ଜାତ ହେଲେ, ଉଦ୍ୟାନସ୍ଥ ତାଙ୍କ ସମାଧି ନିକଟରେ ବସି ମୁଁ ସାନ୍ତ୍ୱନା ଲାଭ କରେ ।" (୫) 'ବଞ୍ଚି ମୁଁ ରହିବ ଆଜ କେଉଁ ସୁଖ ଆଶେ' (୭ମ ଅଧ୍ୟାୟରେ ସଙ୍କଳିତ 'ବିରହ' କବିତା ବର୍ଗର ଅନ୍ତର୍ଗତ), ଓ 'ବୃଦ୍ଧ ପଳାଶ' (ଷଷ୍ଠ ଅଧ୍ୟାୟ ଅନ୍ତର୍ଗତ) କବିତାରେ କବିଙ୍କ ନିଃସଙ୍ଗ ଜୀବନର ଛାୟାପାତ ଘଟିଛି—

"ଯାହା ମୁଖ ଚାହିଁ ରହିଥିଲି ଧୈର୍ଯ୍ୟ ଧରି
ସଂପଦେ ବିପଦେ ପାଶେ ଥିଲା ଛାୟା ପରି,
ସଙ୍କଟ କାଳରେ ଦେଉଥିଲା ଯେ ସାନ୍ତ୍ୱନା
ଯା' ସେବାରେ ଭୁଲିଥିଲି ରୋଗର ଯନ୍ତ୍ରଣା,
କାଟି ନେଇ ମାୟା ତୁଳି ଗଲା ସ୍ୱର୍ଗବାସେ
ବଞ୍ଚି ମୁଁ ରହିବ ଆଜ କେଉଁ ସୁଖ ଆଶେ । (୬)

'ସ୍ୱର୍ଗ କୁସୁମ', 'ମେଲାଣି', 'ନାସ୍ତି', 'ମୃତ୍ୟୁର ଛାୟା', 'ଦୟାବନ୍ତୀ', 'ଚାଲିଗଲ', 'ଦୂରେ', 'ଶେଷ ମିଳନ', 'ଦୃଢ଼ ବିଶ୍ୱାସ', 'ସେହି ନାମ', 'ଅନୁଭୂତି', 'କାହିଁ ସେ', 'କକ୍ଷଭ୍ରଷ୍ଟ ତାରକା,' 'ପୁନର୍ମିଳନ',

---

(୫) ଆତ୍ମଜୀବନୀ ରଚନା—ପୃ. ୩୨
(୬) ବଞ୍ଚି ମୁଁ ରହିବ ଆଜ କେଉଁ ସୁଖ ଆଶେ—ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ ପୃ. ୪୩୬ ।

କବିତାରେ କୃଷ୍ଣକୁମାରୀଙ୍କ ପବିତ୍ର ସ୍ମୃତି ରୋମନ୍ଥନ କରିଅଛନ୍ତି ଫକୀରମୋହନ । ନିଜ ଜୀବନର ପୃଷ୍ଠଭୂମିରେ ପରଲୋକଗତା ପତ୍ନୀଙ୍କ ସେବା, ତ୍ୟାଗ ଓ ପ୍ରେମର ସଂସ୍ମରଣ, ବର୍ତ୍ତମାନ ଜୀବନର ଅସାରତା, ନିଃସଙ୍ଗତା, ନିସ୍ପୃହବୋଧତା ପ୍ରତିପାଦନ ଓ ମୃତ୍ୟୁପରେ ପତ୍ନୀଙ୍କ ସହ ପୁନର୍ମିଳନର ତୀବ୍ର ଆକାଂକ୍ଷା ପୋଷଣ ଉପରୋକ୍ତ କବିତାଗୁଡ଼ିକର ବିଷୟବସ୍ତୁ । ବୈଚିତ୍ର୍ୟହୀନତା ସତ୍ତ୍ୱେ ଏଗୁଡ଼ିକ ବ୍ୟକ୍ତିଗତ ସ୍ପର୍ଶରେ ଉଜ୍ଜ୍ୱଳ, ଗଭୀର ଆନ୍ତରିକତାରେ ଅଭିମନ୍ତ୍ରିତ ଓ କାରୁଣ୍ୟବୋଧରେ ଉଦ୍ବେଳ । "କପୋତ ସଙ୍ଗୀତ" କବିତାରେ ଫକୀରମୋହନ କବିତା ସହିତ ତାଙ୍କ ଜୀବନର ସମ୍ପର୍କ ସୂଚିତ । 'କପୋତ ସଙ୍ଗୀତ' କବିଙ୍କର [illegible] । କପୋତୀର ମୃତ୍ୟୁରେ କ୍ଷୁବ୍ଧ କପୋତର ଶୋକ ଅନ୍ତରାଳରେ କୃଷ୍ଣକୁମାରୀଙ୍କ ବିୟୋଗରେ କ୍ଷୁବ୍ଧ ଫକୀରମୋହନଙ୍କ ଶୋକୋଚ୍ଛ୍ୱାସ ପ୍ରକାଶିତ । ବିଧୁର କବିଆତ୍ମାର ଯଥାର୍ଥ ପରିଚୟ ଏଥିରେ ଦିଆଯାଇଛି—

"ଥାଏ କପୋତ ଏକା ପଡ଼ି ଝାଡ଼ରେ
ଦିନକେ କାଟେ ଧ୍ୟାନ ଚିନ୍ତା ମନରେ,
ନାହାକୁ ଭଜୁଥାଏ ଜାଣେ ତା ମନ
ନିରତେ ଡାକେ ବସି କରେ ରୋଦନ ।
ବଡ଼ ଦୁଃଖରେ ସେ ହୋଇ ଦୁଃଖିତ
ଏହାକୁ ଯେବେ ଭାବେ ବୋଲି ସଙ୍ଗୀତ,
କେବଣ ଘଟେ ଥାଇ ମନରେ ବ୍ୟଥା
ଜଣାଏ ପ୍ରଭୁପାଦରେ ମନର କଥା ।
ନାହିଁ ସଙ୍ଗୀତ ଆଉ ନାହିଁ ତା ଅନ୍ତ
ଗାଇବି ବସି ସେ ଜୀବନ ଯାବନ୍ତ

କ ସୁଖ ପାଏ ସେହି ସଙ୍ଗୀତ ଗାନେ
ତା' ବିନା ମନ କଥା ଆଉ କେ ଜାଣେ ।
ଏ ତ ସଙ୍ଗୀତ ନୁହେଁ, ତା ମର୍ମ ବ୍ୟଥା
ପ୍ରକାଶ କରୁଥାଏ ମନର କଥା ।" (୭)

ଶିଶୁ ପୁତ୍ର ମନମୋହନ ଓ ପୁଣ୍ୟବତୀ ଠାକୁର ମା କୁନ୍ତଳା ଦେବୀଙ୍କର ସ୍ମୃତି ରୋମନ୍ଥନରେ ଫକୀରମୋହନଙ୍କ ହୃଦୟର ସହଜ କବିତ୍ୱଭାବ ଉଚ୍ଛ୍ୱସିତ ହୋଇଛି । ସ୍ମୃତି ଏହି କବିତାର ଏକମାତ୍ର ସମ୍ବଳ । କାରୁଣ୍ୟ ଏହାର ପ୍ରାଣରେ ବିଜଡ଼ିତ । ଏଥିରେ ମୃତ-ବ୍ୟକ୍ତିଙ୍କର ଗୁଣ, କର୍ମ ଓ ଆଦର୍ଶର ପରିଚୟ ଦେବା ସଙ୍ଗେ ସଙ୍ଗେ ତାଙ୍କର ଅଭାବରେ କବି ହୃଦୟରେ ଯେଉଁ କାରୁଣ୍ୟ-ଭାବ ଉଦୟ ହୋଇଛି, ତା'ର ପରିମାଣ ଓ ପରିଣାମ ସୂଚିତ ହୋଇଛି ।

ତୃତୀୟ ଓ ଚତୁର୍ଥ ଅଧ୍ୟାୟରେ ଯଥାକ୍ରମେ କେତେକ ସ୍ଥାନ ବିଶେଷ ଓ କେତେକ ପ୍ରାକୃତିକ ବସ୍ତୁ ଉପରେ ଆଧାରିତ କବିତା ସଂକଳିତ । ଏହି କବିତାଗୁଡ଼ିକ ବୈଚିତ୍ର୍ୟହୀନ । ୪ର୍ଥ ପର୍ଯ୍ୟାୟରେ ଥିବା "ଗର୍ଦ୍ଦଭର ସୂକ୍ଷ୍ମବୁଦ୍ଧି", "ଶଂଙ୍ଖୀ ବିରାଡ଼ି ଓ ବଣୀ ପକ୍ଷିଣୀ," "ଭୂଆଁ ବିରାଡ଼ି ଓ କାଳିଆ କୁକୁର" କବିତା ତିନିଟି କଥା-କବିତା । ଏହାର ଶୈଳୀ ପୌରାଣିକ, ତେଣୁ ଆବୃତ୍ତିଧର୍ମୀ । ଅପରିଣାମ ଦର୍ଶିତା, ସ୍ୱାର୍ଥପରତା ଓ ଈର୍ଷାପରାୟଣତା ଏହି ଉପାଖ୍ୟାନଗୁଡ଼ିକ ଜରିଆରେ ସମାଲୋଚିତ । ଚପଳମତି ବାଳକମାନଙ୍କୁ ଗଳ୍ପର ଅନ୍ତରାଳରେ ନୀତି ଉପଦେଶ ଦେବା ଲକ୍ଷ୍ୟରେ ଏଗୁଡ଼ିକ ରଚିତ ।

ପଞ୍ଚମ ଅଧ୍ୟାୟରେ ସଂକଳିତ କବିତାଗୁଡ଼ିକରେ "ମାନବ ଜୀବନ" ସମ୍ପର୍କୀୟ କେତେକ ସନ୍ଦେଶ ପ୍ରକାଶ ପାଇଛି । କବିଙ୍କର

(୭) "କପୋତ ସଙ୍ଗୀତ" ଗ୍ରନ୍ଥାବଳୀ ପ୍ରଥମ ଭାଗ ପୃ-୫୬୯

ମାନବିକ ମୂଲ୍ୟବୋଧ ଦ୍ୱାରା ଏଗୁଡ଼ିକ ନିୟନ୍ତ୍ରିତ । ଜୀବନର ଲକ୍ଷ୍ୟ, ଆତ୍ମା-ପରମାତ୍ମା ସଂପର୍କ, ସନ୍ନ୍ୟାସ ଧର୍ମର ମହତ୍ତ୍ୱ, ସମାଜରେ ନୀତି, ଆଦର୍ଶ ଓ ମାନବିକତାର ସ୍ଥାନ ଇତ୍ୟାଦି ନାନା ପ୍ରସଙ୍ଗ ଉପରେ ଏଗୁଡ଼ିକ ଆଧାରିତ । "ହିନ୍ଦୁ ବିଧବା", "ରାମରଥ କଥା", "ଚନ୍ଦ୍ରପ୍ରଭାର ନିର୍ଜଳ ଏକାଦଶୀ", "ବାର ବିଳାସିନୀ" କବିତାରେ ହିନ୍ଦୁ ଧର୍ମ ତଥା ବ୍ରାହ୍ମଣ ଶାସିତ ସମାଜରେ ଥିବା କୁସଂସ୍କାର, ଅନ୍ଧ-ବିଶ୍ୱାସ ଓ ଅନ୍ୟାୟ ପ୍ରତି ଲେଖକଙ୍କର ବିଦ୍ରୋହ ଘୋଷଣା ତାଙ୍କର ସ୍ୱାଧୀନ ମନୋବୃତ୍ତିର ପରିଚାୟକ। 'ଉତ୍କଳ କୃଷକ' କବିତାରେ ଓଡ଼ିଶାର କୃଷିମାନଙ୍କ ପ୍ରତି ବ୍ରିଟିଶ୍ ସରକାରଙ୍କର ଅବିଚାର, ପକ୍ଷପାତିତା ଓ ବୈମାତୃକଭାବର ସ୍ୱରୂପ ଉଦ୍‌ଘାଟିତ । ପ୍ରଜାସତ୍ତ୍ୱ ଆଇନର ଭୟଙ୍କର ପରିଣତି ପ୍ରତି ଫକୀରମୋହନ ସଚେତନ ହୋଇ ଏହାର ଅସାରତା ଘୋଷଣା କରିଛନ୍ତି । ଏହି ଅଧ୍ୟାୟରେ ସ୍ଥାନ ପାଇଥିବା "ମୁଁ ହାଟ ବାହୁଡ଼ା" କବିତାରେ ସମସାମୟିକ ଓଡ଼ିଶାର ଚିତ୍ର ଉତ୍ତୋଳିତ । ଊନବିଂଶ ଓ ଆଦ୍ୟବିଂଶ ଶତାବ୍ଦୀ, ଏହି ଦୀର୍ଘ କାଳଧାରାରେ ଓଡ଼ିଶାର ଶିକ୍ଷାନୁଷ୍ଠାନ, ନ୍ୟାୟାଳୟ, ସାମାଜିକ ବ୍ୟବସ୍ଥା, ସାହିତ୍ୟର ପାଠକ, ଲେଖକ ଓ ପ୍ରକାଶକ ସମସ୍ୟାଠାରୁ ଆରମ୍ଭ କରି ଓଡ଼ିଶାର ଅମଲାତାନ୍ତ୍ରିକ ଶାସନ ବ୍ୟବସ୍ଥା, ସହରର ଅଙ୍ଗରେ ଉପଦଂଶ ପରି ବଢ଼ି ଉଠୁଥିବା ବେଶ୍ୟାଳୟ, ବିଲୟମାନ ପାରମ୍ପରିକ ପୁରୋହିତ ପ୍ରଥା ଇତ୍ୟାଦି ବିଷୟ ଅନୁଭବୀ ଫକୀରମୋହନଙ୍କ ଲେଖନୀରେ ଜୀବନ୍ତ ଭାବେ ରୂପ ପାଇଛି । ବିଶାଳ ସଂସାର-ସରଣୀରେ ଫକୀରମୋହନଙ୍କ ଉଦ୍ଦେଶ୍ୟପୂର୍ଣ୍ଣ ପଦଯାତ୍ରାର ବିଚିତ୍ର ଅନୁଭୂତି ତାଙ୍କ ବ୍ୟକ୍ତିତ୍ୱର ଆଲୋକରେ ଉଦ୍ଭାସିତ ହୋଇ ଅନନ୍ୟ ରସ ସଂପଦରେ ରୂପାନ୍ତରିତ ହୋଇ ଯାଇଛି "ମୁଁ ହାଟ ବାହୁଡ଼ା" କବିତାରେ ।

ଷଷ୍ଠ ଅଧ୍ୟାୟରେ ଜରାଗ୍ରସ୍ତ ଫକୀରମୋହନଙ୍କ ଜୀବନାନୁଭୂତି ପ୍ରକାଶ ପାଇଛି । ଏହି କବିତାଗୁଡ଼ିକ ପରଲୋକର ଯାତ୍ରା ସଙ୍ଗୀତ । “ବୁଢ଼ା ପଲାଶ” ଶିରୋନାମାରେ ରଚିତ କବିତାଟିରେ ବୃଦ୍ଧ ଫକୀରମୋହନଙ୍କ ଜୀବନର ଅସାରତା, ନିଃସଙ୍ଗତା, ଅସହାୟତା ପ୍ରକଟିତ । ‘ସାବଧାନ’, ‘ଅନନ୍ତ ବିଶ୍ରାମ’, ‘ମୃତ୍ୟୁ ଶଯ୍ୟାରେ’, ‘ମୁଁ ବୈରାଗୀ’, ‘ମୃତ୍ୟୁର ନିମନ୍ତ୍ରଣ’, ‘ବିଦାୟ ପ୍ରାର୍ଥନା’, ‘ଶେଷ ପ୍ରାର୍ଥନା’, ‘ଚରମ ଚିନ୍ତା’, ‘ମହା ନିମନ୍ତ୍ରଣ’, ‘ଜୀବନ ଚିତ୍ର’, ‘ନିତ୍ୟଧାମ ଆରେ’, ‘କାହାକୁ ଭରସା’, ‘ସ୍ନେହ ନିମନ୍ତ୍ରଣ’ ଓ ‘ଜୀବନର ପରିଣାମ’, କବିତାଗୁଡ଼ିକରେ ମୃତ୍ୟୁ ପାଇଁ ଫକୀରମୋହନଙ୍କ ଆକୁଳ ପ୍ରତୀକ୍ଷାର ପରିମାଣ ସୂଚିତ । “ଜୀବନର ପରିଣାମ” କବିତାରେ ସଂକ୍ଷିପ୍ତ ଭାବରେ ଜୀବନର ଲକ୍ଷ୍ୟ ଉଦ୍‌ଘାଟିତ—

“ପାନ୍ଥଶାଳେ ଅନନ୍ତାଗାର, ଅବିଶ୍ରାମ ସୀମାହୀନ
କ୍ଷଣସ୍ଥାୟୀ ବର୍ତ୍ତମାନ, ପରିଣାମ ଅନିର୍ଣ୍ଣିତ ।
ଛିନ୍ନ ହେବ ସବୁ ଗ୍ରନ୍ଥି, ଅନନ୍ତେ ଅନନ୍ତ ଯୋଗ
ଭାସି ଭାସି ମହାନନ୍ଦେ, କର୍ମଫଳ ଭୋଗ ମାତ୍ର ।” (୮)

ବିବିଧ ପର୍ଯ୍ୟାୟରେ ( ୭ମ ଅଧ୍ୟାୟ ) ସଂକଳିତ ଅଧିକାଂଶ କବିତାଗୁଡ଼ିକରେ କବି ଦୃଷ୍ଟିରୁ କିଛି ନୂତନତାର ସନ୍ଧାନ ମିଳେ ନାହିଁ । “କେଉଁ ଜାତି ବଡ଼ର”, “ଜନନୀ ଉତ୍କଳ ଭାଷା” କବିତା ଦୁଇଟିରେ ଉତ୍କଳ ଭାଷା ପ୍ରତି କବିଙ୍କର ଅନୁରାଗର ପରିଚୟ ମିଳିଥାଏ । ପ୍ରଥମ କବିତାରେ ଫକୀରମୋହନ ସ୍ୱଭାଷାଭିମାନ ଜାତିକୁ ବଡ଼ର ବୋଲି ଅଭିହିତ କରିଛନ୍ତି । “ମୋହର ଗଡ଼ୁ” କବିତାରେ ଷଡ଼ରିପୁମାନଙ୍କର ମାନବ ଜୀବନ ଉପରେ କୁପ୍ରଭାବ ସୂଚିତ ।

(୮) ଜୀବନର ପରିଣାମ—ଫକୀରମୋହନ ଗ୍ରନ୍ଥାବଳୀ ପ୍ରଥମ ଭାଗ--ପୃ, ୪୩୫

ବାଲ୍ମୀକିଙ୍କ କବିତ୍ୱର ସ୍ଫୁରଣ ପାଇଁ ସର୍ବଜନ ବିଦିତ କ୍ରୌଞ୍ଚ-ବ୍ୟାଧ କିମ୍ବଦନ୍ତୀ ଆଧାରରେ "କବିତା-ବହିଗା" କବିତା ରଚିତ । ଏହି ଅଧ୍ୟାୟ ଅନ୍ତର୍ଭୁକ୍ତ "କବିର କଳହପ୍ରିୟା ସ୍ତ୍ରୀ" ଓ "ମୋ କବିତାର ଭଣିତା" କବିତାଦ୍ୱୟରେ ଯଥାକ୍ରମେ ଫକୀରମୋହନଙ୍କ ସ୍ୱଭାବ ରସିକତା ଓ କାବ୍ୟାତ୍ମବୋଧର ପ୍ରକାଶ ଘଟିଛି । ପ୍ରଥମଟିରେ ଖୁବ୍ ସମ୍ଭବତଃ ଫକୀରମୋହନଙ୍କ ପ୍ରଥମା ପତ୍ନୀଙ୍କ ଅନୁଦାର ଆଚରଣର ଛାୟାପାତ ଘଟିଛି । ଏହାର ଭାଷା ମଞ୍ଜୁଳ, ପ୍ରକାଶ ଭଙ୍ଗୀରେ ଶୁଦ୍ଧ ହାସ୍ୟରସିକତାର ପ୍ରକାଶ ।

'ଅବସର ବାସରେ' କବିତା ପୁସ୍ତକରେ ଫକୀରମୋହନଙ୍କ ବ୍ୟକ୍ତିମାନସ ଓ ସ୍ରଷ୍ଟାମାନସର ଏକୀଭୂତ ରୂପ ପରିଲକ୍ଷିତ । ବିଷୟ ନିର୍ବାଚନରେ ଅଭିନବତ୍ୱ, ଆଙ୍ଗିକର ଅବାଧବଦ୍ଧତା ଓ ବୈଚିତ୍ର୍ୟ-ହୀନତା; ରସ ସମାବେଶର ଏକ ରୂପତା ହେତୁ ଅଧିକାଂଶ କବିତା ଚିରନ୍ତନ ଶିଳ୍ପମୂଲ୍ୟ ହରାଇ ବସିଛନ୍ତି । ବ୍ୟକ୍ତିଗତ ଜୀବନବୋଧରେ ଏହି କବିତାଗୁଡ଼ିକ ଭାସ୍ୱର । କବିତାର ଭାଷା ସରଳ, ନିରାଭରଣ ଓ ଭାବ ଅସାଧାରଣ ଭାବେ ସ୍ୱଚ୍ଛତାପ୍ରାପ୍ତ । ଫକୀରମୋହନଙ୍କ ମୁକ୍ତ ମାନସର ପରିଚୟ କେତେକ କବିତାରୁ ମିଳିଥାଏ । ଫକୀର-ମୋହନଙ୍କ କବିତାରେ ରାଧାନାଥଙ୍କ ସୌନ୍ଦର୍ଯ୍ୟ ମୁଗ୍ଧତା ଓ ରୋମାଣ୍ଟିକ୍ ପ୍ରାଣପ୍ରଚୁରତା କିମ୍ବା ମଧୁସୂଦନଙ୍କ କବିତାର ବୋଧିପ୍ରାପ୍ତ ମନନଶୀଳତା ଓ ସ୍ୱଭାବ-ଋଜୁତା ନ ଥିଲେ ସୁଦ୍ଧା ଆମର ବ୍ୟାସକବି ସରସ୍ୱତୀ ଫକୀରମୋହନ ଯେ ଦେଶ କାଳର ସୀମା ଅତିକ୍ରମ କରିଛନ୍ତି, ଏହା ଅସ୍ୱୀକାର କରି ହୁଏ ନାହିଁ । 'ଅବସର ବାସରେ' ତାଙ୍କର ନିଃସଙ୍ଗ ଜୀବନର ଅକପଟ ଭାଷ୍ୟ, ତାଙ୍କ ଜୀବନର ପ୍ରାଣବନ୍ତ ପ୍ରତିଫଳନ । ଶେଷ ଜୀବନରେ ରଚିତ ଏହି

ଲେଖାଗୁଡ଼ିକରେ 'ଉତ୍ତେଜନା' ଅଛି; କିନ୍ତୁ କଳା ନାହିଁ, ଏଥିରେ 'ସରଳ ଭାଷା' ଅଛି, କିନ୍ତୁ କବିତାର ମୂଳାଧାର ଭାବବିନ୍ୟାସ ନାହିଁ; ଏଥିରେ 'ଜୀବନ' ଅଛି, କିନ୍ତୁ ସେ ଜୀବନ ସୃଷ୍ଟିକଳା ବିବର୍ଜିତ । ସେଇ ହେତୁରୁ ଏ କବିତାମାନଙ୍କରେ ସୃଷ୍ଟିମାନସ ଅପେକ୍ଷା ତାଙ୍କର ବ୍ୟକ୍ତିମାନସ, ଜୀବନ ଦର୍ଶନ, ଭଗବତ୍ ପ୍ରୀତି, ଉଦାରମାନବିକତା ଓ ଦେଶପ୍ରାଣତା ପ୍ରଧାନ ହୋଇ ଦେଖା ଦେଇଛନ୍ତି ।" (୯) ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ପ୍ରାଣ-ପ୍ରତିଷ୍ଠାତା ଫକୀରମୋହନ, କବି ଭାବରେ ନିଷ୍ପ୍ରଭ ।

## ସହାୟକ ପୁସ୍ତକ ସୂଚୀ :—


୧ । ଓଡ଼ିଆ ସାହିତ୍ୟର ଇତିହାସ—ନଟବର ସାମନ୍ତରାୟ

୨ । ଓଡ଼ିଆ ସାହିତ୍ୟର ଇତିହାସ—ମାୟାଧର ମାନସିଂହ

୩ । ଆଧୁନିକ ଓଡ଼ିଆ କାବ୍ୟଧାରା (୧ମ ଭାଗ)—
ନରେନ୍ଦ୍ର ନାଥ ମିଶ୍ର

୪ । ଯୁଗସ୍ରଷ୍ଟା ଫକୀରମୋହନ···ସର୍ବେଶ୍ୱର ଦାଶ

୫ । ଓଡ଼ିଆ ଭାଷା ଓ ସାହିତ୍ୟ—ନୀଳକଣ୍ଠ ଦାସ

୬ । ଫକୀରମୋହନ ସମୀକ୍ଷା—ସୁରେନ୍ଦ୍ର ମହାନ୍ତି

୭ । ସରସ୍ୱତୀ ଫକୀରମୋହନ—ମାୟାଧର ମାନସିଂହ

୮ । ଆତ୍ମ ଜୀବନ —ଫକୀରମୋହନ ସେନାପତି

୯ । ସାହିତ୍ୟ ସାଧକ ଫକୀରମୋହନ—ଚିନ୍ତାମଣି ଦାସ

୧୦ । ଫକୀରମୋହନ ଗ୍ରନ୍ଥାବଳୀ (୧ମ ଭାଗ)—ପ୍ରକାଶକ,
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ




(୯) ନଟବର ସାମନ୍ତରାୟ—ଓଡ଼ିଆ ସାହିତ୍ୟର ଇତିହାସ—ପୃ. ୩୮୦

# ଛମାଣ ଆଠଗୁଣ୍ଠ—ଏକ ଅଧ୍ୟୟନ ।

ଅଧ୍ୟାପକ—ଶରତଚନ୍ଦ୍ର ରଥ ଏମ୍. ଏ

ଫକୀରମୋହନ ସେନାପତି ଦେହରେ ନଥିଲେ ମଧ୍ୟ ବିଦେହରେ ଆଜି ଏକାଧାରରେ ଓଡ଼ିଶାର ଏକ ଜୀବନ୍ତ ଅନୁଷ୍ଠାନ ଓ ଜାଗ୍ରତ ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉଚ୍ଚତମ ଉଚ୍ଚତାରୁ ତୁଚ୍ଛତମ ପ୍ରତ୍ୟେକଟି କୋଷାଣୁରେ ଉତ୍କଳ ପାଇଁ ସଚେତନ ଏବଂ ସମଗ୍ର ଉତ୍କଳର ସାହିତ୍ୟ ଓ ସଂସ୍କୃତିର ଆତ୍ମରକ୍ଷା ପାଇଁ ସଂଘଟିତ ଜୀବନସଂଗ୍ରାମରେ ସେନାପତିତ୍ୱ ବରଣ କରି ଯଥାର୍ଥରେ ବରଣୀୟ ତଥା ସ୍ମରଣୀୟ ହୋଇରହିଛନ୍ତି । ତାଙ୍କର ଗଦ୍ୟ ସାହିତ୍ୟ ହିଁ ତାଙ୍କ ବ୍ୟକ୍ତିତ୍ୱର ସ୍ୱଚ୍ଛ ମୁକୁର । ବିଶେଷ କରି ତାଙ୍କର ଉପନ୍ୟାସ ଗୁଡିକରେ ସେ ନିଜକୁ ଅତିକ୍ରମ କରି ଯିବାର ସାର୍ଥକ ପ୍ରୟାସ କରି ସେଥିରେ ସଫଳକାମ ହୋଇଛନ୍ତି । ପରିଣତ ବୟସର ଅପର୍ଯ୍ୟାପ୍ତ ଅଭିଜ୍ଞତା ଏବଂ ଅପ୍ରମିତ ଆତ୍ମ ଶକ୍ତିକୁ ପାଥେୟ କରି ଲିଖିତ ଉପନ୍ୟାସ ଗୁଡ଼ିକ ସ୍ୱକୀୟ ମହିମାରେ ଉଦ୍ଭାସିତ । 'ଛମାଣ ଆଠଗୁଣ୍ଠ' ଉପନ୍ୟାସ ସେନାପତି ଲେଖନୀର ଏକ ସାର୍ଥକ ସୃଷ୍ଟି ଯାହା ଐତିହାସିକ ଉପାଦାନ, ସୂକ୍ଷ୍ମ ପରିବେଷଣ ଶୈଳୀ, ଫକୀରମୋହନଙ୍କର ବିରାଟ ବ୍ୟକ୍ତିତ୍ୱର ସମ୍ୟକ ସମନ୍ୱୟରେ ସଂଗଠିତ ହୋଇଛି । ଲୋକ ଭାଷାରେ ଲିଖିତ ଉକ୍ତ ଉପନ୍ୟାସଟି ଯେ କେବଳ ଏକ କଳାମଞ୍ଜୁଳ ଲିପିଶିଳ୍ପ ଭାବରେ ଗଢ଼ିଉଠିଛି ତା ନୁହେଁ ବରଂ କେତେକ ସମସ୍ୟାର ଉପସ୍ଥାପନା ଏବଂ ସମାଜ ସଂସ୍କାର ପ୍ରୟାସ ଏହାକୁ ଏକ ଚିରନ୍ତନ ମୂଲ୍ୟବୋଧ ଆଣି ଦେଇଛି ।

ଉପନ୍ୟାସଟିରେ ଘଟଣାର ଘନଘଟା ନାହିଁ ସତ, ମାତ୍ର ଏଥିରେ ଯେଉଁ ମୁଖ୍ୟ ତତ୍ତ୍ୱ ଓ ଚରିତ୍ର ଦେଖିବାକୁ ମିଳେ ତାହା ସର୍ବକାଳୀନ ଓ ସର୍ବଦେଶୀୟ । ଦୁର୍ବଳ ଉପରେ ସବଳର ପ୍ରବଳ ଅତ୍ୟାଚାର ଯୁଗେ ଯୁଗେ ଦୁଃସହ ଏକ ସାମାଜିକ ସମସ୍ୟା ରୂପେ ଦେଖାଦେଇଛି, ଏବଂ ଏହି ସମସ୍ୟାର ସମାଧାନ ମହାକାଳ ମାଧ୍ୟମରେ ସମ୍ଭବ ହୋଇଛି । ଏହିପରି ଏକ ଶୋଷଣରେ, ଅତ୍ୟାଚାରର ଚରମ ସ୍ଥିତି ଓ ପରିଣତି ପ୍ରମାଣ ଆଠଗୁଣ୍ଠ ଉପନ୍ୟାସରେ ମୁଖ୍ୟତଃ ପରିଦୃଷ୍ଟ ହୁଏ । ଊନବିଂଶ ଶତାବ୍ଦୀର ପ୍ରଥମ ପଚିଶବର୍ଷର ଓଡ଼ିଶାର ସମାଜ ଚିତ୍ର ଏହି ଶୋଷଣ ମାଧ୍ୟମରେ ପ୍ରତିଫଳିତ । ୧୮୦୩ ରେ ଇଂରେଜମାନେ ଓଡ଼ିଶା ଅଧିକାର କରି ୧୮୦୪ ମସିହାରେ ପ୍ରଥମେ ଜମିଜମାର ବନ୍ଦୋବସ୍ତ ଆରମ୍ଭ କଲେ । ଲର୍ଡ଼ କର୍ଣ୍ଣୱାଲିସଙ୍କ ସମୟରେ ଚିରସ୍ଥାୟୀ ବନ୍ଦୋବସ୍ତ କରାଗଲା । ବାରମ୍ବାର ବନ୍ଦୋବସ୍ତ କରାଯିବାରୁ ଜମିର ଖଜଣା ବୃଦ୍ଧି ପାଇଲା ଏବଂ ସେହି ଖଜଣା ଟଙ୍କା ପଇସାରେ ଦାଖଲ କରିବାର ନିୟମଟି ସାଧାରଣ ଜନତା ପକ୍ଷରେ ଅତ୍ୟନ୍ତ କଷ୍ଟସାଧ୍ୟ ଓ ବହୁ ସମୟରେ ଅସାଧ୍ୟ ମଧ୍ୟ ହୋଇ ପଡ଼ିଲା । ଫଳରେ ଖଜଣା ଠିକ୍ ସମୟରେ ଦାଖଲ କରି ନ ପାରିଲାରୁ ଜମି ସାଧାରଣ ଜନତା ହାତରୁ ଯାଇ ନିଲାମରେ ପଇସାବାଲା ବଙ୍ଗାଳି ଓ ଓଡ଼ିଆ ଲୋକଙ୍କ ହାତ ପଇଠ ହେଲା । ଏହିପରି ଏକ ପରିସ୍ଥିତିର ସୁଯୋଗ ନେଇ ଓଡ଼ିଶାରେ ଏକ ଜମିଦାର ଶ୍ରେଣୀ ସୃଷ୍ଟି ହେଲେ । ଯାହାଙ୍କର ବୁନିଆଦ ନଥିଲା, ପରମ୍ପରା କ୍ରମେ ଜମିଦାରୀ ନଥିଲା । ହଠାତ୍ଟରୁ ବଡ଼ ହୋଇ ସ୍ୱାର୍ଥପର ମନନେଇ ସେମାନେ ଗ୍ରହିଲେ କେବଳ ନିଜର ଭୋଗ, ବିଳାସ ଓ ନିଷ୍କଣ୍ଟକ ସ୍ଥିତି । ଧନ ଗର୍ବରେ ମତ୍ତ ହୋଇ ସେମାନେ ଧରାକୁ ସରା ମଣିଲେ, ନିଜର ସର୍ବନାଶର ପଥ

ପରିଷ୍କାର କଲେ । ଏହି ଜମିଦାର ଶ୍ରେଣୀର ଜଣେ ପ୍ରତିନିଧି ହେଉଛନ୍ତି ରାମଚନ୍ଦ୍ର ମଙ୍ଗରାଜ, ଉପନ୍ୟାସର ମୁଖ୍ୟ ଚରିତ୍ର । ପରସ୍ୱ ଅପହରଣ କରି ଐଶ୍ୱର୍ଯ୍ୟଶାଳୀ ହେବାର ସୀମାହୀନ ଆସକ୍ତି ତାଙ୍କୁ ମାନବିକତାର ମହାମୂଲ୍ୟବୋଧରୁ ଦୂରେଇ ରଖିଲା, ପ୍ରାଣିକ ଚେତନାରେ ପରିଚାଳିତ ହୋଇ ପ୍ରାରମ୍ଭିକ ସ୍ତରରେ ଆସୁରିକ ଆନନ୍ଦ ସେ ପାଇଲେ ବି ତାଙ୍କର ପରିଣତି ହିଁ ତାଙ୍କର କୃତ କର୍ମର ଉପଯୁକ୍ତ ପୁରସ୍କାର ଭାବରେ ତାଙ୍କୁ ପ୍ରାପ୍ତ ହେଲା । ସରଳମନା ଶାରିଆର ଦୀର୍ଘଶ୍ୱାସରେ ଜମିଦାର ମଙ୍ଗରାଜ ନିଜେ ଜଳିପୋଡ଼ି ଗଲେ, ବଂଶର ସ୍ମୃତି ଓ ପ୍ରସିଦ୍ଧି ଭୂଲୁଣ୍ଠିତ ହେଲା । ଭଗିଆର ଅବସାଦଜନିତ ପାଗଳାମିର ଏକମାତ୍ର କାରଣ ଯେଉଁ ମଙ୍ଗରାଜ, ସେ ମଧ୍ୟ ସେ ସମ୍ପତ୍ତି ଭୋଗ କରି ପାରିଲେ ନାହିଁ । ନିୟତିର ବିକଟ ପରିହାସରେ ଜମିଦାର ଘରର ମର୍ଯ୍ୟାଦା, ଧନସମ୍ପଦ ଓ ସର୍ବୋପରି ମଙ୍ଗରାଜଙ୍କ ଜୀବନ ଜଳିପୋଡ଼ି ପାଉଁଶ ହୋଇଗଲା । ଛମାଣ ଆଠଗୁଣ୍ଠ ଉପନ୍ୟାସର କଥାବସ୍ତୁର ସାରତତ୍ତ୍ୱଟି ଐତିହାସିକ । ନିର୍ଦ୍ଦିଷ୍ଟ ସମୟର ନିର୍ଦ୍ଦିଷ୍ଟ ଚରିତ୍ର ଶୋଷଣ ଓ ଶୋଷିତ ମାଧ୍ୟମରେ ପରିପ୍ରକାଶିତ ହୋଇଛି । ଘଟଣାର ବାସ୍ତବତା ପାଇଁ ଉପନ୍ୟାସରେ କେତେକ ନିର୍ଦ୍ଦିଷ୍ଟ ତାରିଖ ମଧ୍ୟ ଦିଆଯାଇଛି । ତା ୩-୧୦-୧୮୩୨ ମସିହାରେ ସକାଳେ ଦାରୋଗାବାବୁ ଶାରିଆର ମୃତ୍ୟୁ ଖବର ପାଇଛନ୍ତି । ସେ ୧୦-୧୦-୧୮୩୧ ମସିହାରେ ଏହାର ରିପୋର୍ଟ ଲେଖିଛନ୍ତି । ୧୮୩୨ ମସିହା ମେ ମାସ ୧୭ ତାରିଖରେ ରାମଚନ୍ଦ୍ର ମଙ୍ଗରାଜ ଜେଲ ଯାଇଛନ୍ତି । ଏଥିରୁ ପ୍ରମାଣ କରାଯାଇ ପାରେ ଯେ ଊନବିଂଶ ଶତାବ୍ଦୀର ପ୍ରଥମ ତୃତୀୟ ଦଶକ ଭିତରେ ଘଟିଥିବା କେତେକ ଅନୁରୂପ ଘଟଣା ଭିତରୁ ଏହି ଘଟଣାଟି ଅନ୍ୟତମ ତଥା ପ୍ରତିନିଧି ସ୍ଥାନୀୟ, ଐତିହାସିକ ଦୃଷ୍ଟିକୋଣରୁ ଉପନ୍ୟାସଟିର ମୂଲ୍ୟବୋଧ ସୁରକ୍ଷିତ ତଥା ସୁବିଦିତ ।

ଉପନ୍ୟାସଟିର ଚରିତ୍ର ଚିତ୍ରଣକଳା ଅନବଦ୍ୟ ହୋଇପାରିଛି । ବିଭିନ୍ନ ଚରିତ୍ରର ସମ୍ୟକ ସମନ୍ୱୟରେ ଉପନ୍ୟାସଟି ଚରିତ୍ରର ଚିତ୍ରଶାଳା ରୂପେ ରୂପାୟିତ ହୋଇଛି କହିଲେ ଭୁଲ ହେବ ନାହିଁ । ପୁରୁଷ ଓ ନାରୀ ଉଭୟ ଚରିତ୍ରର ସଫଳ ଉପସ୍ଥାପନା ଯୋଗୁ ଉପନ୍ୟାସର କୌଣସି ଅଂଶ ବିରକ୍ତିକର ବା ଉଦ୍ଭଟ ହୋଇ ନାହିଁ, ବରଂ ପ୍ରତ୍ୟେକ ଚରିତ୍ର ନିଜସ୍ୱ ପ୍ରଭାବରେ ଗରିମାମୟ ହୋଇଛନ୍ତି ।

ପୁରୁଷ ଚରିତ୍ର ଭିତରେ ମୁଖ୍ୟ ହେଉଛନ୍ତି ରାମଚନ୍ଦ୍ର ମଙ୍ଗରାଜ, ସ୍ଥିତିଶୀଳ ଚରିତ୍ରଟିଏ ଯେ କି ମୂଳରୁ ଶେଷ ପର୍ଯ୍ୟନ୍ତ ନିଜର ଚିନ୍ତାଧାରରେ ଅବିଚଳିତ । ଶୋଷଣର ମୂର୍ତ୍ତିମନ୍ତ ପ୍ରତୀକ ସେ, ଜୀବନରେ କେବଳ ଜାଗତିକ ଭୋଗବିଳାସ ତାଙ୍କର ଏକାନ୍ତ କାମ୍ୟ । ନିଜର ଭୌତିକ ସତ୍ତା ଓ ଭୌତିକ ସମ୍ପଦ ବ୍ୟତୀତ ଆଉ କିଛି ସୂକ୍ଷ୍ମ ଉପାଦାନ ଯେ ଏ ପୃଥିବୀରେ ଥାଇପାରେ ଏକଥା ସେ ବୁଝି ନଥିଲେ । ସମ୍ପଦ ତାଙ୍କ ପାଇଁ ଥିଲା ଅଶେଷ ଆକର୍ଷଣର ବସ୍ତୁ । ସେ ଯେତିକି ଧନର ଅଧିକାରୀ ନ ଥିଲେ ଧନ ତାଙ୍କୁ ସେତିକି ଅଧିକାର କରି ନେଇଥିଲା । ଜୀବନ ଥିଲା ତାଙ୍କର ନିରବଚ୍ଛିନ୍ନ ଅର୍ଥ ପୂଜା, ଅର୍ଥର ଗୁରୁତ୍ୱ, ମହତ୍ତ୍ୱ ସେ ବୁଝି ନଥିଲେ କିନ୍ତୁ ଅର୍ଥ ପାଇଁ ସେ ପ୍ରବଳ ଭାବରେ ଲାଳାୟିତ ଥିଲେ । ପରସ୍ୱ ଅପହରଣ କରି ସମ୍ପଦ ଓ ସୌଭାଗ୍ୟକୁ ବୃଦ୍ଧି କରିବାର ନିନ୍ଦନୀୟ ପ୍ରଚେଷ୍ଟା ତାଙ୍କ ପାଇଁ ନନ୍ଦନୀୟ ହୋଇଥିଲା । ଚମ୍ପା ଭଳି ସରଳ ପ୍ରାଣରେ ବିଶ୍ୱାସରେ ବିଷ ଭରିଦେଇ ଶାରିଆ ଓ ଭଗିଆଙ୍କର ଛମାଣ ଆଠଗୁଣ୍ଠ ଜମି ଯେପରି ଭାବରେ ସେ କବଳିତ କଲେ ତାହା ପଢ଼ିଲେ ପ୍ରତ୍ୟେକ ପାଠକ ପ୍ରାଣରେ ଭାବାନ୍ତର ଆସେ । ପୁଣି ଭୂମିହରା ଭଗିଆ ଓ ଶାରିଆଙ୍କର ଅସହାୟତା, ମର୍ମଯନ୍ତ୍ରଣା କାରୁଣ୍ୟ ଓ

ଦୀର୍ଘନିଶ୍ୱାସ, ଶାରିଆର ଦୁଶ୍ଚିନ୍ତା ତଥା ଅନାହାର ଜନିତ ମୃତ୍ୟୁ, ଭଗିଆର ପାଗଳାମି ପ୍ରସଙ୍ଗ ପ୍ରତି ପାଠକ ମନରେ ଦାରୁଣ ଆଘାତ ଲାଗେ । ସଂମାହାନ ଘୃଣାରେ ଅନ୍ତର ତାର ପୂରି ଉଠେ, ମଙ୍ଗରାଜଙ୍କ ପ୍ରତି ପାଠକର ଭ୍ରୂକୁଟୀ କୁଞ୍ଚିତ ହୋଇଯାଏ । ଧାର୍ମିକ ହୋଇ ଆଖିବୁଜି ଦୁଧ ପିଇ ଏକାଦଶୀ କରୁଥିବା ମଙ୍ଗରାଜ ଧର୍ମକୁ, ଦୁଷ୍ଟ ଜନତାକୁ ଯଥାସମ୍ଭବ ଠକି ଶେଷରେ ନିଜକୁ ନିଜେ ଠକି ଦେଇ-ଛନ୍ତି । ବାଘ ସିଂହ ବଂଶର ସମୂଳେ ବିଲୋପ ସାଧନ କରି ସେହି ଅଭିଶାପରେ ନିଜେ ମଙ୍ଗରାଜ ତାଙ୍କର ବଂଶ ମର୍ଯ୍ୟାଦା ସହିତ ଜଳି ପୋଡ଼ି ପାଉଁଶ ହୋଇ ଯାଇଛନ୍ତି, ସେହି ଅଗ୍ନିରେ ଗୁରଖାର ହୋଇଯାଇଛି ପରିବାରର ସ୍ଥିତି । ଭଗିଆ ଚରିତ୍ର ବିଶ୍ଳେଷଣ କଲେ ଜଣାଯାଏ ଯେ ସେ ଅସହାୟତାର ମୂର୍ତ୍ତି ପ୍ରତୀକ । 'ବଡ଼ ଲୋକକୁ ଉତ୍ତର ନାହିଁ, ସ୍ୱର୍ଗକୁ ନିଶୁଣି ନାହିଁ' ନ୍ୟାୟରେ ଭଗିଆ ନିର୍ଦ୍ଦୋଷରେ ତାର ଏକମାତ୍ର ସମ୍ବଳ ଛମାଣ ଆଠଗୁଣ୍ଠ ନେତ ଗାଈକୁ ହରାଇ ସର୍ବହରା ହେଲେ ମଧ୍ୟ ଜମିଦାରଙ୍କ ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରି ପାରି ନାହିଁ । କୋର୍ଟ କଚେରୀରୁ ଗରିବ ଲୋକ ନ୍ୟାୟ ପାଏ ନାହିଁ, ଏ କଥା ଜାଣି ମନର ବେଦନା ମନରେ ମାରି ପାଗଳ ହେଲା ସେ । ଧନୀକର ଘୋଡ଼ା ଚାପୁ ତଳେ, ସମାଜର ଅବ୍ୟବସ୍ଥା ତଳେ ଚୂପି ହୋଇ ସର୍ବନାଶ ହେଲା ଭଗିଆର, ଦୋଷ ଅବା କ'ଣ ଥିଲା ତାର, ସରଳ ବିଶ୍ୱାସହିଁ ତାର ବିନାଶର କାରଣ ହେଲା । ଅନ୍ୟ ପୁରୁଷ ଚରିତ୍ରମାନେ ହେଲେ ଗୌଣ ଚରିତ୍ର, ଗୌଣ ହେଲେ ମଧ୍ୟ ଉପନ୍ୟାସର ଅଗ୍ରଗତି ତଥା ପରିଣତି ପାଇଁ ପ୍ରତ୍ୟେକ-ଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ନାରୀ ଚରିତ୍ର ସେନାପତି ଲେଖନୀରେ ଚିତ୍ରିମନ୍ତ ହୋଇଛି । ପୁରୁଷ ଚରିତ୍ର ତାଙ୍କ ସମାନ ଆସନରେ ଅଧିଷ୍ଠିତ, ବରଂ ପୁରୁଷ

ଅପେକ୍ଷା ନାରୀ ଅଧିକ ଗତିଶୀଳ, ଚଞ୍ଚଳ ଓ ମନୋହର । କେତେକ ସମାଲୋଚକଙ୍କ ମତରେ ପୁରୁଷ ଚରିତ୍ରର ପ୍ରାଧାନ୍ୟ ଉପନ୍ୟାସରେ ସ୍ୱୀକୃତ ଓ ସୁପ୍ରତିଷ୍ଠିତ । ନାରୀର ପାଦତଳେ ନିଜକୁ ସମର୍ପି ଦେବାର ପ୍ରବୃତ୍ତି ତାଙ୍କର ପୁରୁଷ ଚରିତ୍ରମାନଙ୍କରେ ନାହିଁ, କିନ୍ତୁ ପ୍ରକୃତରେ ଦେଖିଲେ ନାରୀ ଚରିତ୍ରର ପ୍ରାଧାନ୍ୟ ଉପନ୍ୟାସରେ ଦେଖିବାକୁ ମିଳେ । ରାମଚନ୍ଦ୍ର ମଙ୍ଗରାଜ ଚମ୍ପାକୁ କହୁଛନ୍ତି—"ମୁଁ ତ ପାରିଲି ନାହିଁ, ତୁ ଏଥର କିଛି ଫିକର କାଢ଼, ତୁ କରିପାରିଲେ ସବୁ ହେବ । ଦେଖ, ମୁଁ ତିନି ବରଷ ଲାଗ ଲାଗି ସେ ଜମିକୁ ପାରି ନ ଥିଲି, ତୁ ଯେପରି ହାତ ଦେଲୁ କାମ ଫତେ ।" ଏଥିରେ ଚମ୍ପାର ବୁଦ୍ଧିମତ୍ତାର ପ୍ରଶଂସା କରିଛନ୍ତି ରାମଚନ୍ଦ୍ର ମଙ୍ଗରାଜ, କାରଣ ମଙ୍ଗରାଜଙ୍କଠାରୁ ବୁଦ୍ଧିରେ, କୌଶଳରେ ଓ ଉଗ୍ରତାରେ ଚମ୍ପା ସାଆନ୍ତାଣୀ ଆଉ ପାଦେ ଆଗେଇ ଯାଇଛନ୍ତି । 'ମାଣିକ' ଏକ ଗୌଣ ଚରିତ୍ର ହେଲେ ମଧ୍ୟ ତାର ଭୂମିକା ଓ ସ୍ଥିତି ଉପନ୍ୟାସରେ ବେଶ୍ ଆକର୍ଷଣୀୟ । ଫକୀରମୋହନଙ୍କ ଭାଷାରେ, "ଏହାକୁ ତୁଚ୍ଛ ଭଣ୍ଡାରଘରଣୀଟିଏ ବୋଲି ଜାଣିବେ ନାହିଁ । ଏ ବୁଦ୍ଧିରେ, ମାମଲତରେ, ଗୁଣରେ ଅନେକ ପୁରୁଷଙ୍କର କାନ କାଟି ଦେଇ ପାରେ ।" ନାରୀ ଚରିତ୍ର ମଧ୍ୟରେ ସବୁଠାରୁ ଆକର୍ଷଣୀୟ ହେଉଛି ଚମ୍ପା । ସେ ଏକ ଗତିଶୀଳ ବହୁରଙ୍ଗୀ ଚରିତ୍ର । ବୟସ ତାର ତିରିଶି, କିନ୍ତୁ ସେନାପତି ଲେଖମାରେ ସେ ରୂପରାଣୀ ଲବଙ୍ଗଲତା ହୋଇନାହିଁ, ବରଂ ଚାଲିଚଳନରେ, ବେଶଭୂଷଣରେ କେମିତି ଅସଜଡ଼ା ହୋଇ ଚିତ୍ରିତ ହୋଇଛି । ତାର ଦୁମୁ ଦୁମୁ ଚାଲି, ଠହ ଠହ ହସ, ମାର୍ଜାର ନୟନା, ବାହାରା ଦାନ୍ତ, ଖୋଳହାଣ୍ଡି ଶାଢ଼ୀ ସବୁ ମିଶି ଏକ ବର୍ତ୍ତୁଳ ଦୃଶ୍ୟର ସଞ୍ଚାର କରିଛନ୍ତି । ଝୁଣ୍ଟିଆର ଝମକ ଝଙ୍କାର, ଥୋପ ଭଡ଼ା ଜୁଡ଼ାର ଉଚ୍ଚତା, ହଲାଦୋହଲ ଅଚଳା ଚାଲିରେ ଗାଁର ଲୋକଙ୍କ ଶଙ୍କି ଯାନ୍ତି ବୋଲି ସେନାପତି କହନ୍ତି, ମୋଟ ଉପରେ ରୂପ

ସଂସାରରେ ଅବିନ୍ୟସ୍ତ ବିଚିତ୍ର ଛବିଳ ଚରିତ୍ରଟିଏ ସେ ଗୁଣରେ ମଧ୍ୟ ଅସାଧାରଣ, ଅସାମାନ୍ୟ ! ମଙ୍ଗରାଜଙ୍କର ଲୋକେ ଦେଖିବାକୁ ସବୁ କହୁଛି, ସେ ହେଲେ ତାର ଭୂମିକା ସ୍ୱତଃସ୍ଫୂର୍ତ୍ତ ନୁହେଁ ଆରୋପିତ । ମଙ୍ଗରାଜଙ୍କ ଘରେ ସାଆନ୍ତାଣୀ ସେ, ହଳିଆ, ମୂଲିଆଙ୍କ ଉପରେ ତାର ଅସମ୍ଭବ ପ୍ରକାରର ଆଧିପତ୍ୟ । ପର ଘର ଭଙ୍ଗେଇ, ନଜରଛଣିଟିଏ ସେ, କାହାର ସୁଖ ସୌଭାଗ୍ୟ ତା ଆଖିକୁ ଭଲ ଲାଗେ ନାହିଁ । ଅଜ୍ଞାତକୁଳଶୀଳ ନାରୀ କିନ୍ତୁ ମଙ୍ଗରାଜ ଘରେ ତାହାର ଅସାମାନ୍ୟ କର୍ତ୍ତୃତ୍ୱ ଓ ଅଶେଷ ବିଶେଷତ୍ୱ ଦେଖିଲେ ମନେହୁଏ ସତେ ଯେମିତି ମଙ୍ଗରାଜ ସୂର୍ଯ୍ୟର ସେ ଜନ୍ମ ଜନ୍ମର କମଳକଳି । ଚମ୍ପା ବିନା ମଙ୍ଗରାଜଙ୍କର ଅଭିବ୍ୟକ୍ତି ନାହିଁ କି ମଙ୍ଗରାଜ ବିନା ଚମ୍ପାର ସ୍ଥିତି ନାହିଁ । ମଙ୍ଗରାଜଙ୍କ ଦମ୍ଭ୍ୟାପାଇଁ ଚମ୍ପାର ମନ ଟାଣ, ମୁହଁଟାଣ ଦେଖିଲେ ଆଶ୍ଚର୍ଯ୍ୟ ହବାକୁ ହୁଏ, ଯାହା ହାତଧରି ବାହା ହୋଇଥିବା ସାଆନ୍ତାଣୀ ଜଣେ କହି ପାରିନାହାନ୍ତି, ଯେଉଁ ଅଧିକାର ପାଇନାହାନ୍ତି, ଉତ୍ତାଚଢ଼େଇ ଚମ୍ପା ତାହା ପାଇବାକୁ ସମର୍ଥ ହେଲା । ଚମ୍ପା ମଙ୍ଗରାଜଙ୍କର ସତ, ସାର୍ଥକ ବଗଲବଗୁଲାର ସତ କହିଲେ ଚଳେ । ମଙ୍ଗରାଜଙ୍କର ସେବିକା, ନାୟିକା, ହିତକାରିଣୀ, ମଧୁ-ଭାଷିଣୀ, ଦେହର ସାଥି, ବାଦେହର ମୂକ୍ତି ସବୁ ହେଲା ଚମ୍ପା । ମଙ୍ଗରାଜଙ୍କର ଭୌତିକ ସମ୍ପଦର ମୂଳରେ ଚମ୍ପାର ଅବଦାନ ଅବିସ୍ମରଣୀୟ । ଶାରିଆ ଭଗିଆଙ୍କର ଛମାଣ ଆଠଗୁଣ୍ଠ ଜମି କବଳିତ କରିବା ପାଇଁ ସ୍ଥୂଳ କାର୍ଯ୍ୟରେ ନିୟୋଜିତ ହୋଇଛନ୍ତି ନିଜେ ମଙ୍ଗରାଜ, ରାମଚନ୍ଦ୍ର ଜଗାଭଣ୍ଡାରୀ ଓ ଜଣେ ହଳିଆ । କିନ୍ତୁ ଏ ସୂକ୍ଷ୍ମକାର୍ଯ୍ୟ ଅର୍ଥାତ୍ ଶାରିଆକୁ ପ୍ରବଞ୍ଚାଇବା ପରି କାର୍ଯ୍ୟରେ

ଉପମାତ ହୋଇଛି ଏକା ଚମ୍ପା । ତାର ପ୍ରେରଣାରେ, ତାର କଥାରେ ଶାରଆ ମନ ଭୁଲି ଯାଇଛି ଏବଂ ଚମ୍ପା ସାଆନ୍ତାଣୀଙ୍କର ପୁରାଣ ପୃଷ୍ଠାରୁ ଆବୃତ୍ତି ତା ମନକୁ ପାଇଛି ! ନାହିଁ ଯାହାର ପିଲାଝିଲ ସକାଳୁ ତା ମୁହଁ ଚାହିଁବ ନାହିଁ । ଇତ୍ୟାଦି ଇତ୍ୟାଦି ।

ମଙ୍ଗଳା ଠାକୁରାଣୀଙ୍କର ମନ୍ଦିର ତୋଳାଇ ଦେଲେ ପିଲାପିଲି ହେବ ଆଉ ତୋଳାଇ ନ ଦେଲେ ସେ ବିଧବା ହେବ, ଏହିପରି ସବୁକୁ ଅତି ଚମତ୍କାର ଭାବରେ ଶାରଆ ଆଗରେ ଉପସ୍ଥାପନା କରିଛି ଚମ୍ପା । ଶାରଆ ସରଳମନା ଗାଉଁଲି ଝିଅଟିଏ, ସେ ଏତେ ଛଳ କପଟ ଭିତରେ ପଶି ପାରିନାହିଁ । ଚମ୍ପା ସାଆନ୍ତାଣୀଙ୍କର କଥାରେ ସେ ଅକୁଣ୍ଠ ଚିତ୍ତରେ ରାଜିହୋଇଛି, ମଙ୍ଗରାଜଙ୍କଠାରୁ ସାହାଯ୍ୟ ଆଣି ମନ୍ଦିର ତୋଳାଇ ଦେବାପାଇଁ । କିନ୍ତୁ ସେତେବେଳେ ତା ମନରେ କିଛି ଓଲଟ ପ୍ରଶ୍ନ ଆସିନାହିଁ, ଆଗପଛ ବିଚାର ଆସି-ନାହିଁ, ଶାରଆଠାରୁ ଛମାଣ ଆଠଗୁଣ୍ଠ ଜମି ରାମଚନ୍ଦ୍ର ମଙ୍ଗରାଜଙ୍କ ହାତକୁ ଖୁବ୍ ସୁବିଧାରେ ଆସିଯାଇଛି । ତାର ନେତ ଗାଈକୁ ମଧ୍ୟ ବାନ୍ଧି ଆଣିଛନ୍ତି । ମଙ୍ଗରାଜ ଆଉ ତାର ରହିବା ଘର ଟିକିକ ଭାଙ୍ଗି ଦେଇ, ଦାଣ୍ଡର ଭିକାରି କରି ଦେଇଛନ୍ତି । ଭାଗ୍ୟକୁ ଆଦରି କାନ୍ଦି କାନ୍ଦି ଜମିଦାରଙ୍କ ଓଳିତଳେ ପଡ଼ି ପଡ଼ି ନଖାଇ ନପିଇ ଶେଷକୁ ଶାରଆ ମୃତ୍ୟୁବରଣ କରିଛି, ଭଗିଆ ପାଗଳ ହୋଇ ପ୍ରଳାପ ମାଧ୍ୟମରେ ନିଜର ବିଦ୍ରୋହଭାବକୁ ପ୍ରକାଶ କରିଛି ।

ଏତିକରେ ଚମ୍ପାର ଆସୁରିକ ପ୍ରବୃତ୍ତି ଶାନ୍ତ ହୋଇନାହିଁ, ଡୋଲିରେ ବସି ସୁଲକ୍ଷଣୀ ହୁନା ବୋହୂଟିଏ ହୋଇ ଅଲକ୍ଷଣୀ ଚମ୍ପା ଯାଇଛି ବାଘସିଂହଙ୍କ ଘରକୁ । ଶାନ୍ତବଦନର ସ୍ନିଗ୍ଧ ଛାୟାପଥେ

ନିଜକୁ ସଜାଇ ସେ ଯେଉଁ ଅଗ୍ନି ବର୍ଷି ଆସିଛି ସେଥିରେ ବାଘ ସିଂହ ବଂଶର ସବୁ ସମ୍ପଦ ଓ ସୌଭାଗ୍ୟ ଜଳିପୋଡ଼ି ଏକାବେଳକେ ପାଉଁଶ ହୋଇଯାଇଛି, ଚମ୍ପା ମୁହଁର କଥାଟି ସତ ହୋଇଛି, ବାଘ ସିଂହ ବଂଶର ଧନ ଜାଳ ଜାଳ୍ତ ସରି ନାହିଁ, ଚମ୍ପା ଭାଷାରେ—

"ଯାଉଛି ସଙ୍ଗାତ ଝଅଙ୍କୁ ମେଲାଣି ମନଟି ରଖିଲ ବାନ୍ଧି
ଧନ ଗୁଣ୍ଡ ଦିନା ସରିବ ନାହିଁଟି, ସଜେଇ ସଜେଇ କାନ୍ଦି ।"
ଏହି ଦୁରୂହ କାର୍ଯ୍ୟଟି ପାଇଁ ମଙ୍ଗରାଜଙ୍କ କଣ୍ଠରେ ଅଭିନନ୍ଦନର ଶୁଭଶଙ୍ଖ ବାଜି ଉଠିଛି, ତାଙ୍କର ଆତ୍ମିକ ପ୍ରାଣସତ୍ତା ଆନନ୍ଦରେ ଗୁଞ୍ଜରି ଉଠିଛି । ତାଙ୍କ ପ୍ରଶଂସାରେ ଚମ୍ପା ମଧ୍ୟ ଫୁଲି ଫୁଲି ଆତ୍ମପ୍ରସାଦ ଲାଭ କରିଛି, ସତେ ଯେମିତି ନୀଳ ଆକାଶର ପୂର୍ଣ୍ଣିମା ଚନ୍ଦ୍ର ତାରି ହାତରେ ଖସିପଡ଼ିଛି କି ?

ଚମ୍ପା ଚରିତ୍ରଟି ଓଡ଼ିଆ ଉପନ୍ୟାସ ଜଗତରେ ଏକ ଅସାଧାରଣ ଚରିତ୍ର । ଏହାର ସୃଷ୍ଟି ଓ ବିକାଶ ମୂଳରେ ବଙ୍କିମ ଚନ୍ଦ୍ରଙ୍କର ବିଷବୃକ୍ଷ ଉପନ୍ୟାସର ହୀରା ଚରିତ୍ରର ପ୍ରଭାବ ନିହିତ, ଏକଥା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ । ପ୍ରାପ୍ତ ସମସାମୟିକ ପ୍ରତିଷ୍ଠିତ ବଙ୍ଗଳା ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କର ସାହିତ୍ୟ ଦ୍ୱାରା ପ୍ରଭାବିତ ହେବା ଫକୀରମୋହନଙ୍କ ପକ୍ଷରେ ନିହାତି ସ୍ୱାଭାବିକ । ୧୮୭୩ ମସିହାରେ ପ୍ରକାଶିତ ବଙ୍କିମ ଚନ୍ଦ୍ରଙ୍କର ଉପନ୍ୟାସ ବିଷବୃକ୍ଷ, ବିଧବା ବିବାହ ଓ ବହୁ ବିବାହ ଆଦି କେତେକ ସାମାଜିକ ସମସ୍ୟାକୁ ଆଧାର କରି ଗଠିତ । ଏଥିରେ ଥିବା ହୀରା ଚରିତ୍ର, ସେନାପତିଙ୍କର ଚମ୍ପା ଚରିତ୍ର ପରି ପାଠକର ଦୃଷ୍ଟି ଆକର୍ଷଣ କରିଥାଏ । ହୀରାର ବୟସ କୋଡ଼ିଏ ବର୍ଷ, ଦତ୍ତ ଘରେ ଚାକରାଣୀ, ବାଲ୍ୟ ବିଧବା ବୋଲି

କନ୍ତୁ ଗୋବନ୍ଦପୁରଠାରେ ତା ମାଆ ସହିତ ସେ ରହେ । ନଜର ସ୍ୱତନ୍ତ୍ର ଭାବରେ ରହଣି, କେବଳ ଆସିଯାଇ ଦତ୍ତ ଘରେ କାମ କରେ । ତାର ଅଶେଷ ପ୍ରଭାବ ଦତ୍ତ ଘରେ ଦେଖିବାକୁ ମିଳେ, ଘର ମୁଖର୍, ଅହମିକା ପରିପୂର୍ଣ୍ଣ, ସ୍ୱାର୍ଥସର୍ବସ୍ୱ ସର୍ବୋପରି ଦେହ ବିଳାସିନୀ । ଲେଖକଙ୍କର ଲେଖାରେ ସ୍ୱାବ ସୁନ୍ଦରୀ, ଶ୍ୟାମାଙ୍ଗୀ, ପଦ୍ମପଲାଶ-ଲୋଚନା, ଦେଖିବାକୁ ଖର୍ବାକୃତି, ସାପଫଣା ପରି କେଶସଜ୍ଜା ନଜର ସ୍ୱାର୍ଥସିଦ୍ଧି ପାଇଁ ଚମ୍ପା ପରି ଅଘଟଣ ଘଟାଇ ପାରେ । ସେନାପତିଙ୍କ ଚମ୍ପା କଟୁଭାଷିଣୀ ସତ, ହେଲେ କାହା ସହିତ ସମ୍ମୁଖିବାକୁ ସଂଗ୍ରାମ ସେ କରି ନାହିଁ, ଉପରକୁ କଳକଣ୍ଠୀ ସେ ନୁହେଁ, କନ୍ତୁ ସ୍ୱାବ ଆଉଜଣେ ଦାସୀସହ ସମ୍ମୁଖ ସଂଗ୍ରାମ କରିଛି । ସୁତରାଂ ଏତିକି କହିଲେ ଯଥେଷ୍ଟ ହେବ ଯେ ସ୍ୱାବ ଚରିତ୍ରର ବିକଶିତ ତଥା ପରିବର୍ଦ୍ଧିତ ଶାଣିତ ସଂସ୍କରଣ ହେଉଛି ଚମ୍ପା ।

ସାଆନ୍ତାଣୀ ଚରିତ୍ର ସର୍ବଂସହା, କରୁଣାମୟୀ, ସଖିଭିର କାରଣରେ ସ୍ନିଗ୍ଧମଞ୍ଜୁଳା । ଜୀବନଜିଜ୍ଞାସା ତାଙ୍କର ଥିଲ, ନଜର କର୍ତ୍ତବ୍ୟ ସମ୍ପର୍କରେ ସେ ସଚେତନ ଥିଲେ ସତ ମାତ୍ର ତାଙ୍କ ବଡ଼ ମନର ପ୍ରଭାବରେ ମଙ୍ଗରାଜଙ୍କର ଜଡ଼ ମନ ପ୍ରଭାବିତ ହୋଇ ପାରିଲ ନାହିଁ । ତୁଳସୀଗଛକୁ କାଳସର୍ପ ପରି ତାଙ୍କ ଜୀବନରେ ଆସିଥିଲେ ମଙ୍ଗରାଜ, ଯହାଙ୍କୁ ଇହକାଳର ଓ ପରକାଳର ଦେବତା ଭାବରେ ପାଇଥିଲେ ସାଆନ୍ତାଣୀ । ସାଆନ୍ତାଣୀଙ୍କର ମହିଷ ମନ, ଆଉ ମଙ୍ଗରାଜଙ୍କର ଅସୁର ମନ, ଯତି ଆଉ ଅଣ୍ଡଳ କେମିତି । ପ୍ରତିକୂଳ ପରିସ୍ଥିତିରେ ମର୍ମାହତ ହୋଇ, ଅପମାନିତା, ପ୍ରତ୍ୟାଖ୍ୟାତା ହୋଇ ଶେଷରେ ଅସହାୟ ଭାବରେ ମୃତ୍ୟୁ ବରଣ କଲେ । ନଜକୁ ତିଳ ତିଳ କରି ଜାଳି ନଃଶେଷ କରି ଦେଲେ ପଛେ ଅସତ୍ୟ, ଅନ୍ୟାୟର ପାଦତଳେ ମୁଣ୍ଡ ନୁଆଁଇଲେ ନାହିଁ ।

ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିବା ପାଇଁ, ଓଡ଼ିଶାର ସାମାଜିକ ଜୀବନରୁ ଯେତେ ସବୁ କୁସଂସ୍କାର ଦୂର କରିବା ପାଇଁ ସୃଷ୍ଟି ହୋଇଥିବା ଉପନ୍ୟାସ ଛମାଣ ଆଠଗୁଣ୍ଠ ନିଜସ୍ୱ ଶୈଳୀ ମାଧ୍ୟମରେ ଲକ୍ଷ୍ୟ ସାଧନ ଦିଗରେ ସଫଳ କାମ ହୋଇପାରିଛି । ପୁଣି ଉପନ୍ୟାସଟି ପାଠକ ପକ୍ଷରେ ବିରକ୍ତିକର ନ ହୋଇ ବରଂ ଆକର୍ଷଣୀୟ ତଥା ସୁଖପାଠ୍ୟ ହୋଇଛି । ସେନାପତି ଲେଖମା କାଳରେ କର୍ମରତ ରହିଲେ ମଧ୍ୟ କାଳଜୟୀ ହେବାର ଅମର ଗୌରବ ଲାଭ କରିଛନ୍ତି । ବହୁ ପଠିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଛି ସେନାପତିଙ୍କର ଗଦ୍ୟ ସାହିତ୍ୟ କେବଳ ଶୈଳୀର ମାଦକତାଧର୍ମୀ ଯାଦୁମନ୍ତ୍ର ଯୋଗୁ ।

ସମାଜକୁ ସୁସ୍ଥ, ସ୍ୱାଭାବିକ କରିବା ପାଇଁ ଏକ ଅବ୍ୟର୍ଥ ଅସ୍ତ୍ର ରୂପରେ ସେନାପତି ତାଙ୍କର ବ୍ୟଙ୍ଗ ସାହିତ୍ୟକୁ ବ୍ୟବହାର କରିଛନ୍ତି । ଅନେକ ସମୟରେ ସମାଜସଂସ୍କାର କାର୍ଯ୍ୟଟି ସେ ବ୍ୟଙ୍ଗାତ୍ମକ ଶୈଳୀ ମାଧ୍ୟମରେ ରୂପାୟନ କରିଛନ୍ତି, ସେ ଦୃଢ଼ ବିଶ୍ୱାସ ରଖିଛନ୍ତି 'The true end of Satire is amendment of vices by correction' । ମଙ୍ଗରାଜଙ୍କ ଏକାଦଶୀ ପାଳନା, ଅସୁରଦିଘି ପୋଖରୀ ଭୂତର ବରଗଛର ବର୍ଣ୍ଣନାରେ ଯେଉଁ ହାସ୍ୟରସ ସୃଷ୍ଟି କରାଯାଇଛି ତାହା ନିର୍ମଳ ହାସ୍ୟରସ ନୁହେଁ ବରଂ ସାମାଜିକ ସମସ୍ୟାର ଉପସ୍ଥାପନା ପାଇଁ ଅଭିପ୍ରେତ । ନିର୍ମଳ ହାସ୍ୟ ଯେ ଉପନ୍ୟାସ ଛମାଣ ଆଠଗୁଣ୍ଠରେ ନାହିଁ ଏପରି ନୁହେଁ । ଚମ୍ପାର ଠାଣି, ଗୁରୁ ବୈଷ୍ଣବାଣୀ ଭିତରେ ନିର୍ମଳ ହାସ୍ୟରସର ମଧୁମାସ ସୃଷ୍ଟି ହୋଇଛି । ଯାହାର ସୁମଧୁର ସ୍ପର୍ଶରେ ପ୍ରତ୍ୟେକ ପାଠକର ଅନ୍ତରରେ ଭାବାନ୍ତର ଆସିବାର ପଥ ପରିଷ୍କାର ହୋଇପାରିଛି ।

ଅଘଟଣ ଅପେକ୍ଷା ବର୍ଣ୍ଣନା ବୈଭବରେ ଉପନ୍ୟାସର ଅଙ୍ଗ, ଶୋଭାବମଣ୍ଡିତ ହୋଇ ପାଠକର ମନକୁ ଆକୃଷ୍ଟ କରିଛି । 'ଚାଙ୍ଗୀ ମାଉସୀ' ଶୀର୍ଷକ ପରିଚ୍ଛେଦରେ ସ୍ନାନପୂର୍ଣ୍ଣିମା ଦିନ ଦଣ୍ଡଦ୍ୱାରର ଯେଉଁ ଚିତ୍ର ଦିଆଯାଇଛି ସେଥିରୁ ଫକୀରମୋହନଙ୍କର ସୂକ୍ଷ୍ମଦୃଷ୍ଟି ସମ୍ପର୍କରେ ଏକ ସ୍ଥୂଳ ଧାରଣା କରାଯାଇ ପାରେ । ଫକୀରମୋହନଙ୍କ ଭାଷାରେ—'ଆକାଶରେ ଗୋଟିଏ କାଉ କୋଇଲି ଉଡ଼ିବାକୁ ନାହିଁ, ପଥ ମଧ୍ୟରେ ଲୁଚି ଆଁ କରି ବସିଅଛନ୍ତି ।'

ପୁଣି 'ଅସୁରଦିଘି' ଶୀର୍ଷକ ପରିଚ୍ଛେଦରେ ପୋଖରୀର ସୃଷ୍ଟି ରହସ୍ୟ, ଅବସ୍ଥିତି, ଏହାର ତୁଠର ବର୍ଣ୍ଣନା, ଗାଧୁଆବେଳେ ଢଙ୍କିଶାଳରୁ ଢେଙ୍କାନାଳ ଯାଏ ଆଲୋଚନା, ସିଦ୍ଧି ପୁରାଣଠାରୁ ନିଷିଦ୍ଧ ପୁରାଣ ଯାଏ ସବୁର ଆବୃତ୍ତି ଓ ଆଲୋଚନା ସେନାପତି ଲେଖନୀରେ ଅତ୍ୟନ୍ତ ବାସ୍ତବ ଭାବରେ ରୂପଲାଭ କରିଛି । ଦାନ୍ତ-ଘଷିବା ବେଳରେ ପୋଖରୀ ପାଣି ଉପରେ ହରରଙ୍ଗୀ ଫୁଲ ଫୁଟେ, ମାଈକିନିଆମାନେ ପୋଖରୀରୁ ମାଠିଆରେ ଯେତେ ପାଣି ନିଅନ୍ତି, ତାର ପାଞ୍ଚଗୁଣ ଜଳ ଛାଡ଼ିଯାଆନ୍ତି ଇତ୍ୟାଦି ପ୍ରସଙ୍ଗ ପଢ଼ିଲେ ସେନାପତିଙ୍କର ଗଭୀର ଅନ୍ତର୍ଦୃଷ୍ଟି ଓ ଗମ୍ଭୀର ରଚନାଶୈଳୀକୁ ପ୍ରଶଂସା ନ କରି ରହି ହୁଏ ନାହିଁ ।

ସାଙ୍ଗୀତିକତାର ମୋହନମାଧୁରିମାରେ ସେନାପତିଙ୍କ ସ୍ପର୍ଶ-କାତର ଚିତ୍ତ ଆବଶ୍ୟକ ସ୍ଥଳେ ଆତ୍ମପ୍ରକାଶ କରିଛି । ସଂସ୍କୃତ ଶ୍ଳୋକ, ଓଡ଼ିଆ ଲଳକା, ଢଗଢମାଳି, ପ୍ରବଚନ ପ୍ରଭୃତିର ଯଥା-ଯୋଗ୍ୟ ବ୍ୟବହାର କରାଯାଇ ଥିବାରୁ ଗଦ୍ୟ ସାହିତ୍ୟରେ ମଧ୍ୟ ପଦ୍ୟର ମାଦକ ସ୍ପର୍ଶ ଅନୁଭୂତ ହୁଏ ।

ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କଲେ ଜଣାଯାଏ ଯେ ଫକୀରମୋହନ ଯାହା କହିବାକୁ ଚାହିଁଛନ୍ତି ସବୁ କହିଛନ୍ତି, ପାଠକମାନେ ତାଙ୍କ ମନର ସବୁ କଥା ବୁଝିପାରିଛନ୍ତି । କିନ୍ତୁ ଭାଷାରେ ନୁହେଁ ଭାବରେ, ଗୀତରେ ନୁହେଁ ରାଗ ଓ ତାଳରେ । ତାହାଙ୍କୁ ଉପନ୍ୟାସର ଭାଷାରେ କେଉଁଠାରେ ଅସ୍ୱାଭାବିକତା ନାହିଁ, ବେଶ ସରଳ, ସାଧାରଣ ଭାଷା, କିନ୍ତୁ ତାର ଭିତରେ ଭାବର ଯେଉଁ ଅବିଚ୍ଛିନ୍ନ ପ୍ରବାହ ରହିଛି ତାହା ପାଠକକୁ ମନ୍ତ୍ରମୁଗ୍ଧ କରିଥାଏ । ପାଠକ ମୁକ୍ତ କଣ୍ଠରେ ସ୍ୱୀକାର ଓ ସ୍ରଷ୍ଟା ଫକୀରମୋହନଙ୍କର ପ୍ରଶଂସା ନ କରି ରହିପାରେ ନାହିଁ । କେବଳ ପ୍ରଶଂସା ନୁହେଁ, ଏ ଜାତିର ଆତ୍ମରକ୍ଷା ଓ ଆତ୍ମପ୍ରତିଷ୍ଠା ପାଇଁ ଆୟୋଜିତ ସଂଗ୍ରାମରେ ସେନାପତି ସାଜିଥିବା ଫକୀରମୋହନ ପ୍ରତି ଅଶେଷ ସମ୍ମାନରେ ମଥା ନତ କରି, କବି ବନ୍ଧୁବର ପ୍ରଭାତଙ୍କ ସହ ସ୍ୱର ସାମିଲ କରି ପ୍ରତ୍ୟେକ ଓଡ଼ିଆ ପାଠକ କହନ୍ତି—

"ଘୋର ତମିସ୍ରାର ଉଆଁସ ଅନ୍ଧାରେ
ଜାଳି ଚନ୍ଦ୍ରମା ବତି,
ବାସ୍ତବେ ତୁମେ ବୋଲାଇଛ ପରା
ଏ ଜାତିର ସେନାପତି ।"

× × ×

## ସହାୟକ ଗ୍ରନ୍ଥସୂଚୀ


୧ । ଗଳ୍ପ ନୁହେଁ ସମାଲୋଚନା—ଡଃ. ନଟବର ସାମନ୍ତରାୟ ।
୨ । ଫକୀରମୋହନ ସମୀକ୍ଷା—ସୁରେନ୍ଦ୍ର ମହାନ୍ତି ।

୩ । ସାହିତ୍ୟ ସାଧକ ଫକୀରମୋହନ—ଅଧ୍ୟାପକ ଚିନ୍ତାମଣି ଦାଶ

୪ । ଔପନ୍ୟାସିକ ଫକୀରମୋହନ—ଅଧ୍ୟାପକ ଉପେନ୍ଦ୍ର ମିଶ୍ର ।

୫ । ଯୁଗସ୍ରଷ୍ଟା ଫକୀରମୋହନ—ଯଜ୍ଞେଶ୍ୱର ଦାଶ ।

୬ । ଓଡ଼ିଆ ସାହିତ୍ୟର ଇତିହାସ—ଡଃ. ନଟବର ସାମନ୍ତରାୟ ।

୭ । ଓଡ଼ିଆ ସାହିତ୍ୟର ଇତିହାସ—ଅଧ୍ୟାପକ ପଠାଣି ପଟ୍ଟନାୟକ

୮ । ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ—
ସଂ- ଭୋଳାନାଥ ରାଉତ ଓ ପଠାଣି ପଟ୍ଟନାୟକ

୯ । ଫକୀରମୋହନଙ୍କ କୃତିରୁ ପ୍ରତିଫଳିତ ସମକାଳୀନ
ସମାଜ ଚିତ୍ରର ଏକ ଅଧ୍ୟୟନ—ଥେସିସ୍ ପାଣ୍ଡୁଲିପି
ଡଃ. ଅସିତ୍ କବି

୧୦ । ଫକୀରମୋହନଙ୍କ ସାହିତ୍ୟରେ ସମକାଳୀନ
ଓଡ଼ିଶାର ଚିତ୍ର—( ଥେସିସ୍ ପାଣ୍ଡୁଲିପି )
ଡଃ. ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି



# ଶିଶୁ ସାହିତ୍ୟିକ ଫକୀରମୋହନ

**ଶ୍ରୀମତୀ ଜୟ୍ନା ଦାସ**
ଷଷ୍ଠ ବର୍ଷ ଓଡ଼ିଆ ଭାଷା ଓ ସାହିତ୍ୟର ଛାତ୍ରୀ
ବାଣୀବିହାର, ଉତ୍କଳ ବିଶ୍ୱବିଦ୍ୟାଳୟ

ପ୍ରତି ଯୁଗର ଧ୍ୱାନମୟ, ରସମୟ ଓ ଭାବମୟ ମାନସର ପ୍ରତିବିମ୍ବନ ସାହିତ୍ୟ ସୃଷ୍ଟିରେ ଦୃଷ୍ଟିଗୋଚର ହୁଏ । ସାହିତ୍ୟର ଇତିହାସ ହେଉଛି ଗୋଟିଏ ଜାତିର ପ୍ରବହମାନ, ଗତିଶୀଳ ଓ ଚିନ୍ତାଶୀଳ ଭାବଧାରାର ଇତିହାସ । ସହସ୍ର ହୃଦୟର ରମ୍ୟସ୍ପନ୍ଦନର ତାହା ଲୀଳାନିକେତନ,—ସହସ୍ର ଅନୁଭୂତିର ସୌରଭରେ ତାହା ଏକ ବିକଚ ଶତଦଳ । ପ୍ରତି ଯୁଗର କବି ଯୁଗ ଓ ଜାତିର ନିଭୃତ ଚିତ୍ତଚନ୍ଦନର କଥାକାର । ଜନ୍ମଭୂମିର ଧୂଳି-ମାଟି, ପାଣି, ପବନକୁ ସାହିତ୍ୟରେ ମୂର୍ତ୍ତିମନ୍ତ କରି ଯଦି କେହି ଲେଖଣୀକୁ ଅମର କରିଥାଏ, ଫୁଲ ଚନ୍ଦନିତ କରିଥାଏ, ତେବେ ସେ ହେଉଛନ୍ତି ଆମର ବରେଣ୍ୟ କଥାଶିଳ୍ପୀ ଫକୀରମୋହନ । ସେ ଏକାଧାରରେ ଯେପରି ଗାଳ୍ପିକ ଔପନ୍ୟାସିକ ସେହିପରି ମଧ୍ୟ ଶିଶୁ ସାହିତ୍ୟିକ । ଶିଶୁର ତରଳ ପ୍ରାଣରେ ଗଭୀର ପ୍ରଭାବ ପକାଇ ପାରୁଥିବା ଶିଶୁ ଉପଯୋଗୀ ନିର୍ଦ୍ଦିଷ୍ଟ ପୁସ୍ତକ ପ୍ରଣୟନ ଯଦିଓ ସେ କରିନାହାନ୍ତି ତଥାପି ତାଙ୍କ ବିପୁଳ ସୃଷ୍ଟିର ଅନ୍ତଃସ୍ଥଳକୁ ନିରୀକ୍ଷଣ କଲେ, ପ୍ରତ୍ୟେକ ସୃଷ୍ଟିର ପାଖୁଡ଼ା ଭିତରେ ଯେ ଶିଶୁ ମନଲାଖି ଉପାଦାନ ରହିଛି, ବଳିଷ୍ଠ ପ୍ରେରଣା ରହିଛି; ତାହା ଅସ୍ୱୀକାର କରିହୁଏନି । ହୁଏତ

ମଧୁସୂଦନ ଥିଲେ ଯଥାର୍ଥତଃ ଶିଶୁ ସାହିତ୍ୟିକ । ବର୍ଣ୍ଣମାଳା ତଥା ବର୍ଣ୍ଣବୋଧର ରଚୟିତା ଭାବେ ସେ ଯଦିଓ ଶିଶୁ ସାହିତ୍ୟିକର ଆସନ ଗ୍ରହଣ କରିଛନ୍ତି ତଥାପି 'ଅବସର ବାସରେ', 'ପୁଷ୍ପମାଳା'ର ପ୍ରତିଟି ପରାଗରେଣୁ ଭିତରୁ ଏକ ବିରହବଧୂର ନାଦ୍‌କର କରୁଣ ଆତ୍ମଲିପି ଭିତରେ ଶିଶୁମାନଙ୍କୁ ହିଁ ଉପଦେଶ ଦେଇପାରିଛନ୍ତି ଫକୀରମୋହନ ।

ରଚନା, ଶୈଳୀ ଓ କଥାବସ୍ତୁ ଦୃଷ୍ଟିରୁ ଫକୀରମୋହନଙ୍କ ଗଳ୍ପଗୁଡ଼ିକ ଅପୂର୍ବ । ସାମାଜିକ ଉଦ୍ଦେଶ୍ୟରେ ଏ ଗଳ୍ପଗୁଡ଼ିକ ଲେଖା ଯାଇଥିଲା । ସମାଜର ନାନା ଦୁର୍ନୀତି, ଅନ୍ୟାୟ, ଅନାଚାର ଓ କୁସଂସ୍କାର ବିରୁଦ୍ଧରେ ଫକୀରମୋହନ ଏହି ଗଳ୍ପଗୁଡ଼ିକ ମାଧ୍ୟମରେ ହିଁ ସଂଗ୍ରାମ ଘୋଷଣା କରିଥିଲେ । ଏ ଗଳ୍ପଗୁଡ଼ିକରେ ପୁଣି ଏକ ସ୍ପଷ୍ଟ ନୀତିଶିକ୍ଷା ଥିଲା । କେବଳ ଆଈମା'ର କାହାଣୀ ଶୁଣି ଏ ଦେଶର ଶିଶୁ କଣ ସନ୍ତୁଷ୍ଟ ହୋଇପାରିଥିବ । ସେଥିପାଇଁ ବୋଧେ ଫକୀରମୋହନ ହିଁ ପ୍ରଥମେ ଗଳ୍ପ ଛଳରେ ଭବିଷ୍ୟତର ବଂଶଧରଙ୍କୁ ଉପଦେଶ ତଥା ସମସାମୟିକ ସମାଜର ଚିତ୍ର ଦେଇଛନ୍ତି । ତାଙ୍କର 'ରେବତୀ' ଓ 'ରାଣ୍ଡିପୁଅ ଅନନ୍ତା' ଗଳ୍ପ ଦୁଇଟି ଓଡ଼ିଆ କ୍ଷୁଦ୍ରଗଳ୍ପ ସାହିତ୍ୟରେ ଦୁଇଟି ସାର୍ଥକ ଓ ସୁନ୍ଦର ସୃଷ୍ଟି । କଥାକାର 'ରେବତୀ' ଗଳ୍ପରେ ରେବତୀର ପାଠ ପଢ଼ିବା ପାଇଁ ତା' ପାଖକୁ ଯେଉଁ ଛବି ବହିଟି ଆଣି ଦେଇଛନ୍ତି, ତାହା ହିଁ ଶିଶୁକୁ ପାଠ ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କରାଇଥାଏ । 'ରାଣ୍ଡିପୁଅ ଅନନ୍ତା' ଗଳ୍ପର ଅନନ୍ତା ଚରିତ୍ର ହିଁ ଶିଶୁ-ଉପଯୋଗୀ ଚରିତ୍ର ଯାହାଠାରୁ ଶିକ୍ଷାପାଇ ଆଜିର ଶିଶୁ ଅତ୍ୟନ୍ତ ନିଃସହାୟ ଅବସ୍ଥାରେ ମଧ୍ୟ ଦୃଢ଼ ମନୋବଳ ସଞ୍ଚୟ କରିପାରିବ । 'ରେବତୀ', 'ରାଣ୍ଡିପୁଅ ଅନନ୍ତା' ଓ 'ଡାକମୁନସୀ' ଗଳ୍ପରେ ସେ ସମାଜର ବିଭିନ୍ନ ଶ୍ରେଣୀର

ବିଭିନ୍ନ ପ୍ରକାରର ଚରିତ୍ର ସୃଷ୍ଟି କରିଛନ୍ତି । 'ପେଟେଣ୍ଟମେଡ଼ିସିନ୍'ରେ ସାଆନ୍ତାଣୀର ଚରିତ୍ର ଅତି ବାସ୍ତବ ଓ ଅତି ମର୍ମସ୍ପର୍ଶୀ ହୋଇଉଠିଛି । ପୁଣି ଇଂରାଜୀ ଶିକ୍ଷିତ ନଗୋପାଳର ଚରିତ୍ର ମଧ୍ୟରେ ଇଂରାଜୀ ଶିକ୍ଷା ଓ ସଭ୍ୟତା ପ୍ରତି ବିଦ୍ରୂପାତ୍ମକ ଇଙ୍ଗିତ ପରିଲକ୍ଷିତ ହୁଏ । ଧୂଳିଆବାବା, 'ସୁନାଦେବୋହୂ', 'ବିରେଇ ବିଶାଳ', 'ଗାରୁଡ଼ିମନ୍ତ୍ର', 'ଅଧର୍ମବିତ୍ତ', 'ସଭ୍ୟ ଜମିଦାର', ପ୍ରଭୃତି ଗଳ୍ପ ମଧ୍ୟରେ ଓଡ଼ିଆ ସମାଜର ଜୀବନ୍ତ ଚିତ୍ର ଦେଖିବାକୁ ମିଳେ । ସମାଜରେ ଘଟିଯାଉଥିବା ଘଟଣାବଳୀକୁ ଶିଶୁ ତା'ର ସରଳ ମନରେ ଉପଲବ୍ଧି କରି ପାରେନା ମାତ୍ର ଗଳ୍ପ ଛଳରେ ଫକୀରମୋହନ ଯାହା ସୃଷ୍ଟି କରି ଯାଇଛନ୍ତି ତାହାହିଁ ଶିଶୁକୁ ସମାଜ ବିଷୟରେ ଏକ ସ୍ଥୂଳ ଧାରଣା ଦେଇପାରିଥାଏ । ତାଙ୍କ ସୃଷ୍ଟି ଦ୍ୱାରା ସାମାଜିକ ନୀତି-ନିୟମ, କୁସଂସ୍କାରକୁ ଅନୁଭବ କରିବାକୁ ଶିଶୁ ସମର୍ଥ ହୁଏ । ଶିକ୍ଷାପ୍ରତି ନାରୀ ଜାତିର ପ୍ରତିକୂଳ ଅଭିମତ ପୋଷଣ ( ରେବତୀ ), ଧର୍ମ ନାମରେ ଭଣ୍ଡାମିର ପରିପ୍ରବୃର ( ଧୂଳିଆବାବା, ମୌନାମୌନୀ ) ଧନ ଲୋଭରେ କନ୍ୟା ବିକ୍ରୟ (ବିରେଇ ବିଶାଳ, ମାଧ ମହାନ୍ତିଙ୍କ କନ୍ୟାସୁନା , ନୂତନ ଶିକ୍ଷା ନାମରେ ମଦ୍ୟପାନ ଓ ବେଶ୍ୟାସଙ୍ଗ ( ପେଟେଣ୍ଟମେଡ଼ିସିନ୍ ), ଆଧୁନିକ ଶିକ୍ଷାଲବ୍ଧ ହେତୁ ଗୁରୁଜନମାନଙ୍କୁ ହତାଦର ପ୍ରଦର୍ଶନ ( ଡାକମୁନ୍‌ସୀ ), ସ୍ୱଳ୍ପ ଶିକ୍ଷିତ ଯୁବକମାନଙ୍କର ବିଳାସ ବ୍ୟସନ ପ୍ରତି ଅତ୍ୟଧିକ ମମତା ପ୍ରକାଶ ( ସଭ୍ୟ ଜମିଦାର ) ପ୍ରଭୃତି ବିଷୟକୁ ଫକୀରମୋହନ ଯଥାଯଥ ଭାବରେ ଚିତ୍ରଣ କରିପାରିଛନ୍ତି—ଯେଉଁଥିରେ ଚମକ୍ ଲାଗେ, ଶିଶୁର ଆଖି ବିସ୍ତାରିତ ହୋଇଯାଏ ।

ମାଧ ମହାନ୍ତି କନ୍ୟାସୁନା ପାଇଁ କମ୍ପା 'ଗାରୁଡ଼ିମନ୍ତ୍ର'ର ବୋହୂ ଲଜ୍ଜା ନିବାରଣ ପାଇଁ ଯେଉଁ ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି, ସେଇ ପରିସ୍ଥିତି ପୁନର୍ମୂଷିକୋଽଭବ କମ୍ପା 'ସୁନା ବୋହୂ'

ପରି ଗଳ୍ପରେ ଅତି ପ୍ରାକୃତିକ ଓ ବାସ୍ତବ ବାୟୁମଣ୍ଡଳରେ ପରିପୁଷ୍ଟି କିନ୍ତୁ 'ପେଟେଣ୍ଟମେଡ଼ିସିନ୍', 'ଗାରୁଡ଼ିମନ୍ତ୍ର', 'ପାଟୋଇ ବୋହୂ' ଗଳ୍ପରେ ଏହା ବାସ୍ତବ ଅବାସ୍ତବର ମିଳନ କ୍ଷେତ୍ର ବୋଲି ମନେହୁଏ । 'ରେବତୀ' ଗଳ୍ପର ଶ୍ୟାମବନ୍ଧୁ ମହାନ୍ତି ନୂତନ-ପନ୍ଥୀ ବା ନୂତନ-ସୃଷ୍ଟି ଏକ ମଧ୍ୟବିତ୍ତ ଶ୍ରେଣୀର ଅନ୍ତର୍ଗତ, କିନ୍ତୁ ବୁଢ଼ୀମା ଏ ଦେଶ ଜନତାର ପ୍ରତୀକ—ଯେଉଁ ଜନତାର ଶିକ୍ଷା ପାଇଁ କେହି କେବେ ମୁଣ୍ଡ ଖେଳେଇ ନଥିଲେ । ଶିକ୍ଷା ବିଷୟରେ ଅବହେଳିତ ଏହି ଜନତା ଯୁଗ ଯୁଗ ଧରି ଯେଉଁ ମନୋବୃତ୍ତି ପୋଷଣ କରି ଆସିଛି ପରିବର୍ତ୍ତିତ ସାମାଜିକ ଅବସ୍ଥାରେ ମଧ୍ୟ ବୁଢ଼ୀମା' ସେହି ମନୋବୃତ୍ତିକୁ ଅତି ଆଦରରେ ଧରି ରଖିଛି । କାହାଣୀ ଯୁଗର ସନ୍ଧିକ୍ଷଣରେ ସେନାପତି ଗଳ୍ପଗୁଡ଼ିକ ରଚନା କରିଥିବାରୁ ସେ ଏଥିରେ କାହାଣୀ-ସୁଲଭ ଘଟଣାବଳୀ ଅର୍ଥାତ୍ ନେତ୍ରମୁଗ୍ଧକାରୀ ପରିସ୍ଥିତି ହିଁ ଦେଇଛନ୍ତି । ଓଡ଼ିଆ ସାହିତ୍ୟରେ ଆଧୁନିକ କ୍ଷୁଦ୍ରଗଳ୍ପର ଜନ୍ମଦାତା ଥିଲେ ଫକୀରମୋହନ । ୧୮୬୮ ସାଲରେ ସେ ବାଲେଶ୍ୱରରେ ଶିକ୍ଷକତା କରୁଥିବା ସମୟରେ 'ବୋଧଦାୟିନୀ' ପତ୍ରିକାରେ 'ଲଛମନିଆ' ଶୀର୍ଷକ ଗୋଟିଏ କ୍ଷୁଦ୍ରଗଳ୍ପ ଲେଖିଥିଲେ । ସମଗ୍ର ଭାରତୀୟ ସାହିତ୍ୟରେ ତାହାହିଁ ହୁଏତ ସର୍ବ ପ୍ରଥମ ଆଧୁନିକ କ୍ଷୁଦ୍ର-ଗଳ୍ପ । ସେଦିନ ଶିକ୍ଷକ ଫକୀରମୋହନଙ୍କ ଅନ୍ତରରେ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' ଯେଉଁ ପ୍ରଭାବ ପକାଇଥିଲା ତା'ର ଫଳରେ ଜନ୍ମ ନେଇଥିଲା ଓଡ଼ିଆର ସ୍ୱତନ୍ତ୍ର ସାହିତ୍ୟ । ସେ ହିଁ ପ୍ରଥମ କରି ଓଡ଼ିଆ ଭାଷା ପଢ଼ିବା ପାଇଁ ଲେଖିବା ପାଇଁ ପ୍ରେରଣ ଦେଇଥିଲେ ଶିଶୁ-ମାନଙ୍କୁ । ପ୍ରତି ଗଳ୍ପର ଛତ୍ରେ ଛତ୍ରେ ଶିଶୁର ମନ ସମ୍ମୋହନ ପାଇଁ ଯଥେଷ୍ଟ ଉପାଦାନ ଯୋଗାଇ ପାରିଥିଲେ ।

ସାଧାରଣ ମଣିଷର ଜୀବନଯାପନ ପ୍ରଣାଳୀ ଓ ତା'ର ସାମାଜିକ ପରିବେଶରେ ଚରିତ୍ରର ସମବିକାଶ ଫକୀରମୋହନ ଅତି

ଦକ୍ଷତାର ସହିତ ଯଥାର୍ଥ ରୂପେ ବର୍ଣ୍ଣନା କରିଛନ୍ତି । ଏଥିରୁ ଜଣା-ପଡେ ଯେ ଓଡ଼ିଆ ଜାତିପ୍ରାଣର ବାହ୍ୟିକ ପରିବେଶ ଓ ତାର ଅନ୍ତରର କରୁଣ ଧ୍ୱନିକୁ ମର୍ମେ ମର୍ମେ ଅନୁଭବ କରିଥିଲେ । ସେ ଥିଲେ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଜାତୀୟ ଔପନ୍ୟାସିକ । ଫକୀର-ମୋହନଙ୍କ ପୂର୍ବରୁ ଉମେଶ ଚନ୍ଦ୍ର ଓ ରାମଶଙ୍କର ଓଡ଼ିଆରେ ଯଥାକ୍ରମେ 'ପଦ୍ମମାଳୀ' ଓ 'ବିବାସିନୀ' ପ୍ରଭୃତି ଉପନ୍ୟାସ ପ୍ରଣୟନ କରିଥିଲେ ସୁଦ୍ଧା, ଫକୀରମୋହନଙ୍କ ପ୍ରତିଭା ଓ କଳାସିଦ୍ଧି ଉପନ୍ୟାସକୁ ଓଡ଼ିଆ ସାହିତ୍ୟରେ ଏକ ନୂତନ ପ୍ରତିଷ୍ଠା ଓ ମର୍ଯ୍ୟାଦା ପ୍ରଦାନ କରିଥିଲା । ଅତୀତର ଐତିହ୍ୟରୁ ସ୍ୱପ୍ନପ୍ରବଣ ଓ ସମ୍ମୋହିତଦୃଷ୍ଟି ପ୍ରତ୍ୟାହାର କରି ଉପସ୍ଥିତ ବର୍ତ୍ତମାନରେ ସମାଜର କଠୋର ଓ ବିକଟ ବାସ୍ତବତା ପ୍ରତି ଫକୀରମୋହନ ଯେପରି ଲେଖକ, ଚିନ୍ତକ ଓ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ, ପୁଣି ରୋମାନ୍ସଧର୍ମୀ ଐତିହାସିକ ଉପନ୍ୟାସ ପରିବର୍ତ୍ତେ ସମସ୍ୟାଧର୍ମୀ ସାମାଜିକ ଉପନ୍ୟାସର ଧାରା ପ୍ରବର୍ତ୍ତନ କରିଥିଲେ—ତାହା କେବଳ ଓଡ଼ିଆ ଉପନ୍ୟାସ ନୁହେଁ; ସମଗ୍ର ଶିଳ୍ପ ପ୍ରାଣରେ ଏକ ଯୁଗାନ୍ତର ସୃଷ୍ଟି କରି-ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଉପନ୍ୟାସରେ ହାସ୍ୟରସ ଶ୍ରିତ ଶୈଳୀ ଓ ବର୍ଣ୍ଣନାଭଙ୍ଗୀ ଦ୍ୱାରା ସେ ସଚେତନ ପାଠକକୁ ଯେଉଁ ପରିମାଣରେ ଆକୃଷ୍ଟ କରିଛନ୍ତି, ଶିଶୁର ମନରେ ମଧ୍ୟ ସେହିପରି ଗଭୀର ଛାପ ପକାଇ ପାରିଛନ୍ତି । ଓଡ଼ିଶାରେ ସେତେବେଳେ ସାକ୍ଷର ସଂଖ୍ୟା ଅତି କମ୍ ଥିବାରୁ, ପୁଣି ଉପନ୍ୟାସ ସେତେବେଳ ପର୍ଯ୍ୟନ୍ତ ସୁଦ୍ଧା ସାହିତ୍ୟିକ ମାଧ୍ୟମ ରୂପେ ପ୍ରତିଷ୍ଠିତ ହୋଇ ନ ଥିବାରୁ ଫକୀରମୋହନ ନିଜର ଉପନ୍ୟାସଗୁଡ଼ିକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ, ପୁଣି ନିରକ୍ଷର ଜନତା ମଧ୍ୟରେ ପ୍ରବେଶ ଲାଭ ପାଇଁ, ଆବୃତ୍ତି ଉପଯୋଗୀ ଶୈଳୀ ଅବଲମ୍ବନ କରିଥିଲେ । ଏହା ଫଳରେ

ତାଙ୍କର ଉପନ୍ୟାସମାନ ମଫସଲରେ ନିରକ୍ଷର ଜନତା ମଧ୍ୟରେ ସୁଦ୍ଧା ପରିଚିତ ଓ ଅଦୃତ ହେଉଥିଲା । 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସ ସମ୍ପର୍କରେ ଫକୀରମୋହନ 'ଆତ୍ମଚରିତ'ରେ ଲେଖିଛନ୍ତି—ଏହି ଉପନ୍ୟାସ ( ଛ'ମାଣ ଆଠଗୁଣ୍ଠ ) ଲିଖିତ ରାମଚନ୍ଦ୍ର ମଙ୍ଗରାଜର ମକଦ୍ଦମାର ବିବରଣ ଯେତେବେଳେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହେଉଥିଲା, ସେତେବେଳେ ମଫସଲରୁ କେତେକ ଅଜ୍ଞ ଲୋକ ମକଦ୍ଦମା ବିଚାର ଦେଖିବା ପାଇଁ କଟକ ଆସିଥିଲେ ।" 'ଲଛମା'ର ପୃଷ୍ଠାରେ ପୃଷ୍ଠାରେ ବର୍ଗୀବିଧ୍ୱସ୍ତ ଓଡ଼ିଶାର ଆଲେଖ୍ୟ, ଆଲିବର୍ଦ୍ଦିଙ୍କ ଫୌଜ—କୁଚ୍ ବା ଉତ୍କଳର ରାଜନୈତିକ ସ୍ୱାଧୀନତାର ଶେଷଦୃଶ୍ୟ 'ଗପୂବଣିଆ'ର ଚିତ୍ର, 'ଛମାଣ ଆଠଗୁଣ୍ଠ'ରେ ଓଡ଼ିଶାର ପଲ୍ଲୀସମାଜ ଓ ପଲ୍ଲୀ-ଜୀବନର ଜୀବନ୍ତ ଚିତ୍ରଣ ଭିତ ସକଳ ଶିଶୁପ୍ରାଣ ଆକୃଷ୍ଟ ହୋଇ ପଡ଼ିଥାଏ । 'ଛମାଣ ଆଠଗୁଣ୍ଠ'ରେ ହାସ୍ୟରସର ଅବିଶ୍ରାନ୍ତ ଉଚ୍ଛ୍ୱାସ ଜୀବନ୍ତରୂପ ଧାରଣ କରିଥିବାର ଦେଖାଯାଏ । ଓଡ଼ିଆ ଭାଷାକୁ ସାହିତ୍ୟରେ ମୂର୍ତ୍ତିମନ୍ତ କରି ଶିଶୁ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିବା ପାଇଁ ବିଭିନ୍ନ ଭାଷାର ଶବ୍ଦକୁ ଆଣି ଓଡ଼ିଆ ଭାଷା ଭିତରେ ଖଞ୍ଜି ଦେଇଛନ୍ତି । ଫକୀରମୋହନ ତାଙ୍କର ଉପନ୍ୟାସଗୁଡ଼ିକରେ ଯଥା ସ୍ଥାନରେ ଦ୍ୱନ୍ଦ୍ୱ ଓ ପରିଣତିରେ ଉତ୍କଣ୍ଠାର ଅବତାରଣା କରିଛନ୍ତି । 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ସେ ଶିଶୁ-ଚରିତ୍ରରେ ଅନ୍ତର୍ଦ୍ୱନ୍ଦ୍ୱ ଦେଖାଇଛନ୍ତି । ଏକ ପକ୍ଷରେ ଗୋବିନ୍ଦ ମନରେ ଦ୍ୱନ୍ଦ୍ୱ—ସେ ଇନ୍ଦୁମଣିକୁ ବିବାହ କରିବ କି ନାଁ, ଅପର ପକ୍ଷରେ ଇନ୍ଦୁମଣି ମନ ମଧ୍ୟରେ ବି ସେହି ଏକା ଦ୍ୱନ୍ଦ୍ୱ—ନିଜର କବିତା ନ ହୋଇ ସେଥିରେ ସେ ଦସ୍ତଖତ କରିବ କି ନାଁ ? 'ଛମାଣ ଆଠଗୁଣ୍ଠ'ରେ ଏକଦା ସମ୍ଭ୍ରାନ୍ତ ରାମଚନ୍ଦ୍ର, ଜମିଦାର ହୋଇଥିବା ପ୍ରସଙ୍ଗ ଶିଶୁ-ମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇବା ପାଇଁ ଉପାଦାନ

ଯୋଗାଇଥାଏ । ଦେଶର ଅଶିକ୍ଷିତ ମନେ ପକାଇଦିଏ 'ଲଛମା' ଉପନ୍ୟାସ । ମରହଟ୍ଟା ଜାତି ଏ ଦେଶରେ ଅରାଜକତାର କି ତାଣ୍ଡବଲୀଳା ଖେଳାଇଥିଲ, ତାହା ଏଥିରେ ସୁସ୍ପଷ୍ଟ । ଫକୀରମୋହନ ତାଙ୍କର ମହତ୍ ଚରିତ୍ରଗୁଡ଼ିକ ମଧ୍ୟରେ ସାରିଆ, ଭଗିଆ, ବାଦଲ-ସିଂହ, ସେବାପରାୟଣା ସରସ୍ୱତୀ ଦେଈ ଓ ମଙ୍ଗରାଜ ସ୍ତ୍ରୀ ପରି ସହିଷ୍ଣୁ ଚରିତ୍ର ସୃଷ୍ଟି କରି ପାଠକ ମନରେ ସମବେଦନା ଓ ସହାନୁଭୂତି ଜାଗ୍ରତ କରିଛନ୍ତି । ତେଣୁ ସେ ପାଠକ ହୃଦୟକୁ ଏକ ଉନ୍ନତ ଓ ମହତ୍ ସ୍ତରକୁ ନେବାପାଇଁ ଗଭୀର ପ୍ରେରଣା ଦେଇଛନ୍ତି । ତାଙ୍କର କୌଣସି ଉପନ୍ୟାସ ନିର୍ଦ୍ଦିଷ୍ଟ ଭାବେ ଶିଶୁମାନଙ୍କ ପାଇଁ ରଚିତ ନୁହେଁ; ତଥାପି ସେ ଅତି ଚତୁରତାର ସହିତ ପ୍ରତି ଉପନ୍ୟାସରେ ଯେପରି ଭାବରେ ଶିଶୁ ମନଲୋଭି ଭାଷା, ଶିଶୁ ଚରିତ୍ର ଓ ହାସ୍ୟରସର ଅବତାରଣା କରିଛନ୍ତି, ଉପନ୍ୟାସଗୁଡ଼ିକ ଯେ ଶିଶୁ ଉପଯୋଗୀ ନୁହେଁ ତାହା କହି ହେବ ନାହିଁ । ତାଙ୍କ ପ୍ରତିଭାର କାଞ୍ଚନ ସ୍ପର୍ଶରେ ଅବହେଳିତ ଓଡ଼ିଆ ଭାଷା ନବୀନ ଯୌବନ ନେଇ ଜାଗ୍ରତ ହୋଇ ଉଠିଲା । ଭାଷାକୁ ସେ ରୁଦ୍ଧ କୂପଜଳ ନକରି ସ୍ରୋତସ୍ୱିନୀର ସ୍ରୋତ ରୂପେ ହିଁ ଜୀବନ୍ୟାସ ଦେଲେ । ତାଙ୍କ ଯୋଗୁ ଓଡ଼ିଆ ଭାଷା କବି ଭୂପତି ପଣ୍ଡିତଙ୍କର ବାଞ୍ଛିତ—"ଭାଷା ସୁପକ୍ୱ ରମ୍ଭା ପ୍ରାୟ, ଅପୂର୍ବ ଗନ୍ଧ ସ୍ୱାଦୁମୟ" ହେଲା ।

ଫକୀରମୋହନଙ୍କର ସମଗ୍ର ପଦ୍ୟ ସାହିତ୍ୟକୁ ତିନିଗୋଟି ବିଭାଗରେ ବିଭକ୍ତ କରାଯାଇ ପାରେ । (୧) ପୁରାଣର ଅନୁବାଦ (୨) ଖଣ୍ଡକବିତା ଓ (୩) କାବ୍ୟ । ଓଡ଼ିଆ ପୁରାଣର ଯେଉଁ ଶୈଳୀ ଏ ଦେଶର ଜନଚିତ୍ତକୁ ଯୁଗ ଯୁଗ ଧରି ମୁଗ୍ଧ କରି ଆସୁଥିଲା, ପରମ୍ପରାର ପ୍ରକୃତ ଦାୟାଦ ହିସାବରେ, ସେନାପତି ସେଇ ଶୈଳୀକୁ କୃତ୍ତିବାସୀ ତଥା ଓଡ଼ିଆ ଜାତି ପାଇଁ ନିର୍ବାଚନ କରି

ଅନୁବାଦ କ୍ଷେତ୍ରରେ ହାତ ଦେଇଥିଲେ । ସେଇ ହେତୁରୁ ପୁବ-ବରଷ-ବଧୁଗ୍ରା କୃଷ୍ଣାକୁମାରୀ ଯେତେବେଳେ କୌଶଲ୍ୟାଙ୍କ କରୁଣ କନ୍ଦନରେ ଲୋତକପାତ କରୁଥିଲେ, ସେତେବେଳେ ସେ କାମ୍ବା ଫକୀରମୋହନ ହୁ'ତ ଏତିକି ଜାଣିଥିଲେ, ଯେ ରାମାୟଣ ତାଙ୍କ ପୁସ୍ତ, କିନ୍ତୁ ଏ ଦେଶ ଆଜି ବୁଝୁଛି ଏ ପୁସ୍ତ କେବଳ ସେନାପତି ସୁଟଳଙ୍କର ନୁହେଁ, ଏହା ମଧ୍ୟ ସମଗ୍ର ଓଡ଼ିଆ ଜାତିର ଖାଣ୍ଟି ଓଡ଼ିଆ ପୁଅ । 'ଉପନିଷଦ୍' ହିନ୍ଦୁ ଆଧ୍ୟାତ୍ମିକ ଭାବନାର ଶ୍ରେଷ୍ଠ ସାର ସଂଗ୍ରହ । ବେଦର ଅନ୍ତ ମାଂସଳ କଳେବର ଭିତରେ ବନ୍ଧୁବଦ୍ଧ ଆତ୍ମାର ଶାନ୍ତି ଜୀବନ ଜିଜ୍ଞାସା, ପାରଂପରିକ ଆଚାର ଭିତରେ ଉଜ୍ଜ୍ୱଳ ବିଚାର, ପୁଣି ବିଶ୍ୱସୃଷ୍ଟିର ଅନୈକ୍ୟ ମଧ୍ୟରେ ଐକ୍ୟବନ୍ଧ ମୂଳ ହେତୁର ସନ୍ଧାନ, ଉପନିଷଦକୁ ବିଶ୍ୱସାହିତ୍ୟରେ ଶ୍ରେଷ୍ଠ ଆଧ୍ୟାତ୍ମିକ ସାହିତ୍ୟର ସମ୍ମାନ ପ୍ରଦାନ କରିଅଛି । 'ଉତ୍କଳ ଭ୍ରମଣ'ରେ ସେନାପତି ଏ ଦେଶର ଗୁଣୀ ସନ୍ତାନମାନଙ୍କର ନିର୍ଭୀକ ସମାଲୋଚନା କରି ସେମାନଙ୍କୁ ଏକ ଆଦର୍ଶ ଦେଖାଇଛନ୍ତି । ଏହି କାବ୍ୟରେ ଯୌବନ ଉପରେ ବାର୍ଦ୍ଧକ୍ୟର ସ୍ତର, କୌତୁକ ଉପରେ ବମୃଷ୍ୟକାରିତାର ଆଚ୍ଛାଦନ ପଡ଼ିଯାଇଛି । ତାଙ୍କ ରଚନାରେ ଯଥାର୍ଥ କବିତା ଥିଲା ତାଙ୍କ ପିଲାଦିନର କ୍ଷୁଦ୍ର କ୍ଷୁଦ୍ର କବିତାରେ । ସେ ସବୁ 'ପୁଷ୍ପମାଳା' ଆକାରରେ ଦକ୍ଷିଣର ପାଠ୍ୟପୁସ୍ତକ ହେବାପାଇଁ ସେ କାଳର ଇଙ୍ଗ୍ଲିସ୍ କଲେକ୍ଟର ବିମ୍ସ୍ ସାହେବଙ୍କୁ ବିକି ହୋଇଯାଇଥିଲା । 'ଆତ୍ମଜୀବନ ଚରିତ'ରେ ସେ ଲେଖିଛନ୍ତି—"ମୁଁ ଡୋମପଡ଼ାରେ ଦ୍ୱିତୀୟ ଥର କର୍ମ କରୁଥିବା ସମୟରେ ମୋର ସ୍ତ୍ରୀ କୃଷ୍ଣାକୁମାରୀ ପରଲୋକ ଗମନ କଲେ । ମୋର ସେ ସମୟରେ ଯେଉଁ ଦାରୁଣ କଷ୍ଟ ଉପସ୍ଥିତ ହୋଇଥିଲା ତାହାହିଁ ମୁଁ 'ପୁଷ୍ପମାଳା' ଓ 'ଉପହାର' ଏହି ଦୁଇଖଣ୍ଡି ପୁସ୍ତକରେ ପ୍ରକାଶ କରିଅଛି ।" ଏହା ତାଙ୍କ

ବେଦନା-ବିଦଗ୍ଧ ଜୀବନର ଇସ୍ତାହାର ହେଲେ ହେଁ ସେଥିରେ ପ୍ରକାଶିତ ଅନେକ କବିତା ଶିଶୁ ସାହିତ୍ୟ ଉପଯୋଗୀ ହୋଇ-ପାରିଛି । 'ପ୍ରାର୍ଥନା' କବିତାରେ ସେ ନିଜ ମନର ଆକୁଳ ଭାବନା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏ ଦେଶର ଅଗଣିତ ଶିଶୁମାନଙ୍କୁ ପ୍ରାର୍ଥନା ଦ୍ୱାରା ଭଗବାନଙ୍କ ପାଖରେ ନିଜକୁ ସମର୍ପଣ କରିଦେବା ପାଇଁ ଆହ୍ୱାନ ଜଣାଇଥିଲେ । ଉପଦେଶ ଛଳରେ ସେ ଲେଖିଥିଲେ —

"ନ କରୁ ଚରଣ ମୋର ଅସତ୍ୟ ରସନା
ପରଧନେ କେତେବେଳେ ନ ବଳୁ ବାସନା

× × ×

ଆକାଶ କରିଛୁ ଯେହ୍ନେ ଚନ୍ଦ୍ରମା ଉଜ୍ଜ୍ୱଳ
ମୋ ହୃଦୟ କରୁ ତୁମ୍ଭ ମହିମା ନିର୍ମଳ ।"

'ଜହ୍ନମାମୁଁ' କବିତାରେ 'ଜହ୍ନମାମୁଁ' ସତେ ଯେମିତି ଏ ପୃଥିବୀର ସବୁ ଖବର ରଖିଛି । ସେଥିପାଇଁ ଶିଶୁ ପ୍ରତିଦିନ ଜହ୍ନମାମୁଁଙ୍କୁ ଡାକେ,—ଜଗତର ସବୁ କଥାକୁ ବୁଝି ନେବାକୁ ।

ଫକୀରମୋହନ ମଧ୍ୟ ସେଦିନ କରୁଥିଲେ—

"ସବୁ ମିଛକଥା ମାମୁଁ ସମ୍ପଦର ସାଥୀ
ବିପଦ କାଳରେ କେହି ପାଶରେ ନ ଥାନ୍ତି

× × ×

ତୁ ଅଟୁ କଳଙ୍କୀ ମାମୁଁ ମୁଁ କଳଙ୍କମୟ
ସେହିପରି ମୋର ପୁଣି ଅଛି ବୃଦ୍ଧି କ୍ଷୟ ।"

କଣରେ ଜହ୍ନମାମୁଁଙ୍କୁ ଝୁରି ଆପଣାର ହୋଇ ପଚାରୁଛନ୍ତି—

"ମୋର ଭଣ ତୋତେ ମାମୁଁ ସତ କହି ଦିଅ
ଶୁକ୍ଳପକ୍ଷ ହୁଏ ତୋର ଅମାବାସ୍ୟା ପରେ
ମଲେ କି ମୁଁ ବାହୁଡ଼ିବି ପୁଣି ଆଉ ଥରେ ?"

ଏହି 'କୋଇଲି ନାମ' ଓ 'ବେଙ୍ଗଘର' କବିତା ସତେ-ଯେମିତି ଶିଶୁମାନଙ୍କୁ ଅନୁପ୍ରାଣିତ କରିବା ପାଇଁ ରଚିତ । 'ଡାଆଣୀ ଆଳୁଅ' କବିତାରେ ସେ ପୁଣି ଶିଶୁଟିଏ ହୋଇ ଯିବାକୁ ଇଚ୍ଛା ପ୍ରକାଶ କରିଛନ୍ତି —

"ଅଇଲି ବୟସ ବୁଦ୍ଧି ଗଲି ଡର ଘୁଞ୍ଚି
ପୁଣି କି ସରଳ ବୁଦ୍ଧି ହେବ ପିଲି ପରି ?
ଡାଆଣୀ ଆଳୁଅ ଦେଖୁଥିବି ଡରି ଡରି ।"

ଏ ସମାଜ ସମ୍ପର୍କରେ ଅଗଣିତ ଉପାଦାନ ଅଛି 'ଯୋଷେଫାଇନ'ରେ ସେ ବର୍ଣ୍ଣନା କରିଛନ୍ତି —

ସହଜେ ମାନବ ଜାତି ଆତ୍ମ ସୁଖେ ରତ
ଲୋଡ଼ନ୍ତି ଗୌରବ ଧନ ମାନ ଅବିରତ,
ଅଭିଳାଷୀ ସ୍ୱାର୍ଥପର ନ ବୁଝେ ସେ ଆତ୍ମ ପର
ପ୍ରଣୟ ମିତ୍ରତା ତ୍ୟଜେ ତୁଚ୍ଛ ବସ୍ତୁ ପରି
ସାକ୍ଷୀ ଯଥା ନେପୋଲିୟନ ବୋନାପାର୍ଟ କେଶରୀ ।"

ସରଳ ଶିଶୁ ପ୍ରାଣରେ ଅସୀମ ଧୈର୍ଯ୍ୟ ଓ ଦୃଢ଼ ମନୋବଳ ଜାତହେବା ପାଇଁ ତାଙ୍କର "ସାତଭଉଣୀ" ଏକ ସାର୍ଥକ ସୃଷ୍ଟି । ଯେତେବେଳେ ସବୁ ଆଶାଭରସା ଲୋପ ପାଇ ଆସିଛି, ସେଇ ସେତେବେଳେ ଭଉଣୀକୁ ବୁଝାଇଛନ୍ତି—

"କାନ୍ଦନା କାନ୍ଦନା ସର ବୋଇଲା ସେ ସାଇ
ଆଣ୍ଠୁ ଜଳ ଧର ମଙ୍ଗ ଉଙ୍ଗ ଯିବା ବାହି ।"

ଏତଦ୍‌ଭିନ୍ନ ବାଲ୍ୟବିଧବା କଥା ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ତେଣୁ "ଚନ୍ଦ୍ରପ୍ରଭା—ନିର୍ଜଳା ଏକାଦଶୀ" କବିତାରେ ସେ ଏହାର ସମାଲୋଚନା କରି ଲେଖିଛନ୍ତି—

"ନଅ ବରଷରେ ଚନ୍ଦ୍ରପ୍ରଭା ହେଲା ରଣ୍ଡି

× × ×

ନ ଖାଇବ ଭଲ ଭଲ ଦ୍ରବ୍ୟ ବା ଆମିଷ
ନ ପିନ୍ଧିବ ଭଲ ଲୁଗା ନ ଖାଇବ ପାନ

× × ×

ଧନ୍ୟ ଧନ୍ୟ ହେ ସମାଜ ! ଜୁହାର ତୁମ୍ଭଙ୍କୁ
ଜୁହାରୁଛି ପୁଣି ତୁମ୍ଭ ବିଧିବିଧାନକୁ ।"

ପର ଉପକାରରେ ବ୍ରତୀ ହେବାପାଇଁ ଶିଶୁକୁ ଉପଦେଶ ଦେବାକୁ ଯାଇ "ପରୋପକାର" କବିତାରେ ସେ ଲେଖିଛନ୍ତି—

"ପର ଉପକାର ପଥେ ନ ହେଲେ ପଥିକ
ଜୀବପତଙ୍ଗାଦିଠାରୁ କି ହେଲ ଅଧିକ ?
ପର ଉପକାର ବ୍ରତେ ଧରିବା ଜୀବନ
ମାନବ ଜାତିର ଅଟେ ବିଶେଷ ଲକ୍ଷଣ ।"

କର୍ତ୍ତବ୍ୟ ପାଳନ କ୍ଷେତ୍ରରେ ଠିକ୍ ସେହିପରି ଉପଦେଶ —

"ପୃଥିବୀ ଦେଇଛୁ ଯେତେ ଦ୍ରବ୍ୟ ତୁମ୍ଭ ପାଇଁ
କେତେ ତ ପରିଶୋଧ କରିଛ କି ନାହିଁ ।"

ନିଜ ଗ୍ରାମର ଧୂଳି-ମାଟି, ପାଣି ପବନ ସବୁ ତାଙ୍କ ମନକୁ ଆନ୍ଦୋଳିତ କରିଛି । ତାଙ୍କର "ମୋ ଗ୍ରାମ ପଲ୍ଲୀକାଶୀପୁର" କବିତା ଏହାର ଉଦାହରଣ—

"ଧନହୀନ, ଶୋଭାହୀନ ସୌନ୍ଦର୍ଯ୍ୟ ବିହୀନ
ତଥାପି ସେ ଗ୍ରାମ ମନେ ପଡ଼େ ପ୍ରତିଦିନ

× × ×

କରନ୍ତୁ ପଛକେ ସେହି ଗ୍ରାମ ଲୋକେ କଳି
ନ ପାଇଲି ସଙ୍ଗସୁଖ ତାହାଠାରୁ ବଳି ।

× × ×

ଅଭିଳାଷ ଯହିଁ ତହିଁ ଯାଏଁ ନିତ୍ୟ ଧାମେ
ଶେଷ ଅସ୍ଥି ଖଣ୍ଡ ହେବ ସମାଧି ସେ ଗ୍ରାମେ ।"

ପବିତ୍ର ଉତ୍କଳ ଭୂମିର ଜନସାଧାରଣ ଯେ କେତେକାଂଶରେ ପରମୁଖାପେକ୍ଷୀ ହୋଇ ପଡ଼ିଛନ୍ତି, ସେ କଥା କବିଙ୍କୁ ବେଶୀ ଦୁଃଖ ଦେଇଛି । ନିଜ ଜନ୍ମଭୂମିକୁ ଭଲ ପାଇବା ପାଇଁ, ତାର ପ୍ରତି ଟି ଧୂଳିକଣା ଦେହରେ ବୋଳି ହୋଇ ତହିଁ ଅନୁଭବ କରିବା ପାଇଁ ସେ ଏ ଦେଶର ପ୍ରତିଟି ଶିଶୁକୁ ପ୍ରେରଣା ଦେଇଛନ୍ତି । ସେଦିନ ହେଉଣୁ ତାଙ୍କର

ଦୁଃଖରେ ଫକୀରମୋହନ ଜନ୍ମଭୂମି ପାଖରେ ଅଭିମାନ କରି ପଚାରିଥିଲେ—

"ଦଇ ପାଠ ପଢ଼ି କି ଲାଭରେ ପଡ଼ି
ଲେଖିଦେଇ ଦସ୍ତଖତ
ଅନ୍ନ କଷ୍ଟେ ପୁଣି ହୋଇ ହାଣ୍ଡିଚୁଣି
ବୋଲନ୍ତି ସେ ଭାଗ୍ୟବନ୍ତ ।"

"ଭୁବନେଶ୍ୱର" କବିତାରେ ସେ ଶିଶୁଙ୍କୁ ଭୌଗୋଳିକ ପରିବେଶ ସମ୍ପର୍କରେ ସୂଚନା ଦେଇଛନ୍ତି । ଏଥିରେ ସେ ଖଣ୍ଡଗିରି, ଉଦୟଗିରି, ଧଉଳିପାହାଡ଼, ବିନ୍ଦୁସାଗର ଇତ୍ୟାଦି ସ୍ଥାନର ବର୍ଣ୍ଣନା ଦେଇଛନ୍ତି ।

'ବୌଦ୍ଧାବତାର କାବ୍ୟ'ର ମୁଖବନ୍ଧରେ ଲେଖିଛନ୍ତି—"ମୁଁ ଏମନ୍ତ ବିମୋହିତ ହୋଇ ଦେଖୁଛି ଯେ ସ୍ୱଜନପରିତ୍ୟକ୍ତ, ଜରାଜୀର୍ଣ୍ଣ, ଦୁର୍ବଳେନ୍ଦ୍ରିୟ, ବିଷୟ ବିରାଗୀ, ମୁକ୍ତିକାମୀ ଲୋକମାନଙ୍କୁ ଏହି ପୁସ୍ତକ ପାଠ ବା ବୌଦ୍ଧମତ ଆଲୋଚନା ସକାଶେ ଅନୁରୋଧ କରେ ସ୍ଥିର ହୋଇ ପାରୁନାହିଁ ଏବଂ ଯୌବନୋନ୍ମତ୍ତ ଧନଜନ ମାନ ସମ୍ଭ୍ରମ ଗୌରବଶାଳୀ ଇନ୍ଦ୍ରିୟ ସୁଖାଭିଳାଷୀ ବ୍ୟକ୍ତିମାନଙ୍କ ପକ୍ଷରେ ମଧ୍ୟ ଏତାଦୃଶ ଗ୍ରନ୍ଥ ଆଲୋଚନା କରିବାର ଉପଯୁକ୍ତ ବୋଲି ବିବେଚନା କରେ ।" × × ଅଦ୍ୟାବଧି ବୌଦ୍ଧ ଧର୍ମର ପ୍ରାଚୀନତ୍ୱ, ମହିମା, ସ୍ଥାପତ୍ୟ, ଅନୁଶାସନ ବିଷୟମାନଙ୍କୁ ସାକ୍ଷ୍ୟ ଦେବା ସକାଶେ କୀର୍ତ୍ତି-ବିଲୋପୀ ମହାକାଳକୁ ତୁଚ୍ଛ ଜ୍ଞାନ କରି ଶୈଳ ପୃଷ୍ଠରେ ତାହାର ଚିହ୍ନମାନ ବିଦ୍ୟମାନ ରହିଅଛି । ମାତ୍ର ପରିତାପର ବିଷୟ ଏହି ଯେ, ଅଧୁନାତନ ଉତ୍କଳବାସୀଙ୍କୁ ଜଣାଇ ଦେବା ନିମନ୍ତେ ମାତୃ-ଭାଷାରେ କେହି ଏ ପ୍ରାଚୀନ ଚିହ୍ନ ଉଦ୍ଧାର ଦ୍ୱାରା ହେତୁ ଯତ୍ନ କରି

ମନପ୍ରାଣରେ ଦୂର କଲ, ଏକଥା କହିବାକୁ ନିତାନ୍ତ ସଙ୍କୁଚିତ । ମାତ୍ର ଚିରପ୍ରଚଳିତ ଗ୍ରାମ୍ୟ ପ୍ରବାଦଟିକୁ କେଡ଼େ ସାଧୁଭାଷାରେ ରୂପାନ୍ତରିତ କରି ହୋଇ ପାରେ—ମାତୁଳାଭାବ ସ୍ଥାନରେ ଗୋଟିଏ କାଣ-ମାତୁଳ ମୋହାସ୍ତ ଆଦୃତ ହେବେ ।

ତାଙ୍କର ପ୍ରତ୍ୟେକ କବିତା ନିର୍ଦ୍ଦିଷ୍ଟ ଭାବେ ଶିଶୁମାନଙ୍କ ଲକ୍ଷ୍ୟ ଉଦ୍ଦିଷ୍ଟ ନ ହୋଇଥିଲେହେଁ ମନୋଜ୍ଞ ପ୍ରତ୍ୟେକ କବିତା ଯେମିତି ସେହି ଶିଶୁର ଅନ୍ତରକୁ ସ୍ପର୍ଶ କରିପାରୁଥିବା ଭଳି ଆହ୍ୱାନ ସାଜିଛି । 'ଛନ୍ଦମାଳା'ରେ ସେ ଲେଖିଛନ୍ତି —

"ସୁନ୍ଦର କମଳେ ଶିଶିର ବିନ୍ଦୁ । ସୁନ୍ଦର ଗଗନେ ପୂର୍ଣ୍ଣିମା ଇନ୍ଦୁ ।
ତହିଁରୁ ସୁନ୍ଦର ଝରେ ଅବିରଳ । ପରଦୁଃଖେ ଯେଉଁ ନୟନଜଳ ।"

'ବୃଦ୍ଧସ୍ୟ ବଚନଂ' କବିତାରେ ଠିକ୍ ସେହି ଉପଦେଶ —

"କଥା କହିବାର ପୂର୍ବେ କରିବ ବିଚାର,
ଅଛି କିବା ଉପକାର ଏଥିରେ କାହାର ।
ଯେଉଁ ଲୋକ କରିପାରେ ବଚନ ସଂଯମ,
ଜଗତରେ ପରିଚିତ ସେହି ବିଜ୍ଞତମ ।"

ଅନ୍ୟ ଏକ କଥା ହେଲା ଫକୀରମୋହନଙ୍କ ଲିଖିତ ଭାରତ ବର୍ଷର ଇତିହାସ । ଏହା ଦୁଇ ଖଣ୍ଡରେ ପ୍ରକାଶିତ । ଏହା ବ୍ୟତୀତ ସେ ଶିଶୁ ମନଲାଗି ଅଙ୍କମାଳା ମଧ୍ୟ ରଚନା କରିଥିଲେ । ଅଳ୍ପ-ସମୟରେ ଓଡ଼ିଶାର ପାଠ୍ୟପୁସ୍ତକକୁ ଆଦର୍ଶ କରି ତାଳଚେରର ରାଜାଙ୍କ ନାମ ଦେଇ ହେଉ ବା ଆଉ କାହାର ନାମ ଦେଇ ହେଉ ଓଡ଼ିଆରେ ଯେଉଁ ଭାରତ ବର୍ଷର ଇତିହାସ ଲିଖିତ ହୋଇଥିଲା ଏହା ସେ ଶ୍ରେଣୀର ନୁହେଁ । ଏଥିରେ ଛତେ ଛତେ ଫକୀରମୋହନ

ସ୍ୱରୂପରେ ବର୍ତ୍ତମାନ ଥିଲେ । ଏଥିରେ ସନ୍ନିବିଷ୍ଟ ମନୋଗ୍ରାହ୍ୟ-ଗଳ୍ପ ସମ୍ବଳିତ ଇତିହାସ ସେତେବେଳେ ବିଦ୍ୟାଳୟ ବାଧ୍ୟ ହେବାରୁ ପାଠ୍ୟ-ପୁସ୍ତକ ଭାବେ ଚଳାଉଥିଲା ।

ଏତେ ସବୁ ଆଲୋଚନା ପରେ ଜଣାଯାଏ, ଓଡ଼ିଆ ସାହିତ୍ୟର ପ୍ରଗତିର ପାଇଁ ଫକୀରମୋହନଙ୍କର ଯେ ବ୍ୟାକୁଳତା ଥିଲା ଏସବୁ ସେହି ବ୍ୟାକୁଳତାର ପ୍ରତୀକ । ସେ ପ୍ରଥମେ ରାମାୟଣ ଓ ମହାଭାରତ ଅନୁବାଦ କରିଥିଲେ । ଏ ଅନୁବାଦରେ ସାରଳା ଓ କୃଷ୍ଣ ସିଂହଙ୍କ ଉଚ୍ଛୃଙ୍ଖଳତା କିମ୍ବା ବଳରାମ ଦାସଙ୍କ ଗୋଷ୍ଠୀର ଭାବ ସମିଶ୍ରଣ ଓ ଅନୁବାଦର ଉଦାହରଣ ନଥିଲା । ଗଳ୍ପରେ ତାଙ୍କର ନଥିଲା ପରମ୍ପରାଗତ ବୁଢ଼ୀ ଅସୁରୁଣୀ ଅଥବା ରଜାପୁଅର କାହାଣୀ, ଉପନ୍ୟାସରେ ମଧ୍ୟ ନଥିଲା ସ୍ୱପ୍ନରାଜ୍ୟର ଅଥବା କଳ୍ପଲୋକର କୌଣସି ରାଜକନ୍ୟାର ମିଳନ-ବିରହ-ଜଡ଼ିତ-ପ୍ରେମ ଉପାଖ୍ୟାନ । ତାଙ୍କର ପ୍ରତ୍ୟେକ ସୃଷ୍ଟିରେ ରହିଥିଲା ନୂତନ ଜୀବନ ସ୍ପନ୍ଦନ ତଥା ଓଡ଼ିଆ ଭାଷାକୁ ହୃଦୟଙ୍ଗମ କରିବାର ଭାବ । ବାସ୍ତବିକ୍ ମୁହଁରୁ ଭାଷା କାଢ଼ି ନେବାର ଆସ୍ପର୍ଦ୍ଧା ସହିବାର ନୁହେଁ । ଏ ଜାତିର ଶିଶୁ ମୁଖରେ ଯିଏ ଏଇ ମାଟିର ଭାଷା, ଏଇମାଟିର କଥା ଶିଖାଇଛନ୍ତି, ସେ ଶିଶୁ ସାହିତ୍ୟିକ ଭିନ୍ନ ଅନ୍ୟ କିଛି ହୋଇ ନପାରନ୍ତି । ହୋଇଥାନ୍ତୁ ପଛେ ସେ କ୍ଷୁଦ୍ରଗଳ୍ପର ପ୍ରଥମ ସ୍ରଷ୍ଟା, ସାର୍ଥକ ଔପନ୍ୟାସିକ, ତଥାପି ସେଇ ବିପୁଳ ସୃଷ୍ଟିର କୋଣ ଅନୁକୋଣରେ ଏବେ ବି ଝଙ୍କୃତ ହୋଇଉଠେ ଶିଶୁ ମନଲୋଭା କାବ୍ୟ-କବିତା ତଥା ଗଳ୍ପ-ଉପନ୍ୟାସ, ସେ ଉପନ୍ୟାସର, ଗଳ୍ପର ଅନ୍ତଃସ୍ଥଳରେ ଯେଉଁ ସ୍ୱରୂପଟି ବିଦ୍ୟମାନ, ଯଥାର୍ଥ ବାସ୍ତବ ସତ୍ୟଟି ବିଦ୍ୟମାନ—ତାହା ହେଉଛି ବୟସ୍କ-ଜ୍ଞାନୀ ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ, ସେହିପରି ସେଥିରେ ଶିଶୁମାନଙ୍କ ପାଇଁ ମଧ୍ୟ ରହିଛି ଯଥେଷ୍ଟ ପ୍ରେରଣା । ଆଜି ବି ସେ ଗଳ୍ପକୁ

ଜୀବନର ସୃଷ୍ଟିରେ ପ୍ରକୃତି ପାଖୁଡ଼ାରେ ସୁରଭି ଦେଶର ପ୍ରତି ପ୍ରାଣକୁ ଆମୋଦିତ କରୁଛି । ତାଙ୍କ ସୃଷ୍ଟିର ଆଦର୍ଶ ଥିଲା ବାସ୍ତବ ଚରିତ୍ର-ଚିତ୍ରଣ ମାଧ୍ୟମରେ ଦୁର୍ବୃତ୍ତର ଦୁର୍ବଳତା ଓ ଦୁର୍ମତିକୁ ଲୋକ-ଲୋଚନର ସମ୍ମୁଖକୁ ଆଣିବା । ତାଙ୍କ ମତରେ ପାପୀକୁ ଘୃଣା କରିବା ଅପେକ୍ଷା ପାପକୁ ଘୃଣା କରିବା ଉଚିତ । ଫକୀରମୋହନଙ୍କ ଚରିତ୍ର ଚିତ୍ରଣରେ ଆଦର୍ଶବାଦ ଓ ଯଥାର୍ଥବାଦର ଏକ ମିଶ୍ରିତ ଜୀବନ ଦର୍ଶନ ଦେଖିବାକୁ ମିଳେ । ତେଣୁ ଫକୀରମୋହନ ପ୍ରତ୍ୟକ୍ଷତଃ ଶିଶୁ ସାହିତ୍ୟିକ ନ ହେଲେହେଁ ତାଙ୍କ ସୃଷ୍ଟି ଭିତରେ ଶିଶୁ ସାହିତ୍ୟ ପାଇଁ ଯଥେଷ୍ଟ ଉପାଦାନ ରହିଥିବା ଲକ୍ଷ୍ୟ କରାଯାଏ ।



# ଉପନିଷଦର ଅନୁବାଦ ଓ ଫକୀରମୋହନ

ଅଧ୍ୟାପକ—ପ୍ରଫୁଲ୍ଲକୁମାର ଦାଶ, ଏମ୍. ଏ

ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଦିଗ୍‌ଦର୍ଶକ ବ୍ୟାସକବି ଫକୀରମୋହନଙ୍କ ସମସ୍ତ ସାରସ୍ୱତ କୃତିର ପୂର୍ଣ୍ଣାଙ୍ଗ ଆଲୋଚନା ଅଦ୍ୟାବଧି ହୋଇପାରି ନାହିଁ । ତାହାଙ୍କ କୃତିରାଜିର ବହୁ ଆଲୋଚିତ ଦିଗଟି ହେଉଛି ତାଙ୍କର ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ । ଅଦ୍ୟାବଧି ତାହାଙ୍କ ରଚନାବଳୀର ଅନାଲୋଚିତ ଦିଗଟି ହେଉଛି ତାଙ୍କର ଅନୁବାଦ ସାହିତ୍ୟ । କେତେଜଣ ଆଲୋଚକ ଫକୀରମୋହନଙ୍କ ଅନୂଦିତ କୃତିରାଜି ସମ୍ପର୍କରେ ସାମାନ୍ୟ ମାତ୍ର ଆଲୋକପାତ କରିଥିବା ଦେଖାଯାଏ । କିନ୍ତୁ ଏ ସମ୍ପର୍କରେ ବିଧିବଦ୍ଧ ଆଲୋଚନାର ଅଭାବ ଅଦ୍ୟାବଧି ରହିଛି । ତାହାଙ୍କ ଅନୂଦିତ ଗ୍ରନ୍ଥରାଜି ହେଉଛି—ମହାଭାରତ, ରାମାୟଣ ଓ ବିଭିନ୍ନ ଉପନିଷଦ । ତନ୍ମଧ୍ୟରୁ ବିଭିନ୍ନ ଉପନିଷଦର ଅନୁବାଦ ବିଷୟରେ ଆଲୋକପାତ କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ଫକୀରମୋହନଙ୍କ ଉପନିଷଦ ଅନୁବାଦ ବିଷୟରେ ଆଲୋଚନା କରିବା ପୂର୍ବରୁ ଭାରତୀୟ ଉପନିଷଦ ସାହିତ୍ୟ ସମ୍ପର୍କରେ ସାମାନ୍ୟ ସୂଚନା ପ୍ରଦାନ କରିବା ଆବଶ୍ୟକ ମନେହୁଏ ।

ବ୍ୟାକରଣ ଶାସ୍ତ୍ର ଅନୁଯାୟୀ 'ଉପନିଷଦ' ଶବ୍ଦଟିର ବ୍ୟାଖ୍ୟା ନିମ୍ନ ପ୍ରକାରେ କରାଯାଇଛି—ଉପ+ନି ( ଉପସର୍ଗ ) + ସଦ୍

( ଧାତୁ ) +କ୍ୱିପ୍ ( ପ୍ରତ୍ୟୟ ) । 'ଉପ' ଉପସର୍ଗର ଅର୍ଥ ସମୀପ, 'ନି' ଉପସର୍ଗର ଅର୍ଥ ପୂର୍ଣ୍ଣତା ବା ନିଶ୍ଚିତତା ଏବଂ 'ସଦ୍' ଧାତୁର ଅର୍ଥ ଗତି, ଅବସାଦନ, ବିଶରଣ । ଉପନିଷଦର ବ୍ୟାଖ୍ୟାକାରଗଣ ନିମ୍ନ ପ୍ରକାରେ ଏହାର ବ୍ୟୁତ୍ପତ୍ତିମୂଳକ ଅର୍ଥ ପ୍ରଦାନ କରିଛନ୍ତି—

୧ । ଯେଉଁ ବିଦ୍ୟାଦ୍ୱାରା ପରମାତ୍ମାଙ୍କ ସ୍ୱରୂପ ଜ୍ଞାତ ହୁଏ, ତାହା ଉପନିଷଦ ଅଟେ ( ଉପନିଷଦ୍ୟତେ ବୁଧ୍ୟତେ ବ୍ରହ୍ମାତ୍ମଭାବୋଽନୟେତି ଉପନିଷଦ୍ । )

୨ । ଯେଉଁ ବିଦ୍ୟା ବ୍ରହ୍ମ ବା ପରମାତ୍ମାଙ୍କର ସ୍ୱରୂପ ପ୍ରତି-ପାଦନ କରେ, ତାହା ଉପନିଷଦ୍ ଅଟେ । ( ଉପନିଷୀଦତି ପ୍ରାପୟତି ବ୍ରହ୍ମାତ୍ମଭାବମିତ୍ୟୁପନିଷଦ୍ ।)

୩ । ଗୁରୁଙ୍କ ନିକଟରେ ରହି ଉତ୍ତମ ଜ୍ଞାନ ସମ୍ପାଦନ ପୂର୍ବକ ଯେଉଁ ବିଦ୍ୟା ଲାଭ କରାଯାଏ । ( ଉପନିଷଦ୍ୟତେ ଗୁରୋଃ ସମୀପେ ସ୍ଥିତ୍ୱା ନିଶ୍ଚିତେଂୟା ଅବବୁଧ ପ୍ରାପ୍ୟତ-ଇତ୍ୟୁପନିଷଦ୍ ।)

୪ । ଗୁରୁଙ୍କ ନିକଟରେ ଅବସ୍ଥାନ ପୂର୍ବକ ଶୁଶ୍ରୂଷାଦି କରି ଉତ୍ତମ ଜ୍ଞାନ ସହକାରେ ଯେଉଁ ବିଦ୍ୟା ଆପ୍ତ କରାଯାଏ ଏବଂ ଯେଉଁ ବିଦ୍ୟାଦ୍ୱାରା ସଂସାର ବୀଜ ବିଶୀର୍ଣ୍ଣ ହୁଏ, ଲୋକାନ୍ତର ପ୍ରବୃତ୍ତି ଗର୍ଭବାସ ଜନ୍ମ-ଜରା-ମରଣାଦି ଉପଦ୍ରବ ସକଳ ନଷ୍ଟହୁଏ ତଥା ବ୍ରହ୍ମ ସାକ୍ଷାତକାର ଲାଭହୁଏ । ତାହା ଉପନିଷଦ୍ ଅଟେ । ( ଗୁରୋଃ ସମୀପେ ଶୁଶ୍ରୂଷାଦି ପୁରଃସରଂ ସ୍ଥିତ୍ୱା, ଲୋକାନ୍ତର ପ୍ରବୃତ୍ତି ଗର୍ଭବାସ-ଜନ୍ମ ଜରା-ମରଣାଦ୍ୟୁପଦ୍ରବ-ଜାତମବସାଦ୍ୟତେ, ପରଂବ୍ରହ୍ମ ଚ ପ୍ରାପ୍ୟତେଽନୟେତ୍ୟୁପନିଷଦ୍ )

ଉପନିଷଦର ବିଭିନ୍ନ ଟୀକାକାର ଏହିପରି ଭାବରେ ଏହାର ବିଭିନ୍ନ ପ୍ରକାର ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ଏହି ସମସ୍ତ ବ୍ୟାଖ୍ୟା ଓ ବ୍ୟୁତ୍ପତ୍ତି ପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ, ଉପନିଷଦ୍

ହେଉଛି ବ୍ରହ୍ମଜ୍ଞାନ, ଆତ୍ମତତ୍ତ୍ୱ ଓ ମୁକ୍ତିମାର୍ଗ ପ୍ରତିପାଦକ ଶାସ୍ତ୍ର । ଏହି ଶାସ୍ତ୍ର ଗୁରୁଙ୍କଠାରୁ ଶିକ୍ଷା କରାଯାଇଥାଏ । ଏହାକୁ 'ବେଦାନ୍ତ' ମଧ୍ୟ କୁହାଯାଇଥାଏ । ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ, ଉପନିଷଦ୍, ବ୍ରହ୍ମସୂତ୍ର ଓ ଶ୍ରୀମଦ୍ ଭଗବଦ୍‌ଗୀତାକୁ ଭାରତୀୟ ଆଧ୍ୟାତ୍ମିକ ଶାସ୍ତ୍ରରେ 'ପ୍ରସ୍ଥାନତ୍ରୟୀ' ବୋଲି କୁହାଯାଏ । ଏଥି ମଧ୍ୟରୁ ଉପନିଷଦ୍‌କୁ 'ଶ୍ରୁତି ପ୍ରସ୍ଥାନ' ବ୍ରହ୍ମସୂତ୍ରକୁ 'ନ୍ୟାୟ ପ୍ରସ୍ଥାନ' ଓ ଭଗବଦ୍‌ଗୀତାକୁ 'ସ୍ମୃତି ପ୍ରସ୍ଥାନ' କୁହାଯାଏ ।

ଅନ୍ୟ ଦିଗରୁ ବିଚାର କରିବାକୁ ଗଲେ, ଉପନିଷଦ୍ ହେଉଛି ବେଦର ଏକ ଅଂଶ ବିଶେଷ । ବେଦ ରଚିତ ହେବାର ବହୁ ବର୍ଷ ପରେ ଏହା 'ସଂହିତା' ଓ 'ବ୍ରାହ୍ମଣ' ନାମରେ ଦୁଇ ଭାଗରେ ବିଭକ୍ତ ହେଲା । ସଂହିତା ଭାଗରେ ମନ୍ତ୍ର ସମୂହ ସନ୍ନିବେଶିତ ହୋଇଛି ଏବଂ ବ୍ରାହ୍ମଣ ଗ୍ରନ୍ଥରେ ମନ୍ତ୍ରଗୁଡ଼ିକର ବ୍ୟାଖ୍ୟା ତଥା ପ୍ରୟୋଗ ଦେଖିବାକୁ ମିଳେ । ବ୍ରାହ୍ମଣ ଗ୍ରନ୍ଥର ଶେଷ ଭାଗରେ 'ଆରଣ୍ୟକ' ଓ ଉପନିଷଦ ରହିଛି । ଉପନିଷଦକୁ କେହି କେହି 'ଶ୍ରୁତିଶିର' ବୋଲି କହିଥିବା ମଧ୍ୟ ଦେଖାଯାଏ ।

ଉପନିଷଦର ରଚନାକାଳ ସମ୍ପର୍କରେ ବିଭିନ୍ନ ଆଲୋଚକମାନେ ବିଧ ମତ ପ୍ରକାଶ କରିଥିବା ଦେଖାଯାଏ । ସେମାନଙ୍କ ମଧ୍ୟରୁ ବିଶ୍ୱବିଖ୍ୟାତ ଦାର୍ଶନିକ ଡକ୍ଟର ରାଧାକୃଷ୍ଣନ୍‌ଙ୍କ ମତ ଅଧିକ ଯଥାର୍ଥ ବୋଲି ଗୃହୀତ ହୋଇଛି । ତାହାଙ୍କ ମତାନୁସାରେ ଐତରେୟ, କୌଶୀତକୀ, ଛାନ୍ଦୋଗ୍ୟ, କେନ, ତୈତ୍ତିରେୟ, ବୃହଦାରଣ୍ୟକ, ଈଶ ଓ କଠୋପନିଷଦର ରଚନାକାଳ ଖ୍ରୀ: ପୂ: ୮ମ ଶତାବ୍ଦୀରୁ ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ । * ଉପନିଷଦଗୁଡ଼ିକର ସଂଖ୍ୟା କେତେ, ତାହା ମଧ୍ୟ ବର୍ତ୍ତମାନ ସୁଦ୍ଧା

---

* ଦ୍ରଷ୍ଟବ୍ୟ-- ଉପନିଷଦ୍‌ର ଭୂମିକା—ପୃ. ୧୮— ଡକ୍ଟର ରାଧାକୃଷ୍ଣନ୍

ଅମୀମାଂସିତ ହୋଇ ରହିଛି । 'ମୁକ୍ତିକୋପନିଷଦ୍'ରେ ଏକଶତ ଆଠ ଉପନିଷଦ ବିଷୟ ଉଲ୍ଲିଖିତ ହୋଇଛି । ଏହି ଦୃଷ୍ଟିରୁ ଭାରତୀୟ ପରଂପରାରେ 'ଅଷ୍ଟୋତ୍ତରଶତ' ଉପନିଷଦ ଥିବା କୁହାଯାଇଥାଏ । କିନ୍ତୁ ବର୍ତ୍ତମାନ ସୁଦ୍ଧା ୨୨୦ଟି ଉପନିଷଦ ପ୍ରକାଶିତ ହୋଇଛି । ଅନ୍ୟ କେତେକ ଆଲୋଚକଙ୍କ ମତରେ ଏହାର ସଂଖ୍ୟା ହେଉଛି ୨୩୫ । ସବୁସ୍ତ ଉପନିଷଦ ମଧ୍ୟରେ ଦଶ ଗୋଟି ଉପନିଷଦକୁ ମୁଖ୍ୟସ୍ଥାନ ପ୍ରଦାନ କରାଯାଇଛି । ଉକ୍ତ ଦଶ ଗୋଟି ଉପନିଷଦ ହେଉଛି--୧) ଈଶାବାସ୍ୟୋପନିଷଦ, ୨) କେନୋପନିଷଦ, ୩) କଠୋପନିଷଦ, ୪) ପ୍ରଶ୍ନୋପନିଷଦ, ୫) ମୁଣ୍ଡକୋପନିଷଦ, ୬) ମାଣ୍ଡୁକ୍ୟୋପନିଷଦ, ୭) ଐତରେୟୋପନିଷଦ, ୮) ତୈତ୍ତିରୀୟୋପନିଷଦ, ୯) ଛାନ୍ଦୋଗ୍ୟ ଉପନିଷଦ, ୧୦) ବୃହଦାରଣ୍ୟକ ଉପନିଷଦ ।

ଏହି ଦଶଗୋଟି ମୁଖ୍ୟ ଉପନିଷଦ ମଧ୍ୟରୁ ଫକୀରମୋହନ ବୃହଦାରଣ୍ୟକ ଉପନିଷଦକୁ ଛାଡ଼ି ଅବଶିଷ୍ଟ ନଅଗୋଟି ଉପନିଷଦ ଅନୁବାଦ କରିବା ସଙ୍ଗେ ସଙ୍ଗେ 'ମୁକ୍ତିକୋପନିଷଦ', 'କୈବଲ୍ୟୋପନିଷଦ' ଓ ଶ୍ୱେତାଶ୍ୱତର ଉପନିଷଦକୁ ଅନୁବାଦ କରିଛନ୍ତି । ସୁତରାଂ, ତାହାଙ୍କ ଅନୂଦିତ ଉପନିଷଦର ସର୍ବମୋଟ ସଂଖ୍ୟା ହେଉଛି ୧୨ ।

## ଉପନିଷଦର ସର୍ବ ପ୍ରଥମ ଓଡ଼ିଆ ଅନୁବାଦକ

ଓଡ଼ିଆ ଭାଷାରେ ବର୍ତ୍ତମାନ ଉପନିଷଦର ଏକାଧିକ ଅନୁବାଦ ଅଦ୍ୟାବଧି ପ୍ରକାଶିତ ଅବସ୍ଥାରେ ଉପଲବ୍ଧ ହେଉଛି । ଏ କ୍ଷେତ୍ରରେ ଉପନିଷଦର ସର୍ବ ପ୍ରଥମ ଓଡ଼ିଆ ଅନୁବାଦକ ଭାବରେ ଫକୀର-

ମୋହନଙ୍କ ଅବଦାନ ଅବିସ୍ମରଣୀୟ । ସେ ପଦ୍ୟାତ୍ମକ ଶୈଳୀରେ ସର୍ବ ପ୍ରଥମେ ଓଡ଼ିଆମାନଙ୍କ ହସ୍ତରେ ଉପନିଷଦର ଅନୁବାଦ ଅର୍ପଣ କରିଯାଇଛନ୍ତି । କିନ୍ତୁ ଏହି କାର୍ଯ୍ୟ କରିବା ସମୟରେ ତାହାଙ୍କୁ ନାନାବିଧ ବାଧା ଓ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେ ଯେପରି ବାଧାବିଘ୍ନର ସମ୍ମୁଖୀନ ହୋଇ ଉପନିଷଦଗୁଡ଼ିକୁ ଓଡ଼ିଆ ଭାଷାରେ ଅନୁବାଦ କରୁଥିଲେ, ତାହା ଅନୁଧ୍ୟାନ କଲେ, ସ୍ପଷ୍ଟ ଜଣାଯାଏ ଯେ, ଓଡ଼ିଆ ଭାଷା ଓ ସାହିତ୍ୟର ସେବା ନିମିତ୍ତ ହିଁ ସେ ଏହି କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଏ ପ୍ରସଙ୍ଗରେ ତାହାଙ୍କ 'ଆତ୍ମଜୀବନୀ'ର ନିମ୍ନ ଅଂଶଟି ଉଦ୍ଧାରଯୋଗ୍ୟ ମନେହୁଏ । ସେ କିପରି ଉପନିଷଦର ଅନୁବାଦ କାର୍ଯ୍ୟ କରୁଥିଲେ, ସେ ସମ୍ପର୍କରେ ଲେଖିଛନ୍ତି—"ମୋର କଟକବାସ ସମୟରେ ମୁଁ ଉପନିଷଦ ପଢ଼ୁଥିଲି ଏବଂ ତହିଁର ଓଡ଼ିଆ ପଦ୍ୟାନୁବାଦ କରୁଥିଲି । ଗୋଡ଼ବିନ୍ଧା ବେମାରି ମୋ ଜୀବନର ଚିରସହଚର । ବାଲେଶ୍ୱରର ଜଣେ ପ୍ରସିଦ୍ଧ ଜମିଦାରଙ୍କ ପୁତ୍ର, ପୂର୍ଣ୍ଣଚନ୍ଦ୍ର ଦାସ, ସେ ସମୟରେ ମୋ ପାଖରେ ରହି, କଟକ କଲେଜରେ ଏଫ୍. ଏ. ପଢ଼ୁଥିଲି । ମୋର ଗୋଡ଼ବିନ୍ଧା ବେମାରି ସମୟରେ ସେ ମୋର ଅନେକ ସେବା କରିଅଛି । ଉପନିଷଦ ଅନୁବାଦ ସମୟରେ ମଧ୍ୟ ସେ ମୋତେ ବହୁତ ସାହାଯ୍ୟ କରିଅଛି । ମୁଁ ରୋଗ ଶଯ୍ୟାରେ ପଡ଼ି ଅନୁବାଦ କରୁଥାଏ ଏବଂ କବିତାଗୁଡ଼ିକ ଡାକି ଦେଉଥାଏ—ସେ ସମୟରେ ପୂର୍ଣ୍ଣଚନ୍ଦ୍ର ସାହାଯ୍ୟ କରିନଥିଲେ, ଉପନିଷଦ ଅନୁବାଦ ବାହାରିବାର କୌଣସି ସମ୍ଭାବନା ନଥିଲା ।"

ରୋଗ ଶଯ୍ୟାରେ ପଡ଼ି ଦାରୁଣ ଯନ୍ତ୍ରଣା ଅନୁଭବ କରୁଥିବା ସମୟରେ ଫକୀରମୋହନ ଓଡ଼ିଆ ଜାତି ପାଇଁ ଏତାଦୃଶ ମହନୀୟ

କାର୍ଯ୍ୟରେ ଯେଉଁପରି ମନୋନିବେଶ କରିଥିଲେ, ସେଥିପାଇଁ ସେ ଏ ଜାତିର ପରମନମସ୍ୟ ଅଟନ୍ତି ।

ତାହାଙ୍କର ଉପନିଷଦ ଅନୁବାଦ 'ଉପନିଷଦ୍ ସଂଗ୍ରହ' ନାମରେ 'ଉତ୍କଳ ସାହିତ୍ୟ' ୯/୩ ଆଷାଢ଼ ସଂଖ୍ୟାରେ ୧୯୦୫ ମସିହା ଜୁନ୍ ମାସରେ ସର୍ବପ୍ରଥମେ ପ୍ରକାଶିତ ହେବାକୁ ଆରମ୍ଭ କରିଥିଲା । ପରେ ଏହା ତାହାଙ୍କ ଗ୍ରନ୍ଥାବଳୀରେ ସନ୍ନିବେଶିତ ହୋଇଛି । ଉପନିଷଦ ସଂଗ୍ରହ'ରେ ୧୧ ଗୋଟି ଉପନିଷଦ ସ୍ଥାନ ପାଇଛି । ୧୯୧୭ ଖ୍ରୀଷ୍ଟାବ୍ଦ ଜୁନ୍ ୨୧ ତାରିଖରେ 'ଛାନ୍ଦୋଗ୍ୟ ଉପନିଷଦ' ପ୍ରକାଶିତ ହୋଇଥିଲା । କେଉଁ ଉପନିଷଦ କେଉଁ ବେଦର କେଉଁ ଶାଖାରୁ ଗୃହୀତ ହୋଇଛି, ସେକଥା ବିଷୟ ମଧ୍ୟ କବି ନିର୍ଦ୍ଦେଶ କରିଛନ୍ତି । ଏଥି ମଧ୍ୟରୁ କେତେ ଗୋଟି ଉପନିଷଦ ଓ ତନ୍ମଧ୍ୟରେ ନିହିତ ଫକୀରମୋହନଙ୍କ ଅନୁବାଦ କୌଶଳ ତୁଳନାତ୍ମକ ଭାବରେ ନିମ୍ନରେ ଆଲୋଚିତ ହେଲା ।

**ଈଶାବାସ୍ୟୋପନିଷଦ**—ଏହାକୁ କେହି କେହି 'ଈଶୋପନିଷଦ'ର ବୋଲି ମଧ୍ୟ କହିଥାନ୍ତି । ଫକୀରମୋହନ ମଧ୍ୟ ଏହାର ଏହିପରି ନାମ ରଖି ଅନୁବାଦ କରିଛନ୍ତି । ଏଥିରେ ସର୍ବମୋଟ ୧୮ ଗୋଟି ମନ୍ତ୍ର ରହିଛି । ଏହା ଆକାରରେ କ୍ଷୁଦ୍ର ହେଲେ ମଧ୍ୟ ତତ୍ତ୍ୱ ପ୍ରତିପାଦନ ଦୃଷ୍ଟିରୁ ଏହାର ଗୁରୁତ୍ୱ ଯଥେଷ୍ଟ ଅଧିକ । ଏହା ଶୁକ୍ଳ ଯଜୁର୍ବେଦର ମାଧ୍ୟନ୍ଦିନ ସଂହିତାର ୪୦ତମ ଓ କାଣ୍ୱ ସଂହିତାର ୪୧ତମ ଅଧ୍ୟାୟ ଅଟେ । ଏହାର ପ୍ରଥମ ମନ୍ତ୍ର 'ଈଶା' ପଦରେ ଆରମ୍ଭ ହୋଇଥିବାରୁ ଏହାକୁ 'ଈଶାବାସ୍ୟୋପନିଷଦ' ବା 'ଈଶୋପନିଷଦ' ବୋଲି ନାମିତ କରାଯାଇଛି । ଏଥିରେ ବିଦ୍ୟା ଓ ଅବିଦ୍ୟାର ସ୍ୱରୂପ ପ୍ରତିପାଦିତ ହୋଇଛି ଏବଂ ତତ୍ସଙ୍ଗେ ସଙ୍ଗେ

କେବଳ କର୍ମ ବା ଜ୍ଞାନଦ୍ୱାରା ମୋକ୍ଷ ସାଧିତ ନ ହୋଇ କର୍ମସଂଯୁକ୍ତ ଜ୍ଞାନ ହିଁ ମୋକ୍ଷର ସାଧନ ବୋଲି ବୁଝାଇ ଦିଆଯାଇଛି ।

ଏହାର ପ୍ରଥମ ମନ୍ତ୍ର ହେଉଛି—

"ଈଶା ବାସ୍ୟମିଦଂ ସର୍ବଂ ଯତ୍ କିଞ୍ଚ ଜଗତ୍ୟାଂଜଗତ୍
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ ଧନମ୍ ॥"

ଅର୍ଥ—ଅଖିଳ ବ୍ରହ୍ମାଣ୍ଡରେ ଯାହା କିଛି ବ୍ରହ୍ମାଦି କୀଟ ପର୍ଯ୍ୟନ୍ତ ସ୍ଥାବର ଜଙ୍ଗମାତ୍ମକ ଜ୍ଞେୟ ଭୋଗ୍ୟ ରୂପ ଚରାଚର ଜଗତ୍ ତୁମ ଦେଖା ଓ ଶୁଣାରେ ଅଛି, ସେ ସମସ୍ତ ସର୍ବ ଜଗତର ନିୟାମକ ସର୍ବ ଶକ୍ତିମାନ୍ ଈଶ୍ୱରଙ୍କ ଦ୍ୱାରା ବ୍ୟାପ୍ତ (ଅଧିକୃତ) । ଅତଏବ ତାହାଙ୍କ ଦ୍ୱାରା ପ୍ରଦତ୍ତ ବସ୍ତୁରେ ଶରୀର ଧାରଣୋପଯୋଗୀ ଅନ୍ନପାନାଦି, ଯାଗହୋମକୃତ୍ୟାଦିର ଉପଯୋଗୀ ପରିଜନ ପରିଚ୍ଛଦାଦି ଉପଭୋଗ କର । ଅର୍ଥାତ୍, ଈଶ୍ୱରାନୁପ୍ରାଣିତ ହୋଇ ସାଂସାରିକ ବସ୍ତୁରେ ଆସ୍ଥା ନ ରଖି ଈଶ୍ୱରଙ୍କ ଅନୁଗ୍ରହଲବ୍ଧ ସଦୁପାର୍ଜିତ ବସ୍ତୁରେ କାଳକ୍ଷେପ କର । ତାହାଛଡ଼ା ଅନ୍ୟ କାହାର ଧନ ପ୍ରତି ଦୁରାଶା କର ନାହିଁ ।

( ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଅନୁବାଦ )

ଫକୀରମୋହନ ଏହି ଶ୍ଳୋକଟିର ଅନୁବାଦ ପଦ୍ୟାକାରରେ ନିମ୍ନପ୍ରକାରେ କରିଛନ୍ତି—

"ମନରେ ଭାଳିବ ଏମନ୍ତ,
ଜଗତ ପଦାର୍ଥ ସମସ୍ତ ।

ପରମଆତ୍ମା ଆଚ୍ଛାଦନ,
କରି ରଖିଛୁ ଅନୁକ୍ଷଣ ।
ତେଜିବ ବିଷୟ ଆସକ୍ତି,
ନଲୋଡେ ପରର ସମ୍ପତ୍ତି ।"

ସେହିପରି ଅନ୍ୟ ଏକ ଶ୍ଳୋକ ନିଆଯାଉ—

"ଅସୂର୍ଯାଂ ନାମ ତେ ଲୋକା ଅନ୍ଧେନ ତମସାବୃତାଃ,
ତାଁ, ସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେକେ ଚାତ୍ମହନୋଜନାଃ ॥"

ଏହାର ଅର୍ଥ - "ଚକ୍ଷୁକୁ ଅନ୍ଧ କରି ଦେଉଥିବା ଗାଢ଼ ଅନ୍ଧକାରରେ ବ୍ୟାପ୍ତ ଅସୁରଭାବପ୍ରବଣ ଲୋକମାନଙ୍କ ସକାଶେ ନିର୍ଦ୍ଦିଷ୍ଟ ଅତି ଦାରୁଣ ନରକ ପ୍ରସିଦ୍ଧ । ଯେଉଁମାନେ ସାଂସାରିକ ବିଷୟ ବାସନାରେ ଲିପ୍ତ ରହନ୍ତି, ସେମାନେ ନିଜଭିତ୍କୁ ବଳି ଦେଇ ଯଥାର୍ଥରେ ଆତ୍ମ ହତ୍ୟାକାରୀ ଓ ବ୍ରହ୍ମଜ୍ଞାନ ବିରହିତ । ସେମାନେ ଶରୀର ତ୍ୟାଗକଲାପରେ ସେହି ଭୟଙ୍କର ଲୋକ ଅଭିମୁଖରେ ପ୍ରୟାଣ କରିଥାନ୍ତି ।"

( ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଅନୁବାଦ )

ଏହି ଶ୍ଳୋକଟିର ଭାବ ଫକୀରମୋହନ ନିମ୍ନ ପ୍ରକାରେ ଫୁଟାଇଛନ୍ତି—

"ଯେ ଆତ୍ମଘାତି ଦୁରାଚାର,
କରଇ ଆତ୍ମା ଅସ୍ୱୀକାର ।
ସର୍ବଦା ଅବିଦ୍ୟା ବଶରେ,
ଭ୍ରମନ୍ତି ଅଜ୍ଞାନମାର୍ଗରେ ।

ତାହାଙ୍କ ହେଲେକ ଦେହାନ୍ତ,
ଅସୁର ଦେହ ହେବେ ପ୍ରାପ୍ତ ।

ଏହିପରି ଭାବରେ ସେ ଈଶାବାସ୍ୟୋପନିଷଦ୍‌ର ସମସ୍ତ ଶ୍ଳୋକ ପଦ୍ୟ ଆକାରରେ ଅନୁବାଦ କରିଛନ୍ତି ।

## ପ୍ରଶ୍ନୋପନିଷଦ୍—

ଫକୀରମୋହନଙ୍କ ଅନୂଦିତ ଦ୍ୱିତୀୟ ଉପନିଷଦ ହେଉଛି 'ପ୍ରଶ୍ନୋପନିଷଦ୍' । ଏହି ଉପନିଷଦଟି ଅଥର୍ବବେଦର ପୈପ୍ପଲାଦ-ଶାଖୀୟ ବ୍ରାହ୍ମଣଭାଗର ଅନ୍ତର୍ଗତ । ପିପ୍ପଲାଦ ଋଷିଙ୍କର ଛଅଜଣ ଶିଷ୍ୟ—ସୁକେଶା, ସତ୍ୟକାମ, ସୌର୍ଯ୍ୟାୟଣୀ, ଆଶ୍ୱଳାୟନ, ଭାର୍ଗବ ଓ କବନ୍ଧୀ ଗୁରୁଙ୍କୁ ଛଅଟୋଟି ପ୍ରଶ୍ନ ପଚାରିଛନ୍ତି । ଏଥିରେ ଶିଷ୍ୟ-ମାନଙ୍କ ଉତ୍ତର ସନ୍ନିବେଶିତ ହୋଇଥିବାରୁ ଏହାର ନାମ 'ପ୍ରଶ୍ନୋପନିଷଦ୍' ହୋଇଛି । ଏଥିରେ ଗଦ୍ୟ ଓ ପଦ୍ୟ ଉଭୟ ରହିଛି ।

ସୁକେଶା (ଭରଦ୍ୱାଜଙ୍କ ପୁତ୍ର), ସତ୍ୟକାମ (ଶିବଙ୍କ ପୁତ୍ର), ସୌର୍ଯ୍ୟାୟଣୀ (ଗର୍ଗବଂଶୀୟ), କୋଶଳଦେଶୀୟ ଆଶ୍ୱଳାୟନ, ବିଦର୍ଭଦେଶୀୟ ଭାର୍ଗବ ଏବଂ କତ୍ୟଋଷିଙ୍କ ପ୍ରପୌତ୍ର କବନ୍ଧୀ ହସ୍ତରେ ହୋମକାଷ୍ଠାଦି ଧରି ବେଦତତ୍ତ୍ୱଜ୍ଞ ମହର୍ଷି ପିପ୍ପଲାଦଙ୍କ ନିକଟରେ ଉପସ୍ଥିତ ହେଲେ । ବ୍ରହ୍ମତତ୍ତ୍ୱ ଗ୍ରହଣ ନିମିତ୍ତ ସେମାନଙ୍କର ଯୋଗ୍ୟତା ଅଛି କି ନାହିଁ ସମ୍ୟକ୍ ଭାବରେ ଜ୍ଞାତ ହେବା ନିମିତ୍ତ ପିପ୍ପଲାଦ

ସେମାନଙ୍କୁ ତାହାଙ୍କ ଆଶ୍ରମରେ ଏକବର୍ଷ ଅବସ୍ଥାନ କରିବାକୁ ନିର୍ଦ୍ଦେଶ ଦେଲେ । ସେମାନେ ଏକବର୍ଷ ଅବସ୍ଥାନ କରିବା ପରେ ସର୍ବପ୍ରଥମେ କବନ୍ଧୀ ଆଗ୍ରଣୀଙ୍କ ନିକଟକୁ ଯାଇ ପ୍ରଶ୍ନକଲେ—

"ଭଗବନ୍ କୁତୋ ହବା ଇମାଃ ପ୍ରଜାପ୍ରଜାୟନ୍ତ ଇତି ।" ଅର୍ଥାତ୍, ହେ ଭଗବାନ୍ ! ଏହି ସମସ୍ତ ପ୍ରଜା (ସମ୍ପୂର୍ଣ୍ଣ ଚରାଚର ଜୀବ ନାନା ରୂପରେ) କାହାଠାରୁ ଜାତ ହେଉଛନ୍ତି ?" ଋଷି ଉତ୍ତର ଦେଲେ—

"ତସ୍ମୈ ସ ହୋବାଚ ପ୍ରଜାକାମୋ ବୈ ପ୍ରଜାପତିଃ ସ ତପୋଽତପ୍ୟତ ସ ତପସ୍ତପ୍ତ୍ୱା ସ ମିଥୁନମୁତ୍ପାଦୟତେ । ରୟିଂଚ ପ୍ରାଣଂ ଚେତ୍ୟେତୌ ମେ ବହୁଧା ପ୍ରଜାଃ କରିଷ୍ୟତ ଇତି ।"

ଅର୍ଥ—କବନ୍ଧୀଙ୍କ ଦ୍ୱାରା ଏହି ପ୍ରଶ୍ନ ଶୁଣି ପିପ୍ପଲାଦ ତାହାଙ୍କୁ କହିଲେ—"ସୃଷ୍ଟିର ପ୍ରାରମ୍ଭକାଳରେ ପରମେଶ୍ୱର ଯେତେବେଳେ ସଚରାଚର ଜଗତକୁ ସୃଷ୍ଟି କରିବା ନିମିତ୍ତ ଇଚ୍ଛା ପ୍ରକାଶ କଲେ, ସେଥିନିମିତ୍ତ ସେ ସଂକଳ୍ପ ରୂପ ତପସ୍ୟା କଲେ । ତପସ୍ୟା ଦ୍ୱାରା ସେ ସର୍ବପ୍ରଥମେ 'ରୟି' ଓ 'ପ୍ରାଣ'—ଏହି ଉଭୟଙ୍କୁ ଉତ୍ପନ୍ନ କଲେ । ଏହି ଉଭୟ ମିଳିତ ହୋଇ ତାହାଙ୍କ ନିମିତ୍ତ ନାନା ପ୍ରକାର ସୃଷ୍ଟି ସର୍ଜନା କରିବେ ବୋଲି ତାଙ୍କର ଉଦ୍ଦେଶ୍ୟ ଥିଲା ।

ଫକୀରମୋହନ ଉପର୍ଯ୍ୟୁକ୍ତ ପ୍ରଶ୍ନଶ୍ଳୋକ ଓ ଉତ୍ତର (ଗଦ୍ୟ-ଭାଗ) ର ଅନୁବାଦ ସରଳ ଓ ସୁନ୍ଦର ଭାଷାରେ ନବାକ୍ଷରୀ ବୃତ୍ତରେ ପ୍ରଦାନ କରିଛନ୍ତି । ଉପନିଷଦର ଆରମ୍ଭରେ ସେ ପ୍ରଥମେ ଲେଖିଛନ୍ତି—

"ସୁକେଶୀ ଭରଦ୍ୱାଜ ନାମ,
ଶିବଙ୍କ ପୁତ୍ର ସତ୍ୟକାମ ।

ସୂର୍ଯ୍ୟଙ୍କ ପୁତ୍ର ନାମ ଗାର୍ଗ୍ୟ,
କବନ୍ଧୀ କାତ୍ୟ ମହାଭାଗ ।
ଅଶ୍ୱଳ ପୁତ୍ର ଯେ କୌଶଲ୍ୟ,
ସମସ୍ତେ ଜ୍ଞାନରେ କୁଶଳ ।
ଏ ବେଦେବ୍ରହ୍ମ-ପରାୟଣ,
କରନ୍ତି ସତ୍ୟ ଆଚରଣ ।

ପରମବ୍ରହ୍ମ ଅନ୍ୱେଷଣେ, ଚଳିଲେ ଏ ସବୁ ବ୍ରାହ୍ମଣ ।
ବ୍ରହ୍ମବିଦ୍ୟାରେ ବିଶାରଦ, ଥିଲେ ମହର୍ଷି ପିପଲାଦ ।
ସମିତହସ୍ତେ ବିପ୍ରଗଣେ, ମିଳିଲେ ଋଷିଙ୍କ ଚରଣେ ।
ସମସ୍ତେ ହୋଇ ଏକମତ, ପୁଚ୍ଛିଲେ ବ୍ରହ୍ମବିଦ୍ୟା କଥା ।
ସେ ମହାଋଷି ପିପଲାଦ୍ୟ, ବୋଇଲେ କରି ଆହ୍ଲାଦ ।
ଯାଅ ହେ ତୁମ୍ଭେ ଋଷିଗଣେ, ବସିବ ଶାନ୍ତରେ ନିର୍ଜନେ ।
ତପସ୍ୟା, ଶ୍ରଦ୍ଧା, ବ୍ରହ୍ମଚର୍ଯ୍ୟ, କରିବ ବର୍ଷେ ଏହି କାର୍ଯ୍ୟ ।
ତଦନ୍ତେ ଆସି ପୁନର୍ବାର, ପୁଚ୍ଛିବ ଏହି ସମାଚାର ।
ଆମ୍ଭଙ୍କୁ ଜାଣାଥିଲେ ଜଣା, ବୋଲିବୁଁ କରି ବିବେଚନା ।”

ଏହାପରେ କବନ୍ଧୀଙ୍କ ପ୍ରଶ୍ନଟିର ଅନୁବାଦ ନିମ୍ନ ପ୍ରକାରେ ପ୍ରଦତ୍ତ ହୋଇଛି --

“ଏ ଅନ୍ତେ କରି ଚିତ୍ତଶୁଦ୍ଧି, କାତ୍ୟଙ୍କ ନନ୍ଦନ କବନ୍ଧୀ ।
ପୁଚ୍ଛିଲେ ମହର୍ଷିଙ୍କୁ ଯାଇ, ବୋଲ ମା ହେଉନ୍ତୁ ଗୋସାଇଁ ।
କିପରି ଜନମ ଗ୍ରହଣ, କଲେ ଜଗତ ପ୍ରାଣୀଗଣ ।
କାହିଁରୁ ପୁଣି ହେଲେ ଜାତ ? ବୋଲନ୍ତୁ ଏ ସବୁ ବୃତ୍ତାନ୍ତ ।”

ଋଷିଙ୍କ ଉତ୍ତର—

ବୋଇଲେ ଋଷି ମହାମତି, ତୁଥମେ ଦେବ ପ୍ରଜାପତି ।
ପ୍ରଜାଙ୍କ ଉତ୍ପତ୍ତି ବିଷୟେ, ଇଚ୍ଛୁକ ହୋଇଣ ହୃଦୟେ ।
ତେଜଶ ସକଳ ଭରସା, ବହୁତ କଲେ କି ତପସ୍ୟା ।
ପ୍ରଥମେ ରୟି ପୁଣି ପ୍ରାଣ, ଏ ଦୁଇ କଲେ କି ନିର୍ମାଣ ।
ରୟି ଯେ ସର୍ବ ଆଦିଭୂତ, ପ୍ରାଣ ଯେ ଚୈତନ୍ୟ ଉଦ୍‌ଭୂତ ।
ଏହି ମିଥୁନ ଉତ୍ପାଦନ, କଲେ କି କମଳଆସନ ॥"

ଏହିପରି ଭାବରେ ସମଗ୍ର ଛଅଗୋଟି ପ୍ରଶ୍ନ ଓ ତାହାର ଉତ୍ତର ଫକୀରମୋହନ ଅତି ସୁନ୍ଦର ଭାବେ ଅନୁବାଦ କରିଛନ୍ତି ।

କଠୋପନିଷତ୍—

ଭାରତୀୟ ବ୍ରହ୍ମବିଦ୍ୟା ବିଷୟକ ତତ୍ତ୍ୱ ପ୍ରତିପାଦନ ଦୃଷ୍ଟିରୁ କଠୋପନିଷଦର ପ୍ରତିଷ୍ଠା ଯଥେଷ୍ଟ ଅଧିକ । ଏହା କୃଷ୍ଣ ଯଜୁର୍ବେଦୀୟ କଠଶାଖାର ଅନ୍ତର୍ଭୁକ୍ତ । ଏହା ଦୁଇ ଅଧ୍ୟାୟରେ ବିଭକ୍ତ ଏବଂ ପ୍ରତ୍ୟେକ ଅଧ୍ୟାୟରେ ତିନିଗୋଟି ଲେଖାଏ 'ବଲ୍ଲୀ' ରହିଛି । ପ୍ରଥମ ଅଧ୍ୟାୟର ପ୍ରଥମ ବଲ୍ଲୀରେ ମହର୍ଷି ଉଦ୍ଦାଳକ ଓ ତାହାଙ୍କ ପୁତ୍ର ନଚିକେତାଙ୍କୁ ନେଇ ଏକ ଆଖ୍ୟାୟିକାର ଅବତାରଣା କରାଯାଇଛି । ମହର୍ଷି ଉଦ୍ଦାଳକ 'ବିଶ୍ୱଜିତ୍' ଯାଗ କରି ନିଜର ସମସ୍ତ ସମ୍ପତ୍ତି ଦାନ କରିଦେଲେ । ନଚିକେତା ଦେଖିଲେ ଯେ, ତାଙ୍କର ପିତା ସର୍ବସ୍ୱ ଦାନ କରି ଦେଇଛନ୍ତି ଏବଂ ପରିଶେଷରେ ସେ (ନଚିକେତା) କେବଳ ଅବଶିଷ୍ଟ ରହିଛନ୍ତି । ନଚିକେତା ତାଙ୍କୁ ମଧ୍ୟ ଦାନ କରି ଦେବାକୁ ପିତାଙ୍କୁ ଅନୁରୋଧ କଲେ । କିନ୍ତୁ ମହର୍ଷି ଉଦ୍ଦାଳକ

ସେଥିପ୍ରତି କର୍ଣ୍ଣପାତ କଲେ ନାହିଁ । ନଚିକେତା ବାରମ୍ବାର ଏହି ଅନୁରୋଧ କରିବାରୁ ସେ ବିରକ୍ତ ହୋଇ "ତତେ ଯମକୁ ଦେବି ବୋଲି କହି ଦେଲେ । ଏହା ଫଳରେ ନଚିକେତା ଯମଙ୍କ ଦ୍ୱାରରେ ଯାଇ ଉପସ୍ଥିତ ହେଲେ । ସେତେବେଳେ ଯମ ଗୃହରେ ଅନୁପସ୍ଥିତ ଥିଲେ । ନଚିକେତା ସେଠାରେ ତିନିଦିନ ପର୍ଯ୍ୟନ୍ତ ଅନାହାରରେ ଯମଙ୍କୁ ଅପେକ୍ଷା କଲେ । ତିନିଦିନ ପରେ ଯମ ଫେରି ତାହାଙ୍କ ଅତିଥି ନଚିକେତା ଅନାହାରରେ ତିନିଦିନକାଳ ଦ୍ୱାରରେ ଅପେକ୍ଷା କରି-ଥିବାରୁ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ଏଥିପାଇଁ ନଚିକେତାଙ୍କୁ ତିନୋଟି ବର ମାଗିବାକୁ କହିଲେ । ନଚିକେତା ଯମକୁ ତିନିଗୋଟି ବିଦ୍ୟା ମାଗିଥିଲେ । ତାହା ହେଉଛି—(୧) ପିତୃତୋଷ, (୨) ଅଗ୍ନିବିଦ୍ୟା ଓ (୩) ବ୍ରହ୍ମବିଦ୍ୟା । ଯମ ପ୍ରଥମ ଦୁଇଟି ବର ଦେଇ ତୃତୀୟ ବର (ବ୍ରହ୍ମବିଦ୍ୟା) ଦେବାକୁ ଅନିଚ୍ଛା ପ୍ରକାଶ କଲେ ଏବଂ ତାହା ପରିବର୍ତ୍ତେ ଅନ୍ୟ ଏକ ବର ମାଗିବା ନିମିତ୍ତ ନଚି-କେତାଙ୍କୁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ନାନାପ୍ରକାର ପ୍ରଲୋଭନ ଦେଖାଇଲେ । କିନ୍ତୁ ନଚିକେତା ବ୍ରହ୍ମବିଦ୍ୟା ଲାଭ କରିବା ନିମିତ୍ତ ବାରମ୍ବାର ଅନୁରୋଧ କଲେ । ଏହା ଫଳରେ ଯମ ତାହାଙ୍କୁ ବ୍ରହ୍ମ-ବିଦ୍ୟା ଉପଦେଶ ପ୍ରଦାନ କଲେ ।

'କଠୋପନିଷଦ'ର ଦ୍ୱିତୀୟ ଅଧ୍ୟାୟ, ପ୍ରଥମ ବଲ୍ଲୀରେ ଯମ ବ୍ରହ୍ମତତ୍ତ୍ୱ ବିଷୟରେ କହୁଛନ୍ତି—

"ପରାଚଃ କାମାନନୁଯାନ୍ତି ବାଲା—
ସ୍ତେ ମୃତ୍ୟୋର୍ଯାନ୍ତି ବିତତସ୍ୟ ପାଶମ୍,
ଅଥ ଧୀରା ଅମୃତତ୍ୱଂ ବିଦିତ୍ୱା ।

ଧୀ ବମଧ୍ରୁବଂ ଷ୍ଟିବ ନ ପ୍ରାର୍ଥୟନ୍ତେ ।
ଯେନ ରୂପଂ ରସଂ ଗନ୍ଧଂ ଶବ୍ଦାନ୍ ସ୍ପର୍ଶାଁ ଶଚ ମୈଥୁନାନ୍
ଏତେ ନୈବ ବଜାନାତି କମତ୍ର ପରିଶିଷ୍ୟତେ ॥
ଏତଦ୍‌ବୈତତ୍ ।"

ଏହାର ଅର୍ଥ—ଯେଉଁ ଲୋକମାନଙ୍କର ବୁଦ୍ଧି ଅପରିପକ୍ୱ, ସେହି ମୂର୍ଖମାନେ ବାହ୍ୟ ଭୋଗ ପ୍ରତି ଆସକ୍ତ ପ୍ରକାଶ କରିଥାନ୍ତି ସର୍ବବ୍ୟାପୀ ମୃତ୍ୟୁଦେବଙ୍କର ପାଶରେ ପଡ଼ିଥାନ୍ତି । କିନ୍ତୁ ବିବେକୀ ପଣ୍ଡିତମାନେ ବିବେକ ବଳରେ ଅମର ପଦହିଁ ସତ୍ୟ ଜାଣିପାରି ଅନିତ୍ୟ ସଂସାରର ଭୋଗାଦି ନିମିତ୍ତ ପ୍ରାର୍ଥନା କରନ୍ତି ନାହିଁ । (ଅର୍ଥାତ୍, ସାଂସାରିକ ଭୋଗ ପରିହାର ପୂର୍ବକ ନିତ୍ୟ ଅମୃତପଦ ଲାଭ କରିବାକୁ ଯତ୍ନଶୀଳ ହୁଅନ୍ତି ।) ମନୁଷ୍ୟ ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ ତଥା ସ୍ରକ୍‌ଚନ୍ଦନ ବନିତାଦି ଦ୍ୱାରା ଲବ୍‌ଧ ସୁଖ ପରମ-ଦେବଙ୍କଠାରୁ ପ୍ରାପ୍ତ ଜ୍ଞାନଶକ୍ତି ବଳରେ ଅନୁଭବ କରୁଛି । ଏଠାରେ ଆଉ କଣ ବା ଅବଶେଷ ରହୁଛି—ତୁମେ ପଚାରିଥିବା ସେହି ବସ୍ତୁ ହେଉଛି, ଏହି ଆତ୍ମା ।

ଫକୀରମୋହନ ଏହି ଶ୍ଳୋକ ଦୁଇଟିର ଭାବ କିପରି ଅତି ସରଳ ଓ ସୁନ୍ଦର ଭାବରେ ଫୁଟାଇଛନ୍ତି ଦେଖାଯାଉ—

"ବାହାର ଯେତେକ କାମ୍ୟବସ୍ତୁ, ନିର୍ବୋଧ ଲୋଡ଼ିଥାନ୍ତି କିନ୍ତୁ ।
ଏଥିକି ଯେ ସବୁ ନିର୍ବୋଧ, ହୁଅନ୍ତି ମୃତ୍ୟୁ ପାଶେ ବଦ୍ଧ ।
ମାତ୍ରକ ଛନ୍ତି ଯେତେ ଜ୍ଞାନୀ, କେଶବେ ଅମୃତତ୍ୱ ଜାଣି ।
ଅନିତ୍ୟ ବସ୍ତୁର କାମନା, ତେଜିଣ ଥାନ୍ତି ମହାମନା ।

ଇନ୍ଦ୍ରିୟ ଯୋଗେ କର ବୋଧ, ମୈଥୁନ ରୂପରସ ଗନ୍ଧ ।,
ଯାହାକୁ କର ଅନ୍ୱେଷଣ, କରିବା ନିମନ୍ତେ ଦର୍ଶନ ;
ତା ନାମ ଆତ୍ମା ସେ ପୁରୁଷ, ନୁହନ୍ତି ଲୋକରେ ଦୃଷ୍ଟେ ।"

ଫକୀରମୋହନଙ୍କ ଦ୍ୱାରା ଅନୂଦିତ ଅନ୍ୟାନ୍ୟ ଉପନିଷଦ-ଗୁଡ଼ିକରୁ ମଧ୍ୟ ଏହିପରି ବହୁ ଦୃଷ୍ଟାନ୍ତ ନିଆ ଯାଇପାରେ । ଉକ୍ତ ଉପନିଷଦ ଅନୁବାଦ ଜଗନ୍ନାଥ ଦାସଙ୍କ ଭାଗବତ ତୁଲ୍ୟ 'ନବାକ୍ଷରୀ ବୃତ୍ତ'ରେ ରଚିତ ହୋଇଛି । ଜଗନ୍ନାଥ ଦାସଙ୍କ ଭାଗବତର ଲୋକ-ପ୍ରିୟତାର ଯେତେଗୋଟି କାରଣ ଅଛି, ତନ୍ମଧ୍ୟରୁ ନବାକ୍ଷରୀ ବୃତ୍ତର ପ୍ରୟୋଗ ଅନ୍ୟତମ । ମନେହୁଏ, ଫକୀରମୋହନ ଏହି ଦୃଷ୍ଟିରୁ ଉପନିଷଦଗୁଡ଼ିକୁ ନବାକ୍ଷରୀ ବୃତ୍ତରେ ଅନୁବାଦ ପୂର୍ବକ ପରିବେଷଣ କରିଛନ୍ତି । ଏହା ପାଠ କରିବା ସମୟରେ ଜଗନ୍ନାଥ ଦାସଙ୍କ ଭାଗବତ (ବିଶେଷତଃ ଏକାଦଶ ସ୍କନ୍ଧ) ପାଠ କଲା ପରି ମନରେ ଅନୁଭବ ସୃଷ୍ଟି ହୁଏ । ଓଡ଼ିଆ ଭାଗବତ ପରି ଏହି ଅନୁ-ବାଦର ଭାଷା ଅତ୍ୟନ୍ତ ସୁନ୍ଦର ଓ ସାବଲୀଳ ।

ଜଗନ୍ନାଥ ଦାସ ଭାଗବତ ରଚନା କରିବା ସମୟରେ ଯେଉଁ-ପରି ମୂଳ ଭାଗବତରେ କେତେକ ଅଂଶ ପରିହାର କରିଛନ୍ତି ଏବଂ କେତେକ ସ୍ଥଳରେ ଆବଶ୍ୟକତାନୁଯାୟୀ ନୂତନ ବିଷୟର ସଂଯୋଜନା କରିଛନ୍ତି, ଫକୀରମୋହନ ତାହାଙ୍କ ଉପନିଷଦ ଅନୁ-ବାଦରେ ସେପରି କରିନାହାନ୍ତି । ସେ ଉପନିଷଦର କୌଣସି ଶ୍ଳୋକର କୌଣସି ଅଂଶକୁ ତାହାଙ୍କ ଅନୁବାଦ ମଧ୍ୟରେ ପରିହାର କରିନାହାନ୍ତି । ଅଥଚ ଉପନିଷଦର ଶ୍ଳୋକଗୁଡ଼ିକର ଅବିକଳ ଭାବରେ ସରଳ ଭାଷା ଓ ଛନ୍ଦ (ନବାକ୍ଷରୀବୃତ୍ତ) ମାଧ୍ୟମରେ

ପରିସ୍ଫୁଟିତ ହୋଇଛି । ଏହାହିଁ ଫକୀରମୋହନଙ୍କ ଉପନିଷଦ ଅନୁବାଦର ମୂଳ ବୈଶିଷ୍ଟ୍ୟ ।

ପରିଶେଷରେ, ଏତିକିମାତ୍ର ଉଲ୍ଲେଖଯୋଗ୍ୟ ଯେ, ଓଡ଼ିଶାର ଅଗଣିତ ନରନାରୀଙ୍କ ମଧ୍ୟରେ ମହାଭାରତ ରଚନା କରିଥିଲେ, ଓଡ଼ିଆମାନଙ୍କ 'କୃପାସିନ୍ଧୁ' ବଳରାମ ଦାସ ଯେଉଁପରି ଦାଣ୍ଡୀରାମାୟଣ ରଚନା କରିଥିଲେ, ସେହି ସମୟରେ ଭାଗବତର ତତ୍ତ୍ୱକୁ ଉତ୍କଳ ଭୂଖଣ୍ଡରେ ଅତି ସରଳ ଭାବରେ ପ୍ରଚାର କରାଇବା ନିମିତ୍ତ ଭକ୍ତ କବି ଜଗନ୍ନାଥ ଦାସ ଯେଉଁପରି ଭାଗବତ ରଚନା କରିଥିଲେ, ଓଡ଼ିଶାରେ ସଂସ୍କୃତ ଜାଣି ନ ଥିବା ଅଗଣିତ ବେଦାନ୍ତ ତତ୍ତ୍ୱାନୁସନ୍ଧିତ୍ସୁ ଓ ଆଧ୍ୟାତ୍ମିକ ଜ୍ଞାନପିପାସୁ ନରନାରୀଙ୍କୁ ବିଭିନ୍ନ ଉପନିଷଦର ଗୂଢ଼ ଅର୍ଥ ବୁଝାଇ ଦେବା ନିମିତ୍ତ ଫକୀରମୋହନଙ୍କର ଏତାଦୃଶ ପଦକ୍ଷେପ ସର୍ବଦୌ ଅଭିନନ୍ଦନୀୟ । ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ରଚନା ପୂର୍ବକ ସେ ଯେଉଁପରି ଓଡ଼ିଶାର ତତ୍କାଳୀନ ସାମାଜିକ ଜୀବନର ଚିତ୍ର ଉପସ୍ଥାପନା କରିଛନ୍ତି, ଉପନିଷଦର ଅନୁବାଦ ଦ୍ୱାରା ସେ ସେହିପରି ଓଡ଼ିଆମାନଙ୍କର ଜ୍ଞାନରାଜ୍ୟର ବିକାଶ ସାଧନ କରିବା ସଙ୍ଗେ ସଙ୍ଗେ ଉତ୍କଳ ବାଣୀଭଣ୍ଡାରର ଶ୍ରୀବୃଦ୍ଧି ସମ୍ପାଦନ କରିଛନ୍ତି ।

ସହାୟକ ଗ୍ରନ୍ଥସୂଚୀ--

୧ । ଈଶାଦି ନଅଟି ଉପନିଷଦ --ଗୋରଖପୁର ଗୀତା ପ୍ରେସ୍ ପ୍ରକାଶିତ

୨ । ଉପନିଷଦ ସଂଗ୍ରହ-- ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା

୩ । ଉପନିଷଦେର ଭୂମିକା ( ବ୍ରାହ୍ମୀ )—ଉତ୍କଳର ସଦ୍‌ବାପଲ୍ଲୀ ରାଧାକୃଷ୍ଣନ୍

୪ । ଗୀତାର ପ୍ରଥମ ଶ୍ଳୋକ—ଅଧ୍ୟାପକ ଗୌରୀକୁମାର ବ୍ରହ୍ମା

୫ । ଫକୀରମୋହନ ଗ୍ରନ୍ଥାବଳୀ

୬ । ଫକୀରମୋହନ ଆତ୍ମଜୀବନ ଚରିତ

୭ । ସରସ୍ୱତୀ ଫକୀରମୋହନ— ସ୍ୱର୍ଗତଃ ଉତ୍କଳର ମାୟାଧର ମାନସିଂ

୮ । ବ୍ୟାସକବି ଫକୀରମୋହନ—ଉତ୍କଳର ନଟବର ସାମନ୍ତରାୟ



# ବ୍ୟାସକବି ଫକୀରମୋହନ

ଶ୍ରୀ ଅଭୟଚରଣ ଭଟ୍ଟାଚାର୍ଯ୍ୟ
ଚତୁର୍ଥବାର୍ଷିକ କଳା ଗ୍ରୁପ

"ଜନନୀର ଦେଖା କରିବାର ଇଚ୍ଛା
ଯେବେ ହୋଇଥାଏ ମନେ,
ଉତ୍କଳର ମାଟି ଆଲିଙ୍ଗନ କରି
ତା ଧୂଳି ଲେପ ବଦନେ ।"

( ମଧୁବାବୁ )

ଅନନ୍ତ ସୃଷ୍ଟିର ଆବହମାନ କାଳରୁ ଆଜି ପର୍ଯ୍ୟନ୍ତ କେତେ ଶତ ଶତ ମାନବ ଏହି ଧରା ବକ୍ଷରେ ଜନ୍ମ ଗ୍ରହଣ କରି ନିଜ ନିଜର ଖେଳ ସାଙ୍ଗ କରି ମୃତ୍ୟୁ ଶଯ୍ୟାରେ ଶୟନ କଲେଣି, ତାହାର ଇୟତ୍ତା ନାହିଁ । ସେହି ଅନନ୍ତ କାଳ ଗର୍ଭରେ ଦାରିଦ୍ର୍ୟର ଭିକାରୀ ଠାରୁ "ମୁକୁଟ-ମଣ୍ଡିତ-ରାଜଶିର" ପର୍ଯ୍ୟନ୍ତ ପ୍ରତ୍ୟେକଙ୍କର ନାମ ଲୁପ୍ତ ଯାଇ-ଅଛି । କିନ୍ତୁ ଯେଉଁମାନେ ନିଜର ଦେବୋପମ ଚରିତ୍ର ଦ୍ୱାରା ଦେଶ ଓ ଦଶର କଲ୍ୟାଣ ସାଧନ କରି ଯାଇଅଛନ୍ତି, ଯେଉଁମାନେ ସ୍ୱାର୍ଥ ମୋହର ଜଳାଞ୍ଜଳି ଦେଇ ପ୍ରକୃତ କର୍ମର ପରିଚୟ ଦେଇ ଯାଇ-ଅଛନ୍ତି, ସେମାନଙ୍କର ଜଡ଼ ଶରୀର ସର୍ବଗ୍ରାସୀ-ଶ୍ମଶାନ-ଭସ୍ମରେ ପରିଣତ ହେଲେ ମଧ୍ୟ ସେମାନଙ୍କର ଯଶୋବିଗ୍ରହ ଉତ୍କଳବାସୀଙ୍କର ସ୍ମୃତି-ମନ୍ଦିରରେ ନିତ୍ୟ ପୂଜିତ ହେଉଅଛି ।

ଅଧୁନା ଓଡ଼ିଆ ଭାଷାର ସ୍ୱଭାବ ଓ ଶକ୍ତି ଅବଲୋକନ କରି ଆମ୍ଭମାନଙ୍କ ମନରେ ଏପରି ପ୍ରଶ୍ନ ଉଦ୍ଭବ ହୋଇଥାଏ—ଏଥିପୂର୍ବେ ଏହି ଭାଷାର ଅସ୍ତିତ୍ୱ କିପରି ଥିଲା ? ଅତି ପ୍ରାଚୀନ ଯୁଗର କଥା ଛାଡ଼ି ପ୍ରାୟ ପଚାଶ ବର୍ଷ ପୂର୍ବର କଥା ଆଲୋଚନା କଲେ ଦେଖାଯାଏ ଯେ, ବଙ୍ଗ ଭାଷା ପ୍ରଭାବରେ ଯେତେବେଳେ ଓଡ଼ିଆ ଭାଷା ଅସ୍ତିତ୍ୱ ହରାଇବାକୁ ବସିଥିଲା । ଆମ୍ଭମାନଙ୍କର ମାତୃଭାଷାକୁ ଏ ବିପଦରୁ ରକ୍ଷା କରିବା ନିମନ୍ତେ ସେତେବେଳେ ଉତ୍କଳର ଯେଉଁ କେତେକ ସାହିତ୍ୟ-ସେନାପତି ଆବଶ୍ୟକ ହୋଇଥିଲେ, ସେମାନଙ୍କ ମଧ୍ୟରେ ଫକୀର-ମୋହନ ଅଗ୍ରଗଣ୍ୟ ।

ଏହି ସ୍ୱଦେଶ ବତ୍ସଳ ବୀରପୁରୁଷ ୧୮୪୩ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସରେ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ମଲ୍ଲିକାଶପୁର ଗ୍ରାମରେ ପ୍ରସିଦ୍ଧ ଖଣ୍ଡାୟତ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କର ନାମ ଲକ୍ଷ୍ମଣ ଚରଣ ସେନାପତି ଓ ମାତାଙ୍କର ନାମ ତୁଳସୀ ଦେବୀ । ଫକୀରମୋହନ ଦ୍ୱିତୀୟ ବର୍ଷରେ ପଦାର୍ପଣ କରୁଥିବାବେଳେ ପିତୃମାତୃଶୂନ୍ୟ ହେବାରୁ ତାଙ୍କର ପିତାମହୀ ସ୍ନେହରେ ଶିଶୁର ଲାଳନ ପାଳନ ଭାର ଗ୍ରହଣ କରିଥିଲେ । ବାଲ୍ୟ ଜୀବନରେ ଅର୍ଶ ରୋଗରେ ବହୁକାଳ ପୀଡ଼ିତ ହେବାରୁ ସମସ୍ତେ ତାଙ୍କର ଆଶା ପରିତ୍ୟାଗ କରିଥିଲେ । କିନ୍ତୁ ଭଗବାନଙ୍କର ଅପାର କରୁଣା, ପିତାମହୀଙ୍କର ନିରନ୍ତର ଶୁଶ୍ରୂଷା ତାଙ୍କୁ ଉକ୍ତ ବ୍ୟାଧି କବଳରୁ ମୁକ୍ତ କରିଥିଲା । ଏହି ଦାରୁଣ ଦୁଃଖ ଯନ୍ତ୍ରଣା ଭୋଗ କରୁଥିବାରୁ ସେ ଉପଯୁକ୍ତ ସମୟରେ ବିଦ୍ୟାରମ୍ଭ କରି ନଥିଲେ । ତେଣୁ ଗ୍ରାମ୍ୟ ପାଠଶାଳାରେ ଶିକ୍ଷା ସମାପ୍ତ ହେବା ବେଳକୁ ତାଙ୍କର ତ୍ରୟୋଦଶ ବର୍ଷ ଅତୀତ ହୋଇ ଯାଇଥିଲା ।

ତାଙ୍କର ଉଚ୍ଚ ଶିକ୍ଷାଲାଭ କରିବାକୁ ପ୍ରବଳ ଆଗ୍ରହ ଥିଲେ ମଧ୍ୟ ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିବାରୁ ପିତାମହୀ ତାଙ୍କୁ ସେଥିରୁ ବିରତ କରାଇ ବୈବାହିକ ବନ୍ଧନ ସୂତ୍ରରେ ଆବଦ୍ଧ କରି ପକାଇଲେ । ଏତିକବେଳେ ଫକୀରମୋହନଙ୍କ ହୃଦୟପଟରେ ଦୁଇଟି ମହାଚିନ୍ତା ଆସି ଉପସ୍ଥିତ ହେଲା—ଗୋଟିଏ ପରିବାର ପ୍ରତିପୋଷଣ ଲାଗି ଅର୍ଥଚିନ୍ତା ଓ ଅନ୍ୟଟି ଉଚ୍ଚଶିକ୍ଷା ଲାଳସା । ତେଣୁ ସେ ଅର୍ଥ ଉପାର୍ଜନ ନିମିତ୍ତ ବାଲେଶ୍ୱର ନିକଟବର୍ତ୍ତୀ ସମୁଦ୍ର କୂଳରେ ଲବଣ ବିଭାଗରେ କାର୍ଯ୍ୟ କଲେ । କିନ୍ତୁ ଅଳ୍ପଦିନ ମଧ୍ୟରେ ଲବଣ ପ୍ରସ୍ତୁତ କରିବାର ସୁବିଧା ଇଂରେଜମାନଙ୍କ ବିଦେଶୀମାନଙ୍କ ହାତକୁ ଚାଲିଗଲାରୁ ତାଙ୍କର ଅର୍ଥୋପାର୍ଜନ ପନ୍ଥାରେ ବାଧା ଜନ୍ମିଲା । ତତ୍ପରେ କିଛି ଦିନ କଟେଜରେ କାର୍ଯ୍ୟ କଲେ । ଏଥିରେ ତାଙ୍କୁ ଭଲ ନ ଲାଗିବାରୁ ବାରବାଟୀ ବିଦ୍ୟାଳୟରେ ଆସି ନାମ ଲେଖାଇଲେ । ଅବିଶ୍ରାନ୍ତ ପରିଶ୍ରମର ଫଳ ସ୍ୱରୂପ ଫକୀରମୋହନ ପ୍ରତିବର୍ଷ ବାର୍ଷିକ ପରୀକ୍ଷାରେ ସର୍ବୋଚ୍ଚ ସ୍ଥାନ ଅଧିକାର କରି ଉନ୍ନୀତ ହୋଇ-ଥିଲେ । କିଛି ଦିନ ଉତ୍ତାରେ ବାରବାଟୀ ବଙ୍ଗୋସ୍କୁଲ ବିଦ୍ୟାଳୟରେ ପ୍ରଧାନ ପଣ୍ଡିତଙ୍କର ସ୍ଥାନ ଶୂନ୍ୟ ହେବାରୁ ଫକୀରମୋହନ ସଦାଗ୍ରେ ଉକ୍ତ ସ୍ଥାନ ପାଇଁ ନିର୍ବାଚିତ ହେଲେ । ସେ ଶିକ୍ଷକତା ଗ୍ରହଣ କରି ଅଳ୍ପ ଦିନ ମଧ୍ୟରେ ଜଣେ ଉପଯୁକ୍ତ ଶିକ୍ଷକ ରୂପେ ଗଣ୍ୟ ହେଲେ । ତାଙ୍କର କର୍ମ କୁଶଳତା, ଛାତ୍ରମଣ୍ଡଳୀ ପ୍ରତି ସହାନୁଭୂତି ଓ ଲୋକ-ପ୍ରିୟତା ହେତୁରୁ ସେ ଜଣେ ଆଦର୍ଶ ପୁରୁଷ ହୋଇ ପାରିଥିଲେ । ଫକୀରମୋହନ ନିଜକୁ କେବଳ ଶିକ୍ଷକତା କର୍ମରେ ସର୍ବଦା ନିୟୁକ୍ତ କରି ନଥିଲେ । ଅବସର ବେଳେ ନିଜର ଜ୍ଞାନୋନ୍ନତି ନିମିତ୍ତ ଅମରକୋଷ, ଶକୁନ୍ତଳା, ବେଣୀସଂହାର, ମୁଗ୍ଧବୋଧ ବ୍ୟାକରଣ, ମେଘଦୂତ କୁମାର ସମ୍ଭବ, ରଘୁବଂଶ ଓ ହଂସଦୂତ ପ୍ରଭୃତି ଉତ୍କୃଷ୍ଟ କାବ୍ୟଗୁଡ଼ିକୁ କେତେବେଳେ ଟୀକା ସାହାଯ୍ୟରେ ଓ କେତେବେଳେ

ସ୍ଥାନୀୟ ସଂସ୍କୃତ ପଣ୍ଡିତମାନଙ୍କ ସାହାଯ୍ୟରେ ଶିକ୍ଷା କରିବାକୁ ଲାଗିଲେ । ଏହାଦ୍ୱାରା ତାଙ୍କର ସାହିତ୍ୟ କ୍ଷେତ୍ରରେ ଗଭୀର ପାରଦର୍ଶିତା ଜନ୍ମିଲା ।

ଏହି ସମୟରେ କବିବର ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିଲେ । ଏହିଠାରେ ଫକୀରମୋହନ ଓ ରାଧାନାଥଙ୍କର ମିଳନ ଉତ୍କଳ ସାହିତ୍ୟର ଏକ ଶୁଭ ନିଦର୍ଶନ । ଉଭୟେ ନିଷ୍ଠାପର ସାହିତ୍ୟସେବୀ ଓ ସ୍ୱଦେଶପ୍ରେମିକ । ଦେଶର ଉନ୍ନତି କାମନା ପ୍ରଭୃତି ବିଷୟରେ ସମଭାବରେ ଚିନ୍ତିତ ଥିଲେ । ଓଡ଼ିଆ ଭାଷାରେ ବିଶେଷ ଜ୍ଞାନଲାଭ କରିବା ନିମନ୍ତେ ଦୁହେଁ ତାଳପତ୍ର ଲିଖିତ ପ୍ରାଚୀନ କବିମାନଙ୍କର କାବ୍ୟ ଓ କବିତାବଳୀ ବିଶେଷ ଭାବରେ ଆଲୋଚନା କରୁଥିଲେ ଏବଂ ଏହାକୁ ଦୈନନ୍ଦିନ କର୍ମ ବୋଲି ଜ୍ଞାନ କରୁଥିଲେ । ଫକୀରମୋହନ ଛଅବର୍ଷକାଳ ଏହି ବିଦ୍ୟାଳୟରେ ଶିକ୍ଷକତା କାର୍ଯ୍ୟ କରି ଓଡ଼ିଆ ଗୃହମାନଙ୍କର ମାତୃଭାଷା ଶିକ୍ଷା ନିମନ୍ତେ ଯତ୍ନବାନ ହୋଇଥିଲେ । ତତ୍ପରେ ତତ୍ରତ୍ୟ ମିଶନାରୀମାନଙ୍କ ଦ୍ୱାରା ପରିଚାଳିତ ମଧ୍ୟ-ଭର୍ଣ୍ଣାକ୍ୟୁଲର ବିଦ୍ୟାଳୟର ପ୍ରଧାନ ପଣ୍ଡିତ ପଦରେ ନିଯୁକ୍ତ ହେଲେ । ଏହାଙ୍କ କାର୍ଯ୍ୟରେ ମିଶନାରୀ ରେଭରେଣ୍ଡ ବି: ସି: ହାଲେମ ସାହେବ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କ ସହିତ ନାନା ବିଷୟରେ ଆଲୋଚନା କରିବାକୁ ଲାଗିଲେ ଏବଂ ଫକୀରମୋହନଙ୍କର ଇଂରାଜୀ ଜ୍ଞାନ ବୃଦ୍ଧି ନିମନ୍ତେ ନାନା ଉତ୍ସାହ ପ୍ରଦାନ କଲେ । ଫକୀରମୋହନ. ହାଲେମ ସାହେବଙ୍କୁ ଓଡ଼ିଆ ଜାତିର ମଙ୍ଗଳ ଓ ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ସାଧନ ବିଷୟରେ ବିଶେଷ ଭାବରେ ଅନୁରକ୍ତ ଥିବାର ଜାଣି ତାଙ୍କୁ ଆନ୍ତରିକ ଭକ୍ତି ପ୍ରଦର୍ଶନ କରୁଥିଲେ ।

୧୮୬୬ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଓଡ଼ିଶା "ନଅଙ୍କ" ଦୁର୍ଭିକ୍ଷ ଦାଉରେ ହନ୍ତସନ୍ତ ହେଉଥିଲା, ସେତେବେଳେ ଉତ୍କଳର ସ୍ୱନାମଧନ୍ୟ ରେଭେନ୍‌ସା ସାହେବ କମିଶନର ଥାନ୍ତି । ଦୁର୍ଭିକ୍ଷର ଭୟଙ୍କରତା ଅବଲୋକନ କରି ଫକୀରମୋହନଙ୍କର ପ୍ରାଣ ଦୟାରେ ବିଗଳିତ ହେଲା । ସେ ଉତ୍କଳର ଦୁଃଖ ଦୁର୍ଦ୍ଦଶା ଦେଶ ବିଦେଶରେ ପ୍ରଚାର କରିବା ଲାଗି କଲିକତାର ବଡ଼ ବଡ଼ ଖବର କାଗଜକୁ ସମ୍ବାଦ ଯୋଗାଇ ଭାରତ ବାସୀଙ୍କର ସାହାଯ୍ୟ ଭିକ୍ଷା କଲେ ।

ବହୁଦିନ ପର୍ଯ୍ୟନ୍ତ ଉତ୍କଳ ବଙ୍ଗ ଶାସନାଧୀନରେ ରହିବାର ଇଂରାଜୀ ଶିକ୍ଷିତ ବଙ୍ଗବାସୀମାନଙ୍କୁ ଓଡ଼ିଶାର ପ୍ରତ୍ୟେକ ବିଭାଗରେ କାର୍ଯ୍ୟ କରିବାକୁ ସୁବିଧା ମିଳିଥିଲା । ସେତେବେଳେ ବୃହଆଡ଼େ ପ୍ରଚାରିତ ହେଲା ଯେ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ, ଏହା ବଙ୍ଗ ଭାଷାର ଏକ ରୂପାନ୍ତର ମାତ୍ର । କିନ୍ତୁ ଏ ପ୍ରୟାସ ବିଫଳ ହେଲା । ତତ୍କାଳୀନ ବାଲେଶ୍ୱର କଲେକ୍ଟର ବୀମସ୍ ସାହେବ ଓ କମିଶନର ଶ୍ରୀଯୁକ୍ତ ରେଭେନ୍‌ସା ସାହେବ ଦେଶ ହିତୈଷୀ ରାଧାନାଥ, ବିଚିତ୍ରାନନ୍ଦ, ଗୌରୀଶଙ୍କର ଓ ଫକୀରମୋହନ ପ୍ରଭୃତି କର୍ମୀମାନଙ୍କ ପରାମର୍ଶରେ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ବୋଲି ସ୍ୱୀକାର କଲେ ଏବଂ ଏଥିର ଉନ୍ନତି ବିଧାନ କରିବାକୁ ଯଥାପରୋନାସ୍ତି ଚେଷ୍ଟା କଲେ । ଜାତିର ଏହି ସନ୍ଧିସ୍ଥଳରେ ଯୁବକ ଫକୀରମୋହନ ଅସୀମ ଧୈର୍ଯ୍ୟ ଓ ସାହସ ଅବଲମ୍ବନ ପୂର୍ବକ ଦେଶ ସେବାରେ ମନ ପ୍ରାଣ ଢାଳି ଦେଲେ । ଫକୀରମୋହନଙ୍କ ଅନୁରୋଧ କ୍ରମେ ଉକ୍ତ ସାହେବ ଦ୍ୱୟଙ୍କ ଦ୍ୱାରା ଉତ୍କଳର ରାଜକୀୟ ବିଭାଗମାନଙ୍କରେ ଓଡ଼ିଆ ଭାଷା ପ୍ରଚଳିତ ହେଲା ।

ଓଡ଼ିଆ ଭାଷାକୁ ଜୀବିତ ରଖି ଜାତୀୟ ସମସ୍ୟା ପୂରଣ କରିବାକୁ ହେଲେ ଦେଶରେ ଯେ ଗୋଟିଏ ଛାପାଖାନା ନିତାନ୍ତ ପ୍ରୟୋଜନ, ଏହା ଫକୀରମୋହନ ଉତ୍ତମ ରୂପେ ହୃଦୟଙ୍ଗମ କଲେ। ଆର୍ଥିକ ସମସ୍ୟା ତାଙ୍କର ଗତିରୋଧ କଲେ ସୁଦ୍ଧା ସେ ତତ୍ ପ୍ରତି ଭ୍ରୂକ୍ଷେପ ନ କରି ନିଜର ସଙ୍କଳ୍ପ କର୍ମ କ୍ଷେତ୍ରରେ ଲକ୍ଷ୍ୟ ପ୍ରଦାନ ପୂର୍ବକ ଅଦମ୍ୟ ଉତ୍ସାହରେ ଅର୍ଥ ସଂଗ୍ରହ କରିବାକୁ ଲାଗିଲେ। ଦେଶବାସୀ ଏପରି ମହତ୍ ଅନୁଷ୍ଠାନରେ ନିଜ ନିଜର ଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ ସାହାଯ୍ୟ କରିବାରୁ ଫକୀରମୋହନ କିଛିମାସ ମଧ୍ୟରେ ଛାପାଖାନା ସ୍ଥାପନରେ କୃତକାର୍ଯ୍ୟ ହୋଇଥିଲେ। ଏହି ଛାପାଖାନା ସ୍ଥାପନ ଲାଗି ତାଙ୍କୁ ଯେଉଁଭଳି ଭାବରେ ଦ୍ୱାରେ ଦ୍ୱାରେ ବୁଲି ଅବଶ୍ରାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା, ତାହାର ଇୟତ୍ତା ନାହିଁ। କିଛି ଦିନ ପରେ ଦେଶରେ ସମ୍ବାଦ ପତ୍ରିକା ପ୍ରଚାର କରିବା ଉଦ୍ଦେଶ୍ୟରେ ଉକ୍ତ ପ୍ରେସ୍‌ରୁ "ବୋଧଦାୟିନୀ" ଓ "ବାଲେଶ୍ୱର ସମ୍ବାଦ ବାହିକା" ନାମକ ପତ୍ରିକା ପ୍ରକାଶ କଲେ। ସେତେବେଳେ ଦେଶରେ ଶିକ୍ଷିତ ସଂଖ୍ୟା ମୁଷ୍ଟିମେୟ ଥିଲା, ତେଣୁ ଫକୀରମୋହନଙ୍କୁ ଉକ୍ତ ପତ୍ରିକାର ପରିଚାଳନା ନିମିତ୍ତ ପ୍ରାୟ ସମସ୍ତ ପ୍ରବନ୍ଧ ଲେଖିବାକୁ ପଡ଼ୁଥିଲା। ଦିବସରେ ଶିକ୍ଷକତା କାର୍ଯ୍ୟ ଓ ଛାପାଖାନାର ଆୟବ୍ୟୟ ହିସାବ ପତ୍ର ସମସ୍ତ ଠିକ୍ କରି ସାରିଲା ପରେ ରାତିର ଶେଷ ପ୍ରହରରେ ପତ୍ରିକା ଲାଗି ପ୍ରବନ୍ଧ ଲେଖି ବସୁଥିଲେ। ଏହି ପତ୍ରିକାରେ ଅସ୍ପୃଶ୍ୟତା ନିବାରଣ, ସାମାଜିକ ରୀତିନୀତିର ପରିବର୍ତ୍ତନ ପ୍ରଭୃତି ଉତ୍କୃଷ୍ଟ ପ୍ରବନ୍ଧମାନ ପ୍ରକାଶିତ ହେଉଥିଲା। ପରିଶେଷରେ ଭଗବାନଙ୍କ ଅପାର କରୁଣା ବଳରୁ ଫକୀରମୋହନ ନ୍ୟାୟ ଯୁଦ୍ଧରେ ଯଶସ୍ୱୀ ହେଲେ। ଜାତି ବଜାରରେ ଓଡ଼ିଆର ମାନ ମହତ୍ତ୍ୱ ଅକ୍ଷୁର୍ଣ୍ଣ ରହିଲା। ଓଡ଼ିଆ ଭାଷା ଜଗତରେ

ଗୋଟିଏ ସ୍ୱତନ୍ତ୍ର ଭାଷା ବୋଲି ସମସ୍ତେ ଜାଣିଲେ । ଓଡ଼ିଆ ବିଦ୍ୟାଳୟମାନଙ୍କରେ ଓଡ଼ିଆ ପୁସ୍ତକ ପ୍ରଚଳିତ ହେବାକୁ ଲାଗିଲା । ଓଡ଼ିଆ ଜାତି ଫକୀରମୋହନଙ୍କ ମସ୍ତକରେ ଗୌରବ ମୁକୁଟ ପିନ୍ଧାଇ ନିଜକୁ ମଧ୍ୟ ଗୌରବାନ୍ୱିତ ମନେ କଲେ । ଏହି ଅବସରରୁ ଫକୀରମୋହନ, ରାଧାନାଥ ଓ ଗୌରୀଶଙ୍କର ପ୍ରଭୃତି କର୍ମୀମାନଙ୍କ ସହିତରେ ପରାମର୍ଶ କରି ଓଡ଼ିଆ ପୁସ୍ତକର ବହୁଳ ପ୍ରଚାର ଲାଗି ପୁସ୍ତକ ପ୍ରଣୟନରେ ମନପ୍ରାଣ ଢାଳି ଦେଲେ । ଫଳରେ ଅନେକ ପାଠ୍ୟପୁସ୍ତକ ମଧ୍ୟ ଶୀଘ୍ର ପ୍ରକାଶିତ ହୋଇ ବିଦ୍ୟାଳୟମାନଙ୍କରେ ପ୍ରଚଳିତ ହେଲା । ଏଥି ସଙ୍ଗେ ସଙ୍ଗେ ମାତୃଭାଷା ଉପରି ମଫସଲ ଗ୍ରାମମାନଙ୍କରେ ଉତ୍ତମ ରୂପେ ପ୍ରଚାରିତ ହୋଇ ଜାତୀୟ ସମସ୍ୟା ପୂରଣରେ ସାହାଯ୍ୟକାରୀ ହେବ, ଏ ଭାବନା ତାଙ୍କର ପ୍ରଧାନ ଚିନ୍ତାର ବିଷୟ ହେଲା । ତେଣୁ ସର୍ବ ପ୍ରଥମେ ସେ ରେମୁଣା ଗ୍ରାମରେ ଗୋଟିଏ ଆଦର୍ଶ ବିଦ୍ୟାଳୟ ସ୍ଥାପନ କରିବାକୁ ମନସ୍ଥ କଲେ । ଏହି ସତ୍କାର୍ଯ୍ୟ ପୂରଣ ନିମିତ୍ତ ବାଲେଶ୍ୱରର ଜମିଦାରମାନ ରାଜା ବୈକୁଣ୍ଠନାଥ ଦେ ସ୍କୁଲ ବ୍ୟୟ ନିର୍ବାହ ସକାଶେ ମାସିକ ପଚିଶ ଟଙ୍କା ସାହାଯ୍ୟ ଦେଇ ତାଙ୍କୁ ବିଶେଷ ଭାବରେ ଉତ୍ସାହିତ କରାଇଲେ ।

ଫକୀରମୋହନ ଏହିପରି କେତେଦିନ ଅତିବାହିତ କଲା ଉତ୍ତାରେ ୧୮୭୨ ଖ୍ରୀଷ୍ଟାବ୍ଦରେ ସୁପରିଚିତ ବାମସ୍ ସାହେବଙ୍କ ଅନୁରୋଧ କ୍ରମେ ନୀଳଗିରି ରାଜ୍ୟର ଦେବାନ ପଦରେ ନିଯୁକ୍ତ ହୋଇଗଲେ । ନୀଳଗିରିରୁ ଡମପଡ଼ା, ଡମପଡ଼ାରୁ ଢେଙ୍କାନାଳ, ଦଶପଲ୍ଲା, ପାଲଲହଡ଼ା ଓ କେନ୍ଦୁଝର ପ୍ରଭୃତି ଗଡ଼ଜାତ ରାଜ୍ୟମାନଙ୍କରେ ଦେବାନ ବା ମନ୍ତ୍ରୀର କାର୍ଯ୍ୟ କରି ରାଜ୍ୟର ଯେଉଁ

ବହୁବିଧ କଲ୍ୟାଣ ସାଧନ କରିଯାଇ ଅଛନ୍ତି, ତାହା ଅଦ୍ୟାପି ଲୋକ ମୁଖରେ ପ୍ରଶଂସିତ ହେଉଅଛି । ପ୍ରଧାନତଃ କେନ୍ଦୁଝର ଭୂୟାଁ ପ୍ରଜା ବିଦ୍ରୋହ ତାଙ୍କ ଜୀବନରେ ଗୋଟିଏ ବିଶିଷ୍ଟ ଘଟଣା । ସେ ଯେପରି କଳ କୌଶଳରେ ଏହି ବିଦ୍ରୋହ ଦମନ କରି ନିଜର ଉପସ୍ଥିତ ବୁଦ୍ଧି, ଧୈର୍ଯ୍ୟ, ସାହସ ତଥା ଗୌରବର ପରିଚୟ ଦେଇଯାଇ-ଅଛନ୍ତି, ତାହା ଦେଖିଲେ ଫକୀରମୋହନଙ୍କ ରାଜନୀତି କୁଶଳତାର ପ୍ରଶଂସା ନକରି ରହି ହେବ ନାହିଁ । ବିଦ୍ରୋହ ଦମନ ଉତ୍ତାରେ ସେ ରାଜାଙ୍କର ଅବନ୍ଧ୍ୟକାରିତା ଅବଲୋକନ କରି ସେଠାରେ ଆଉ ଚାକିରୀ କରିବାକୁ ଆଗ୍ରହ ପ୍ରକାଶ କଲେ ନାହିଁ । ତହୁଁ ସେ ବିଦାୟ ଗ୍ରହଣ ପୂର୍ବକ ସେ ସ୍ଥାନ ପରିତ୍ୟାଗ କରି କଟକରେ ଆସି ଅବସ୍ଥାନ କଲେ । ଏଠାରେ ରାଧାନାଥ, ମଧୁସୂଦନ ପ୍ରଭୃତି ବନ୍ଧୁମାନଙ୍କ ସହିତ ନାନା ବିଷୟରେ ନାନା ପ୍ରକାର ଜାତିର ଉନ୍ନତି ପାଇଁ ଆଲୋଚନା କରୁଥିଲେ । କ୍ରମେ ରାଧାନାଥ, ମଧୁସୂଦନ, ଗୌରୀଶଙ୍କର ଓ ରାଜା ବୈକୁଣ୍ଠନାଥ ପ୍ରଭୃତି ବନ୍ଧୁମାନଙ୍କର ମୃତ୍ୟୁ ତାଙ୍କ ପ୍ରାଣରେ ଗଭୀର ବେଦନା ଆଣି ଦେଇଥିଲା । ବନ୍ଧୁବିଚ୍ଛେଦ ତାଙ୍କୁ ବଡ଼ ବାଧିଲା । ନିଜର ମୃତ୍ୟୁ ପାଇଁ ତାଙ୍କର ପ୍ରାଣ ସର୍ବଦା ବ୍ୟାକୁଳ ହେବାକୁ ଲାଗିଲା । ଫକୀରମୋହନ ଆଜନ୍ମ ରୋଗୀ; ପୁଣି ଯେତେବେଳେ ବାର୍ଦ୍ଧକ୍ୟ ଆସି ପ୍ରବେଶ କଲା, ସେତେବେଳେ ସେ ଦୁଷ୍ଟବ୍ରଣ, ଉରୁସ୍ତମ୍ଭ ପ୍ରଭୃତି କଠିନ ରୋଗରେ ଆକ୍ରାନ୍ତ ହେଲେ । ଗୋଟିଏ ଭଲ ହୋଇଗଲେ ଆଉ ଗୋଟିଏ ଆସି ଆକ୍ରମଣ କରି-ବସିଲା । ଶେଷରେ ୧୯୧୮ ଜୁନ୍ ମାସ ୧୪ ତାରିଖ ଦିନ କ୍ରୂର କାଳ ଆସି ଉତ୍କଳ ଜନନୀଙ୍କ କୋଳରୁ ଏହି ଯୋଗ୍ୟତମ ସୁତଙ୍କୁ ଅଲକ୍ଷିତରେ ଛଡ଼ାଇ ନେଲା ।

ଫକୀରମୋହନଙ୍କ ସ୍ୱଭାବ ଯେପରି ସରଳ, ସରସ ଓ ବନପୁଷ୍ପ-ସ୍ୱଚ୍ଛ, ସେହିପରି ନୈଜପ୍ରିୟ ଓ ଆଡ଼ମ୍ବର ଶୂନ୍ୟ ଥିଲା । ମୃତ୍ୟୁର ଛଅ ମାସ ପୂର୍ବରୁ ସେ ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନରେ ଜାଜପୁର ମଣ୍ଡପରେ ନେତୃତ୍ୱ ଗ୍ରହଣ କରି ସମ୍ମିଳନୀକୁ ଅଧିକ ଗୌରବାନ୍ୱିତ କରିଯାଇଛନ୍ତି ଏବଂ ସେ ଯେଉଁ ସାରଗର୍ଭ ସୁଧାମୟ ଅଭିଭାଷଣ ପାଠକରି ଓଡ଼ିଆ ପ୍ରାଣରେ ଉତ୍ସାହ ଦାନ କରିଯାଇଛନ୍ତି, ତାହା ଆମ୍ଭମାନଙ୍କର ପ୍ରଣିଧାନର ଯୋଗ୍ୟ । ସେ ଓଡ଼ିଆରେ ସହଜ, ସରଳ, ଶୁଦ୍ଧ ଗଳ୍ପ, ଉପନ୍ୟାସ ପ୍ରଭୃତି ସୁଖ ପାଠ୍ୟ ପୁସ୍ତକମାନ ଲେଖି ଉତ୍କଳରେ ଆମ୍ଭମାନଙ୍କର ପ୍ରଥମ ପଥପ୍ରଦର୍ଶକ ହୋଇ ଯାଇଅଛନ୍ତି । ତାଙ୍କ ପୁସ୍ତକାବଳୀ ମଧ୍ୟରୁ ଲଛମା, ମାମୁଁ, ପ୍ରାୟଶ୍ଚିତ୍ତ, ଛମାଣ ଆଠଗୁଣ୍ଠ, ଧୂଳି, ଉପହାର, ବୌଦ୍ଧାବତାର ଓ ଅବସର ବାସରେ ସର୍ବୋତ୍କୃଷ୍ଟ । ତାହାଙ୍କ ରଚନାବଳୀ ଆଲୋଚନା କଲେ ମନେହୁଏ, ଯେପରି ଏହା ବେଦବ୍ୟାସଙ୍କ ଅବାଧ ଲେଖନୀ ପ୍ରସୂତ—ତେଣୁ ଦେଶବାସୀ ତାଙ୍କୁ "ବ୍ୟାସ କବି" ଆଖ୍ୟା ପ୍ରଦାନ କରିଥିଲେ । ସେ ପୁସ୍ତକ ପ୍ରଣୟନ କରି ଉତ୍କଳ-ସାହିତ୍ୟ-ଭଣ୍ଡାରକୁ ଯଥେଷ୍ଟ ଦାନ କରିଯାଇଛନ୍ତି । ତାଙ୍କର କର୍ମମୟ ଜୀବନ ଜୟଯୁକ୍ତ ହୋଇ ପାରିଛି । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଉତ୍କଳର ଭାବୀ ଉନ୍ନତିରେ ଆଶାନ୍ୱିତ ହୋଇ ଦିନେ ସେ କହିଥିଲେ,—"ଆଜି ଜାତିର ଶୁଭ ସୂଚନା ଆମକୁ ଆସି ଦେଖା ଦେଲାଣି, ଏବେ ଉତ୍କଳରେ ଶତ ଶତ ସୁଲେଖକ ବାହାରି ଜନନୀର ସମ୍ପଦକୁ ବଢ଼ାଇ-ପାରିଲେଣି; ଏହାହିଁ ଆନନ୍ଦ ଓ ଗୌରବର କଥା ।" ଶିକ୍ଷା

ହିତରେ ସେ ଯେପରି ଅଧ୍ୟବସାୟ ଓ କର୍ତ୍ତବ୍ୟ ପରାୟଣତା ଦେଖାଇ ଆଦର୍ଶ ହୋଇ ପାରିଅଛନ୍ତି, ତାହା ଉତ୍ସାହୀ ତରୁଣ ସାହିତ୍ୟିକ-ମାନଙ୍କର ଅନୁକରଣୀୟ । ଜାତି ପ୍ରତି, ଦେଶ ପ୍ରତି, ପ୍ରକୃତ ମମତା ଓ ଆଦର ଥିଲେ, ଅତି ହୀନ ସ୍ଥାନ ବ୍ୟକ୍ତି ନିଜର ଜୀବନ କିପରି ଉତ୍ସର୍ଗ କରି ଜାତି ତଥା ଦେଶର ଅଶେଷ କଲ୍ୟାଣ ସାଧନ କରିପାରେ, ବ୍ୟାସକବି ଫକୀରମୋହନଙ୍କ ଆତ୍ମଜୀବନଚରିତ ତାହାର ଜ୍ୱଳନ୍ତ ଉଦାହରଣ ।



# ବିଷବୃକ୍ଷ ଓ ଛ'ମାଣ ଆଠଗୁଣ

ପ୍ରାଧ୍ୟାପକ ଡକ୍ଟର କୃଷ୍ଣଚରଣ ସାହୁ

ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

ବିଷବୃକ୍ଷ ବଙ୍ଗ ଦେଶର ବିଶିଷ୍ଟ ଲେଖକ ବଙ୍କିମଚନ୍ଦ୍ରଙ୍କ ଦ୍ୱାରା ରଚିତ ଏକ ଉପନ୍ୟାସ । ରଚନା କାଳ ୧୮୭୨ । ବଙ୍ଗ ଦର୍ଶନ ପତ୍ରିକାର ପ୍ରଥମ ସଂଖ୍ୟାଠାରୁ ଧାରାବାହିକ ପ୍ରକାଶ ପାଇ ୧୮୭୩ ଖ୍ରୀଷ୍ଟାବ୍ଦରେ ପୁସ୍ତକାକାରରେ ମୁଦ୍ରିତ ହୁଏ । ଏହାର ଚବିଶ ବର୍ଷ ପରେ ଅର୍ଥାତ୍ ୧୮୯୭ ଖ୍ରୀଷ୍ଟାବ୍ଦରେ ଛ'ମାଣ ଆଠଗୁଣ ଲେଖାହେଲା । ଏହି ଦୁଇ ଗ୍ରନ୍ଥକୁ ତୁଳନା କରି ଦେଖିଲେ ଛ'ମାଣ ଆଠଗୁଣ ମୂଳରେ ଥିବା ବସ୍ତୁ ସନ୍ଧି କଥା ଜଣାପଡ଼େ ।

ଶ୍ରୀଯୁକ୍ତ ମହାନ୍ତି ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ ଜନ୍ମ ଓ ମୃତ୍ୟୁ ସମୟର ହିସାବ ଦେଇ ଦୁଇଜଣଙ୍କୁ ଏକାନ୍ତ ଭାବରେ ସମସାମୟିକ (୧) କହିଛନ୍ତି । ତୁଳନାର ଏହି ମାନଦଣ୍ଡ ଉପରେ ନିର୍ଭର କରି ସେ ନିଜର ମନ୍ତବ୍ୟ ଦିଅନ୍ତି: "ରାଧାନାଥ ଓ ମଧୁସୂଦନ ପ୍ରଭୃତିଙ୍କର ପ୍ରତିଭାର ସ୍ଫୁରଣ ମୂଳରେ ରହିଛି ଇଂରେଜୀ ସାହିତ୍ୟ । ମାତ୍ର ଫକୀରମୋହନ ଏକାନ୍ତ ଭାବରେ ଓଡ଼ିଶା ଓ ଓଡ଼ିଆର । ସେ ବଙ୍ଗ ସାହିତ୍ୟ ଦ୍ୱାରା ପ୍ରଭାବିତ ହୋଇ ନାହାନ୍ତି, ଅଥଚ ଅନେକ କ୍ଷେତ୍ରରେ ସମସାମୟିକ ବଙ୍ଗ ସାହିତ୍ୟ ଠାରୁ ଅଧିକ ଉତ୍କର୍ଷର ପରିଚୟ ଦେଇଅଛନ୍ତି । ସେ ଇଂରେଜୀ ସାହିତ୍ୟ ପଢି ନାହାନ୍ତି ଅଥଚ ସମସାମୟିକ ଇଂରେଜୀ ସାହିତ୍ୟରେ ଭିକ୍ଟୋରିଆ ଯୁଗ

ଉପନ୍ୟାସର ସମସ୍ତ ବୈଶିଷ୍ଟ୍ୟ ଅଛି ତାଙ୍କ ଉପନ୍ୟାସରେ ।" (୨) ଏସବୁ ଶୁଣିବାକୁ ଝୁବ୍ ଭଲଲାଗେ, କିନ୍ତୁ ଏଥିରେ ସତ୍ୟ ନାହିଁ । ଔପନ୍ୟାସିକ ଭାବରେ ଫକୀରମୋହନ ଉପନ୍ୟାସ ଲେଖା ଆରମ୍ଭ କରନ୍ତି ୧୮୯୭ ରେ । ସେତେବେଳକୁ ବଙ୍କିମଚନ୍ଦ୍ରଙ୍କ ପ୍ରତିଭା ସମଗ୍ର ବଙ୍ଗ ସାହିତ୍ୟକୁ ପ୍ଳାବିତ କରି ସାରିଥିଲା । ସେ ଅବିସମ୍ବାଦିତ ଭାବେ ବଙ୍ଗଳା ସାହିତ୍ୟର ଶ୍ରେଷ୍ଠ ଲେଖକ ରୂପେ ସ୍ୱୀକୃତ ଓ ସମ୍ମାନିତ ହୋଇଥିଲେ । କେବଳ ବଙ୍ଗ ଦେଶ କାହିଁକି ଓଡ଼ିଶାରେ ମଧ୍ୟ ତାଙ୍କର ଗୁଣଗାନ କରିବା ପାଇଁ ଲୋକର ଅଭାବ ନଥିଲା । ନିଜ ମାତୃଭାଷା ଅପେକ୍ଷା ବଙ୍ଗ ଦେଶର ସମ୍ବାଦପତ୍ର ଓ ବଙ୍ଗ ଦେଶର ସାହିତ୍ୟକୁ ଆଗ୍ରହ କରିବା ଥିଲା, ସେକାଳର ରୀତି । (୩) ଫକୀର-ମୋହନ ସମ୍ପୂର୍ଣ୍ଣ ଏଇ ସର୍ବଗ୍ରାସୀ ପ୍ରଭାବରୁ ଏଡ଼ିପାରି ନଥିଲେ । ଓଡ଼ିଆ ବିରୋଧୀ ବଙ୍ଗାଳୀମାନଙ୍କୁ ସେ ଖିବ୍ ଗାଳି ଦେଇଛନ୍ତି, କିନ୍ତୁ ବଙ୍ଗଳା ସାହିତ୍ୟକୁ ନୁହେଁ । ବଙ୍ଗଳା ସାହିତ୍ୟହିଁ ତାଙ୍କର ସାହିତ୍ୟର ପିପାସା ଦୂର କରିଅଛି ।

ପଞ୍ଚାବନ ବର୍ଷର ପରିପୁଷ୍ଟ ଅନୁଭୂତି ନେଇ, ଫକୀରମୋହନ ଉପନ୍ୟାସ ଲେଖା ଆରମ୍ଭ କରନ୍ତି । ଏଇ ଅନୁଭୂତିର ଅନ୍ତରାଳରେ ସମାଲୋଚକ ଦୁଇଟି କଥା ଦେଖେ; 'ଅର୍ଜ୍ଜିତ ଜନିତ ପାଣ୍ଡିତ୍ୟ ଓ ସାହିତ୍ୟିକ ଆକାଂକ୍ଷା ।' (୪) ସେ ବର୍ଷ ବର୍ଷ ଧରି ଓଡ଼ିଶାର ବିଭିନ୍ନ ଗଡ଼ଜାତରେ ଶାସନ କାର୍ଯ୍ୟକରି ଓଡ଼ିଆ ସମାଜ ସହିତ ମିଶିବାକୁ ସୁବିଧା ପାଇଥିଲେ । ସେତେବେଳେ ସେ ସମସାମୟିକ ରାଧାନାଥଙ୍କ ପରି ଓଡ଼ିଶାର ଗିରି, ବନ, କାନ୍ତାର ନ ଦେଖି ଦେଖି-ଥିଲେ ଓଡ଼ିଶାର ଜୀବନ । ତାଙ୍କର ଉପନ୍ୟାସ ପ୍ରତି ଶ୍ରଦ୍ଧାଶୀଳ ପ୍ରକାଶକ କହନ୍ତି; "ଓଡ଼ିଆ ଘରର ଏପରି କୌଣସି ଅନ୍ଧସନ୍ଧି ନାହିଁ—ଯେଉଁଠି

ସେ ଅତି ପ୍ରବେଶ କରି ନାହାନ୍ତି । ଉଚ୍ଚଠାରୁ ନୀଚ ପର୍ଯ୍ୟନ୍ତ ମଙ୍ଗରାଜଙ୍କ ଉଆସରୁ ଶାରିଆର ଚନ୍ଦ୍ରବୁଣା ପିଣ୍ଡା ପର୍ଯ୍ୟନ୍ତ ସେ ସବୁ ସ୍ଥାନ ନିରେଖି ଦେଖିଅଛନ୍ତି ଓ ଦେଖାଇଅଛନ୍ତି ।" ( ୫ ) ଓଡ଼ିଆ-ଙ୍କର ଦୈନନ୍ଦିନ ଜୀବନକୁ ଓଡ଼ିଆ ଆଖିରେ ଦେଖି, ଓଡ଼ିଆରେ ଚଳନ୍ତି କଥା କହିବାରେ ଫକୀରମୋହନ ହେଉଛନ୍ତି ପ୍ରଥମ । ତାଙ୍କ ଆଗରେ ଅନୁକରଣ କରିବା ପାଇଁ ସେତେବେଳେ ଓଡ଼ିଆ ସାହିତ୍ୟରେ କିଛି ନଥିଲା । ରାଧାନାଥଙ୍କୁ ସେ ଖୁବ୍ ମାନୁଥିଲେ । ନିଜେ କବିତା ଲେଖି ରାଧାନାଥଙ୍କୁ ସଂଶୋଧନ କରିବାକୁ ଅନୁରୋଧ କରୁଥିଲେ । ସେଇ ସଂଶୋଧିତ କବିତା ଫକୀରମୋହନଙ୍କର 'ଗୋଟିଏ ସଂପଦ' ( ୬ ) ହୋଇଥିଲା । କିନ୍ତୁ ଅନୂଦିତ କଲାବେଳେ, ଗଦ୍ୟ ଲେଖିଲାବେଳେ ସେ କାହାରିକି ହାତ ନ ପଡ଼ାଇ ନିଜେ ନିଜେ ନିଜର ଶୈଳୀ କାଢ଼ିଛନ୍ତି ।

ଭାଷା ପାଇଁ ଫକୀରମୋହନଙ୍କ ନିକଟରେ ଦୁଇଟି ଆଦର୍ଶ ଥିଲା; ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଭାଷା ଓ ବଙ୍କିମଚନ୍ଦ୍ର, ଦୀନବନ୍ଧୁ, ରବୀନ୍ଦ୍ରନାଥଙ୍କ ଭାଷା । ୧୯୧୬ ମସିହାରେ ଉତ୍କଳ ସାହିତ୍ୟ ସମାଜର ସଭାପତି ରୂପେ ଭାଷଣ ଦେଲାବେଳେ ସେ ଭାଷା ସମ୍ବନ୍ଧରେ ନିଜର ବିଚାର ଏମିତି ଭାବରେ ଦେଇଛନ୍ତି; "ପଣ୍ଡିତ ମହାତ୍ମା ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ବଙ୍ଗ ଭାଷାରେ ମୂଳ ଉନ୍ନତିକାରକ, କିନ୍ତୁ ସେମାନଙ୍କର ଭାଷା ବିଦ୍ୟାଳୟ ଓ ପୁସ୍ତକାଳୟ ମଧ୍ୟରେ ଆବଦ୍ଧ-ଥିଲା । ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ, ଦୀନବନ୍ଧୁଙ୍କ ନାଟକ ଏବଂ ଜଗଦ୍ବିଖ୍ୟାତ ରବୀନ୍ଦ୍ରନାଥଙ୍କ ସଙ୍ଗୀତ ସକାଶେ ବଙ୍ଗ ଭାଷା ହଠାତ୍ ମାତି ଉଠି କରିଅଛି ।" ( ୭ ) ଫକୀରମୋହନ ନିଜର ଏଇ ବିଚାରକୁ ଓଡ଼ିଆ ସାହିତ୍ୟରେ ପ୍ରୟୋଗ କରିଛନ୍ତି । ତାଙ୍କର ଅଭିଜ୍ଞତା ତାଙ୍କୁ

ରାଧାନାଥ ଓ ମଧୁସୂଦନଙ୍କ ଠାରୁ ଅଲଗା କରିଦେଇଛି । ବଙ୍ଗ ସାହିତ୍ୟର ସହସା ଉନ୍ନତି ମୂଳରେ ଥିବା ବିଭିନ୍ନ କାରଣ ଦର୍ଶାଇ, ଓଡ଼ିଆ ସାହିତ୍ୟଙ୍କୁ ସେହି ଦିଗରେ ଆଗେଇ ନେବା ପାଇଁ ଫକୀର-ମୋହନ ସେହି ଭାଷଣରେ କହିଛନ୍ତି—"ଆଗେ ଶିକ୍ଷିତ ବଙ୍ଗବାସୀ-ମାନେ ଅବଜ୍ଞା ନୟନରେ ମାତୃଭାଷାକୁ ଦେଖୁଥିଲେ । ବର୍ତ୍ତମାନ ବଙ୍ଗ-ଦେଶୀୟ ଶିକ୍ଷିତା କୁଳଲକ୍ଷ୍ମୀ ଏବଂ କର୍ମକ୍ଳାନ୍ତ ଶିକ୍ଷିତ ବଙ୍ଗବାସୀମାନଙ୍କ ହସ୍ତରେ ସର୍ବଦା ମାତୃଭାଷାର ପୁସ୍ତକ ଦେଖିବାକୁ ମିଳେ ଏବଂ ବର୍ତ୍ତମାନ ବଙ୍ଗଦେଶୀୟ ରାଜା, ମହାରାଜା, ସମସ୍ତ ଶ୍ରେଣୀର ଲୋକେ ମାତୃଭାଷାର ଉନ୍ନତି କଳ୍ପେ ବିଶେଷ ଯତ୍ନଶୀଳ ହେବାରୁ ଭାଷା ଏତେ ଦୂର ଉନ୍ନତି ଲାଭ କରିଅଛି । ଏଥିକୁ ନିଃସନ୍ଦେହ ରୂପେ ବୋଲିପାରେ ଯେ, ଜାତି ସାଧାରଣ ମଧ୍ୟରେ ମାତୃଭାଷା ପ୍ରଚାର କରିବା ଆବଶ୍ୟକ ହେଲେ ଉପନ୍ୟାସ, ନାଟକ, ସଙ୍ଗୀତ ଏହି ତିନ ଶ୍ରେଣୀର ଗ୍ରନ୍ଥ ବହୁଳ ପ୍ରଚାର କରିବା ଆବଶ୍ୟକ ।

× × × "ସମସ୍ତ ସମୟରେ ଲୋକ ସାଧାରଣରେ ନାଟକ ବା ଉପନ୍ୟାସ ଅସୀମ ଶକ୍ତି ପ୍ରକାଶ କରିଥାଏ । ବଙ୍ଗ ଦେଶରେ ନୀଳ ଦର୍ପଣ (୮) ନାଟକ ଏବଂ କୁଳୀନ କୁଳସର୍ବସ୍ୱ (୯) ନାଟକ ଦେଶ ମଧ୍ୟରେ କି ଉପକାର ସାଧନ କରି ଯାଇଅଛି", ତାହା ଶିକ୍ଷିତ ଲୋକ ମାନେ ଅବଗତ ଅଛନ୍ତି ।

ଆପଣମାନେ ତାନପୁରା ଯନ୍ତ୍ର ଦେଖିଥିବେ । ଅନେକ ଗୁଡ଼ାଏ ପିତଳ ତାର ଝନ୍ ଝନ୍ କରୁଥାଏ । ଗୋଟିଏ ଲୌହ ତାର ଆସି ମଧ୍ୟରେ ଶବ୍ଦ କଲେ କେଡ଼େ ସୁମଧୁର ସ୍ୱର ବାହାରି ପଡ଼େ । ଭାରତ ବର୍ଷର ପ୍ରତ୍ୟେକ ଶିକ୍ଷିତ ଲୋକ ହୃଦୟରେ ଜନ୍ମଭୂମି ପ୍ରତି

ଭକ୍ତି ବିବର୍ଜିତ । ମାତ୍ର ସମସ୍ତେ ସ୍ୱତନ୍ତ୍ର ଥିଲେ । ଉପନ୍ୟାସକାର ଗୋଟିଏ ଶବ୍ଦ ଦେଖାଇ ଉଚ୍ଚାରଣ କଲେ "ବନ୍ଦେ ମାତାରମ୍" (୧୦) ଅଙ୍କଲ ଟମ୍‌ସ କେବିନ (୧୧) ଉପନ୍ୟାସ ପାଠକରି ଲକ୍ଷ ଲକ୍ଷ ଆମେରିକାବାସୀ ଦାସ ବ୍ୟବସାୟ ବିପକ୍ଷରେ ଜୀବନ ଦାନ ନିମନ୍ତେ ରଣ କ୍ଷେତ୍ରକୁ ଧାବିତ ହୋଇଥିଲେ । (୧୨) ୧୯୧୮ ମସିହାରେ ଫକୀରମୋହନ ଏ ସବୁ କହୁଥିଲେହେଁ ଛ'ମାଣ ଆଠଗୁଣ୍ଠ ରଚନା ପଛରେ ଥିବା ଇତିହାସ ଏହାଠାରୁ ଭିନ୍ନ ନୁହେଁ । ଫକୀର-ମୋହନ ଏହି ସବୁ ଗ୍ରନ୍ଥ ପଢ଼ି, ସମାଜ ମଧ୍ୟରେ ସେ ସବୁର ପ୍ରତିକ୍ରିୟା ଦେଖି, ଓଡ଼ିଆ ସାହିତ୍ୟରେ ଏହିପରି ଖଣ୍ଡିଏ ଗ୍ରନ୍ଥ ଦେଖିବା ପାଇଁ ଇଚ୍ଛା କରିଥିବେ । ଛ'ମାଣ ଆଠଗୁଣ୍ଠ ଲେଖିବା ପୂର୍ବରୁ ଫକୀରମୋହନଙ୍କ ମନ ସେଉଁସବୁ ଲେଖାଦ୍ୱାରା ଭାବାକ୍ରାନ୍ତ ହୋଇଥିଲ, ସେଥି ମଧ୍ୟରୁ ବଙ୍କିମଚନ୍ଦ୍ର ରଚିତ ବିଷବୃକ୍ଷ ଅନ୍ୟତମ ।

ବିଷବୃକ୍ଷ ପୂର୍ବରୁ ବଙ୍କିମଚନ୍ଦ୍ର ଦୁର୍ଗେଶ ନନ୍ଦିନୀ, କପାଳକୁଣ୍ଡଳା, ଓ ମୃଣାଳିନୀ ପ୍ରଭୃତି ଉପନ୍ୟାସ ଲେଖିଥିଲେ । ରବୀନ୍ଦ୍ରନାଥଙ୍କ ମତରେ ସେ ସବୁଥିଲ କାହାଣୀ, ଇଂରାଜୀରେ ଯାହାକୁ ରୋମାନ୍‌ସ କହନ୍ତି । ପ୍ରତିଦିନର ଜୀବନଯାତ୍ରା ଠାରୁ ଏହା ବିଚ୍ଛିନ୍ନ । ସେହି ଦୂରତ୍ୱହିଁ ଏହାର ମୁଖ୍ୟ ଉପକରଣ, ... ... ବିଷବୃକ୍ଷ କାହାଣୀ ନୁହେଁ ଆଖ୍ୟାନ, ସେଥିରେ ଯାହାଅଛି ତାହାର ପରିଚୟ ଆମେ ଆମ ଅଭିଜ୍ଞତାରେ ପାଇଥାଉ । (୧୩) ଏହି ଗ୍ରନ୍ଥ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଲୋକପ୍ରିୟ ହୋଇ ଉଠିଲା । ସମସାମୟିକ ସୁଖ୍ୟାତ 'କ୍ୟାଲକାଟା ରିଭ୍ୟୁ' ପତ୍ରିକାର ସମାଲୋଚକ ଏହି ସବୁ ଗ୍ରନ୍ଥର ଆଲୋଚନା କରି ଲେଖିଛନ୍ତି । "This novel was to be found in the baitakakhana of every Bengali

babu and throughout the whole of last year. It is quite of a different character from its predecessors. While the others were all historical, 'men and women as they are, and life as it is' is the motto of the present one'.

(୧୪) କେବଳ ସେତିକି ନୁହେଁ ବଙ୍ଗ ଦର୍ଶନ ପତ୍ରିକାର ପ୍ରଥମ ସଂଖ୍ୟାଠାରୁ ଏହାର ଧାରାବାହିକ ପ୍ରକାଶ ଆରମ୍ଭ ହେବା ସଙ୍ଗେ ସଙ୍ଗେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟବିଧ ଶିକ୍ଷାରେ ଶିକ୍ଷିତ ପଣ୍ଡିତ ସବୁ ବଙ୍ଗଳା ଭାଷା ପ୍ରତି ଦୀର୍ଘ ଦିନର ଅବହେଳା ବିସ୍ମୃତ ହୋଇ ଏହି ଅପୂର୍ବ ଚମତ୍କାରପ୍ରଦ କାହାଣୀର ଅନୁକରଣ କରିବାକୁ ଲାଗିଲେ।'

(୧୫) ସେଦିନ ସମସ୍ତ ବଙ୍ଗାଳି ଜାତି ଉପନ୍ୟାସ ମଧ୍ୟରେ ନିଜର ଦୈନନ୍ଦିନ ଜୀବନ ଦେଖି ପୁଲକ ବିହ୍ୱଳ ହୋଇଗଲା। ଛ'ମାଣ ଆଠଗୁଣର ଅନ୍ତରାଳରେ ଏହି ବାଣୀ ପ୍ରତିଧ୍ୱନିତ, ଦୁର୍ଗେଶନନ୍ଦିନୀ, କପାଳକୁଣ୍ଡଳା ଓ ମୃଣାଳିନୀ ପ୍ରଭୃତି ଉପନ୍ୟାସରେ ଫକୀରମୋହନଙ୍କ ପାଇଁ ଏ ସ୍ୱାଦ୍ୟ ସନ୍ଧାନ ନଥିଲା। ସେଥିପାଇଁ ସେ ସବୁ ଉପନ୍ୟାସ ଫକୀରମୋହନଙ୍କୁ ପ୍ରଭାବିତ କରିନାହିଁ।

ଛ'ମାଣ ଆଠଗୁଣ, 'ବିଷବୃକ୍ଷ ଉପନ୍ୟାସର ଅନୁକରଣ ନୁହେଁ। ଏହା ଏକ ସ୍ୱତନ୍ତ୍ର ରଚନା। ବଙ୍କିମଚନ୍ଦ୍ର ବଙ୍ଗ ସମାଜର ଦୁଇ ବିଶିଷ୍ଟ ସମସ୍ୟା ବହୁ ବିବାହ ଓ ବିଧବା ବିବାହକୁ କେନ୍ଦ୍ର କରି ବିଷବୃକ୍ଷ ଲେଖିଛନ୍ତି। ଓଡ଼ିଶାରେ ମଧ୍ୟ ଏ ସମସ୍ୟା ଥିଲା। କିନ୍ତୁ ଫକୀରମୋହନ ଓଡ଼ିଶାର ଜମିଜମା ସମସ୍ୟାକୁ ବହୁ ବିବାହ ବା ବିଧବା ବିବାହ ଅପେକ୍ଷା ବିଶେଷ ଗୁରୁତ୍ୱ ଦେଇଛନ୍ତି। ଜମିଦାର ଓ ମହାଜନମାନଙ୍କ ଚକ୍ରାନ୍ତରେ ସାଧାରଣ ଓଡ଼ିଆ ସମାଜ ଧ୍ୱଂସ ହୋଇ

ଯାଉଥିବା ସେ ନିଜ ଆଖିରେ ଦେଖିଛନ୍ତି । ସେହିମାନଙ୍କ ଦେହରେ ବଳଦେବା ପାଇଁ, ମୁହଁରେ ଭାଷା ଦେବାପାଇଁ, ଫକୀରମୋହନ ବଙ୍କିମଚନ୍ଦ୍ରଙ୍କ କୁଳନନ୍ଦିନୀକୁ ଛ'ମାଣ ଆଠଗୁଣ୍ଠରେ ପରିଣତ କଲେ । ଏହି ଛ'ମାଣ ଆଠଗୁଣ୍ଠ ହେଉଛି ଫକୀରମୋହନଙ୍କ ଉପନ୍ୟାସର ପ୍ରଧାନ ଚରିତ୍ର, ସେଇ ହେଉଛି ଉପନ୍ୟାସର କେନ୍ଦ୍ର-ବିନ୍ଦୁ । ରାମଚନ୍ଦ୍ର ମଙ୍ଗରାଜ, ଭଗିଆ, ଶାରିଆ, ଚମ୍ପା, ସାନ୍ତାଣୀ ଓ ଆଉ ସମସ୍ତେ ଏହି କେନ୍ଦ୍ରବିନ୍ଦୁର ଚାରି ପଟରେ ଘୂରି ନିଜ ନିଜର ଅଭିନୟ କରୁଛନ୍ତି ।

ଫକୀରମୋହନ ଛ'ମାଣ ଆଠଗୁଣ୍ଠର ପରିଚୟ ଦେବାକୁ ଯାଇ କହନ୍ତି, 'କଥିତ ଅଛି ପୃଥିବୀର ବିଖ୍ୟାତ ମଣି କୋହିନୂର ଯାହାଠାରେ ରହେ, ତାହାର ବଂଶ ନାଶ କରିଦିଏ । × × ତେତେ ବଡ଼ କଥା ଗୁଡ଼ିଦିଅ, ନିହାତି ସାନରୁ ସାନ ଆମ୍ଭମାନଙ୍କ ଛ'ମାଣ ଆଠଗୁଣ୍ଠ କଥା ଦେଖ, ଲେଖକମାନେ କହନ୍ତି, ଗୋବିନ୍ଦପୁର ଗାଁ ତଳ ତକ ଛ'ମାଣ ଆଠଗୁଣ୍ଠ ପରି କଳନ୍ଦ ଆଉ ନାହିଁ, ମାତ୍ର ଜମିଟା ଘରବୁଡ଼ା, ବାଘସିଂହ ବଂଶଟା ଲଣ୍ଡଭଣ୍ଡ ହୋଇଗଲା, ଶାରିଆ ତ ଧନ ପ୍ରାଣରେ ଗଲା, ମଙ୍ଗରାଜ ବଂଶ କଥା ତ ଦାଣ୍ଡରେ ପଡ଼ିଛି । (୧୬) କୁଳନନ୍ଦିନୀ ଏହିପରି ଗୋଟିଏ ଘରବୁଡ଼ା କୋହିନୂର, ପିତାର ମୃତ୍ୟୁ ଶଯ୍ୟାରୁ ଏହି ଚରିତ୍ରର ସୃଷ୍ଟି ହୁଏ, ସେ ନିର୍ଦ୍ଦୋଷ ସୁନ୍ଦରୀ ନହେଲେ ମଧ୍ୟ ତୁଳନା ଦେବାପାଇଁ କୌଣସି ସାମଗ୍ରୀ ନାହିଁ, ତାର ଦେହ ରକ୍ତ, ମାଂସରେ ଗଢ଼ାହେଲା ପରି ଜଣାପଡେ ନ । ଚନ୍ଦ୍ରକର କ ପୁଷ୍ପ ସୌରଭ ଦେହ ଧାରଣ କଲେ ଯେମିତି ହୁଅନ୍ତା, ସେ ସେହିପରି ସୁନ୍ଦର, (୧୭) ସତ ଯେପରି ଫକୀରମୋହନଙ୍କ ଗାଁ ତଳତକ କଳନ୍ଦ ଜମି । ସେ ଯେଉଁ ଡାଳ

ଧରିଛି ସେ ଡ଼ାଳ ଛୁଡ଼ଛି । ତାରାଚରଣଙ୍କୁ ବିବାହ ଦେବାର ତିନବର୍ଷ ପରେ ତାରାଚରଣର ମୃତ୍ୟୁହୁଏ । କୁନ୍ଦନନ୍ଦିନୀ ବିଧବା ହୋଇ ନଗେନ୍ଦ୍ର ଘରେ ଆଶ୍ରୟ ନେବା ସଙ୍ଗେ ସଙ୍ଗେ ସେଠି ମଧ୍ୟ କୁଲକ୍ଷଣ ଦେଖା ଦେଇଛି ।

ପୁଣି ସେହି କୋହିନୂର ଉପଯୁକ୍ତ ସ୍ଥାନରେ ନ୍ୟସ୍ତ ହେଲେ ଅମଙ୍ଗଳର କାରଣ ହୁଏନାହିଁ । "ସେହି ମଣି ଆମ୍ଭମାନଙ୍କ ପୂଜନୀୟ । ମହାମାନ୍ୟ । ପ୍ରତ୍ୟକ୍ଷ କମଳା ସ୍ୱରୂପା ଶ୍ୱେତଦ୍ୱୀପବାସିନୀ ଭାରତେଶ୍ୱରୀଙ୍କ ଶିରୋଭୂଷଣ ହେବା ଦିନଠାରୁ ଇଂଲଣ୍ଡର ମହିମା ଦିନକୁ ଦିନ ପୃଥିବୀ ବ୍ୟାପୁଅଛି ।" (୧୮) ବଙ୍କିମଚନ୍ଦ୍ର ସେହି ଶୁଭଫଳଦାୟୀ କୋହିନୂରର ପରିଚୟ ଦେବାକୁ ଯାଇ କହିଛନ୍ତି, "ସମସ୍ତେ ମାଟି ଖୋଳନ୍ତି, କିନ୍ତୁ କୋହିନୂର ଜଣଙ୍କ ଭାଗ୍ୟରେ ମିଳେ । ସୂର୍ଯ୍ୟମୁଖୀ ସେ କୋହିନୂର । (୧୯) ଫକୀରମୋହନଙ୍କ ଉପନ୍ୟାସରେ ଅମଙ୍ଗଳ କରୁଥିବା କୋହିନୂର ପୁଣି ଶୁଭଫଳଦାୟୀ କୋହିନୂର, ଉଭୟେ ଅଛନ୍ତି । ବୋଧହୁଏ ସାନ୍ତାଣୀ ସେହି ଶୁଭ-ଫଳଦାୟୀ କୋହିନୂର ।

ମନୁଷ୍ୟଚରିତ୍ର ବିଶ୍ଳେଷଣରେ ଫକୀରମୋହନଙ୍କ ଭାବଧାରା ବଙ୍କିମଚନ୍ଦ୍ର ସହ ସମ୍ପୂର୍ଣ୍ଣ ଭାବରେ ମିଳିଯାଇଛି । "ଯେଉଁ ବିଷବୃକ୍ଷର ବୀଜବପନଠାରୁ ଫଳୋତ୍ପତ୍ତି ଏବଂ ଫଳଭୋଗ ପର୍ଯ୍ୟନ୍ତ ବ୍ୟାଖ୍ୟାନ କରିବାକୁ ଆମ୍ଭେ ପ୍ରବୃତ୍ତ ହୋଇଅଛୁ । ତାହା ସମସ୍ତଙ୍କ ଗୃହ ପ୍ରାଙ୍ଗଣରେ ରୋପିତ । ରିପୁ ପ୍ରାବଲ୍ୟ ଏହାର ବୀଜ । ଘଟଣାଧୀନ ହୋଇ ତାହା ସବୁ କ୍ଷେତ୍ରରେ ଉପ୍ତହୁଏ । ଏପରି କେହି ଲୋକନାହିଁ, ଯାହାର ହୃଦୟ ରାଗ, ଦ୍ୱେଷ-କାମ-କ୍ରୋଧାଦିଦ୍ୱାରା ଅସ୍ପୃଶ୍ୟ । ଜ୍ଞାନୀ

ଲୋକମାନେ ବି ଘଟଣାଧୀନ ହୋଇ ସେହି ସକଳ ରିପୁ କର୍ତ୍ତୃକ ବିଚଳିତ ହୋଇଥାନ୍ତି । କିନ୍ତୁ ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ ପ୍ରଭେଦ ହେଉଛି ଯେ, ଯେ କେହି ନିଜର ଉଚ୍ଛଳିତ ମନୋବୃତ୍ତି ସବୁକୁ ସଂଯତ କରିଥାଏ ଓ କରିପାରେ—ସେହି ବ୍ୟକ୍ତି ହୁଏ ମହାତ୍ମା, କେହି ନିଜର ପ୍ରବୃତ୍ତିକୁ ସଂଯତ କରିପାରେ ନାହିଁ ତାହାର ପାଇଁ ବିଶୃଙ୍ଖଳ ଜୀବନ ଉପୁଜୁଏ ।" (୨୦) ସାନ୍ତାଣୀଙ୍କ ମୃତ୍ୟୁରେ ସନ୍ତପ୍ତ ମହାରାଜଙ୍କ ଚରିତକୁ ବିଶ୍ଳେଷଣ କରି ଫକୀରମୋହନ ମଧ୍ୟ କହନ୍ତି: "ବିଶ୍ୱବିଧାତା ସମାନ ଉପାଦାନରେ ଜଗତରେ ସମସ୍ତ ନରନାରୀଙ୍କୁ ସୃଷ୍ଟି କରି-ଅଛନ୍ତି । ରକ୍ତ, ମାଂସ, ଅସ୍ଥି, ମଳ ମୂତ୍ରରେ ଯେପରି ଶରୀର ଗଠିତ, ସେହିପରି ଦୟା, ମାୟା, ସ୍ନେହ, ମମତା, ହିଂସା, ଦ୍ୱେଷ, ନିଷ୍ଠୁରତା ପ୍ରଭୃତି ବୃତ୍ତିମାନଙ୍କରେ ମନ ଗଠିତ । ସେହି ସମସ୍ତ ବୃତ୍ତି ଉପଯୁକ୍ତ ରୂପେ ସମାନଭାବରେ କାର୍ଯ୍ୟକାରୀ ହେଲେ ମନୁଷ୍ୟ ମନୁଷ୍ୟ ହୋଇଥାଏ । ମାତ୍ର ଯେବେ ଗୋଟିଏ ଉପାଦାନ ବଳବତ୍ତର ହୋଇ ସୀମାଲଂଘନ ପୂର୍ବକ ଅନ୍ୟ ବୃତ୍ତିମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରେ ତେବେ ସେ ମନୁଷ୍ୟର ମନୁଷ୍ୟତ୍ୱ ଲୁପ୍ତ ହୋଇଯାଏ । ତେତେବେଳେ ହୁଏତ ସେ ଦେବତା, ନଚେତ୍ ରାକ୍ଷସ ରୂପେ ପରିଣତ ହୁଏ ।" (୨୧) 'ଅପୂର୍ବ ମିଳନ' ପରିଚ୍ଛେଦରେ ମନୁଷ୍ୟର କର୍ମଫଳ ବିବୃତ କରି ଫକୀରମୋହନ କହନ୍ତି : "ତୁମ୍ଭେ ଭଲ ଅବା ମନ୍ଦ ଯେପରି କର୍ମ କରିବ, ତାହାର ପ୍ରତିଫଳ ଅବଶ୍ୟ ତୁମ୍ଭଙ୍କୁ ଭୋଗ କରିବାକୁ ହେବ । + + ଭୂମିରେ ଗୋଟିଏ କ୍ଷୁଦ୍ର ବୀଜ ପୋତିବା ବେଳେ କେହି ଦେଖେ ନାହିଁ ସତ୍ୟ, ମାତ୍ର ସେଥିରୁ ଜାତ ବୃକ୍ଷ ମନୁଷ୍ୟ ନେତ୍ର ଅତିକ୍ରମ କରିବାର ଉପାୟ ନାହିଁ । ପୁଣି ତୁମ୍ଭେ ଯେଉଁ ବୃକ୍ଷ ରୋପଣ କଲ ତାହାର ଫଳ ତୁମ୍ଭଙ୍କୁ—କିଆଁ ତବ ବଂଶ ପରମ୍ପରାକୁ ଭୋଗ କରିବାକୁ ହେବ ।" (୨୨)

ବଟବୃକ୍ଷ ଓ ଛ'ମାଣ ଆଠଗୁଣ୍ଠର ସାଦୃଶ୍ୟ କେବଳ ଗୋଟିଏ ବା ଦୁଇଟି ସ୍ଥାନରେ ନୁହେଁ, ବହୁ ସ୍ଥାନରେ ଦେଖିବାକୁ ମିଳେ । ସେ ସବୁକୁ ଭାଷା ଓ ଭାବ ଉଭୟ ଦୃଷ୍ଟିରୁ ବିଚାର କରି ଦେଖିବାକୁ ହେବ ।

କ) ବଟବୃକ୍ଷର ପ୍ରଥମ ପରିଚ୍ଛେଦରେ ନଗେନ୍ଦ୍ରର ନୌକା-ଯାତ୍ରା ବର୍ଣ୍ଣିତ । ନୌକା ଆଗେଇଯିବା ସଙ୍ଗେ ସଙ୍ଗେ ଦୁଇ ପାଖରେ ଥିବା ଗାଁ ସବୁର ଭିନ୍ନଭିନ୍ନ ଦୃଶ୍ୟ ନଗେନ୍ଦ୍ରର ଦୃଷ୍ଟି ଆକୃଷ୍ଟ କରୁଛନ୍ତି । ସେଥିମଧ୍ୟରୁ ଗୋଟିଏ ଦୁଇଟିର ବର୍ଣ୍ଣନା ଏହିପରି । "ଘାଟେ ଘାଟେ କୃଷକର ସ୍ତ୍ରୀ (ମହିଳା), ସବୁ କଳସୀ, ଛିଣ୍ଡା କନ୍ଥା, ସଡ଼ା ହେଁସ (ପଟି ମାଦୁର), ରୁପା ତାବିଜ, ନାକଛବି, ପିତଳର ପଇଞ୍ଚି ପେଟେଁ ଦୁଇ ମାସର ମଇଳା ପିନ୍ଧା ଲୁଗା, ମସୀନିନ୍ଦିତ ଗାତ୍ରର ବର୍ଣ୍ଣ ଓ ରୁକ୍ଷ କେଶ ନେଇ ଠିଆ ହୋଇଛନ୍ତି । ସେଥିମଧ୍ୟରୁ କୌଣସି ସୁନ୍ଦରୀ ମୁଣ୍ଡରେ କାଦୁଅ ବୋଳି ମୁଣ୍ଡ ଘଷୁଛି, କେହି ପିଲାକୁ ପିଟୁଛି । କେହି ଅନୁଦ୍ଦିଷ୍ଟା, ଅବ୍ୟକ୍ତନାମ୍ନୀ ପ୍ରତିବାସିନୀ ସହ ଓ ତାଙ୍କ ଉଦ୍ଦେଶ୍ୟରେ କଳହ କରୁଛି, କେହି କାଠରେ ଲୁଗା କାଚୁଛି ।'

ଅକାଶରେ ଧଳା ମେଘ ରୌଦ୍ର ତପ୍ତହୋଇ ଉଡ଼ିଯାଉଛି । ତାହାର ତଳେ କୃଷ୍ଣ ବିନ୍ଦୁବତ୍ ପକ୍ଷୀ ଉଡୁଛି । ନାରିକେଳ ଗଛରେ ଚିଲ ବସି ରାଜମନ୍ତ୍ରୀଙ୍କ ପରି ଚାରିଆଡ଼କୁ ଚାହିଁଛି । କେତେବେଳେ କାହାର କ'ଣ ଚାଲିମାରିବ । ବଗ ଶ୍ରେଷ୍ଠଲୋକ କାଦୁଅ ଘାଣ୍ଟି ବୁଲୁଛି । ଡାହୁକ ରସିକ ଲୋକ ବୁଡ଼ ପକାଉଛି । ଆଉ ଆଉ ପକ୍ଷୀ ହାଲୁକା ଲୋକ, କେବଳ ଉଡ଼ିବୁଲୁଛନ୍ତି । (୨୩) ଫକୀରମୋହନଙ୍କ

ଅସ୍ମର ଧାର୍ଯ୍ୟୀ ବର୍ଣ୍ଣନାରେ ଏସବୁ ଦୃଶ ର ଅଭାବ ନାହିଁ । ଦେଖି-ବାର ଭଙ୍ଗୀ ପ୍ରାୟ ଏକାପରି । ଉଦାହରଣ ପାଇଁ 'ଛ'ମାଣ ଆଠଗୁଣ୍ଠ'ର କେତୋଟି ପଂକ୍ତି ଉଦ୍ଧୃତ ହୋଇଛି । "କେତେକ ସୁନ୍ଦରୀ ମୁଖର ଆହୁରି ସୌନ୍ଦର୍ଯ୍ୟ ବଢ଼ାଇବା ନିମନ୍ତେ ପଣତ କାନରେ ମୁହଁ ଘୋଡ଼ାଇଛନ୍ତି । ଲକ୍ଷ୍ମୀ ଘରେ ରଙ୍ଗିନ ବସଣିର ଉପର ନାକ ଦୁଇପୁଡ଼ା ରଙ୍ଗା କରି ପକାଇଲାଣି । ଝମଲୀ ପାଣି ପାଖରେ ବସି ଆପଣା ହାତରେ ବାଇଶୀଠାକୁଆ ପିତଳ ବାହୁବଳା ଅଧ ବୋଝେ ବାଲି ପକାଇ ସବଳେ ମର୍ଦ୍ଦନ କରୁ କରୁ କୌଣସି ଅଜ୍ଞାତ-ନାମା ଲୋକ ଉଦ୍ଦେଶ୍ୟରେ ଅଭିଧାନ ବହିର୍ଭୂତ ଶବ୍ଦମାନ ପ୍ରୟୋଗ ପୂର୍ବକ ଏକ ଦୀର୍ଘ ବକ୍ତୃତା ଆରମ୍ଭ କରିଅଛି । × × × କେତେ ଜଣ ଶୋଇବା ହେଁସ କାଢ଼ି ନେଇଗଲେ । ସାନ ସାନ ପିଲାଙ୍କର ଶେଯ କନ୍ଥା ଆହୁରି ନାନା ପ୍ରକାର ଜନାନ୍ତରସ୍ଥ ବସ୍ତୁ ହେବ ର ଦେଖାଗଲା । × × ଘରର ପାଂଶୁଗଣ୍ଡା ଧଳା ବଗ ଘରର ପାଞ୍ଚୋଟି କଣ୍ଠି ବଗ ମାଚଲୋକ-ମୂଲିଆଙ୍କ ପରି ସକାଳୁ ସନ୍ଧ୍ୟା ବେଳଯାଏଁ କ ଦୁଅ ଚକଟୁଅଛନ୍ତି । ଯୋଡ଼ାଏ ପ ଶୀକାଉ କେଉଁ ଦେଶରୁ ଉଡ଼ି-ଅସି ଫାଦୀ ମଧରେ ଦୁଇଘରି ଜବମାରି ପେଟ ପୂରାଇ ଫର ଫର ଉଡ଼ିଗଲେ । × × × ଶଲ ଝୁବ୍ ସିଆଣା, ଖର ହୁସିଆର; ଗୁରୁଗୋସେଇଁଙ୍କ ପରି ଡ଼ାଳରେ ଜ୍ଞାନହୋଇ ବସିଅଛି; ଥରେ ଝାମ୍ପି ପଡ଼ି ଯାହା ଉଠାଇ ନିଏ, ସେଥିରେ ତାହାର ଦିନଟି କଟିଯାଏ । (୨୬)

ଖ) ରୂପ ବର୍ଣ୍ଣନା ପ୍ରସଙ୍ଗରେ ଉଭୟ ଲେଖକ ପ୍ରାଚୀନ ପରମ୍ପରା ତ୍ୟାଗ କରିଛନ୍ତି । କୁଳନନ୍ଦିନୀର ବିବାହ ପ୍ରସଙ୍ଗରେ ବଙ୍କିମ ଚନ୍ଦ୍ର ତାରାଚରଣର ରୂପ ବର୍ଣ୍ଣନା କରିବାକୁ ଯାଇ କହନ୍ତି, "ଆଜି ଶରିକାଲର ପ୍ରଥାଅଛି ଯେ ନାୟିକାର ସଙ୍ଗେ ଯାହାର ପରିଣୟ ହୁଏ,

ସେ ପରମ ସୁନ୍ଦରୀ ହେବ, ସର୍ବଗୁଣ ଭୂଷିତ ଓ ବଡ଼ ଘରପୁରୁଷ ହେବ ।" (୨୫) କିନ୍ତୁ ଗରିବ ତାରାଚରଣରେ ଏସବୁ କିଛିନାହିଁ । ଫକୀରମୋହନଙ୍କ ଚମ୍ପା ରୂପ ବର୍ଣ୍ଣନାରେ ଠିକ୍ ସେହିପରି ମନ୍ତବ୍ୟ । ଆଜି ଗ୍ରନ୍ଥରୁ ନାୟିକାମାନଙ୍କର ରୂପ ଗୁଣ ବର୍ଣ୍ଣନା କରିବାକୁ ଲେଖକମାନେ ସ୍ୱତ୍ୱ୍ୟ ଆଇନାନୁସାରେ ବାଧ । × × ସେ 'ତନ୍ୱୀ ଶ୍ୟାମା ଶିଖରିଦଶନା' ହେବା ଉଚିତ । (୨୬)

ଗ ବିଷବୃକ୍ଷ ଉପନ୍ୟାସର ହରଦାସୀ ବୈଷ୍ଣବୀ ଓ ଫକୀର-ମୋହନଙ୍କ ଠାକୁର ମାଉସୀ ଚରିତ୍ରରେ ବହୁ ସାମ୍ୟ ଅଛି । ଉଭୟ ଲେଖକ ନିଜ ନିଜର ଚରିତ୍ରକୁ ବିଭିନ୍ନ ଅଳଙ୍କାରରେ ସଜେଇଛନ୍ତି । ବଙ୍କିମଚନ୍ଦ୍ରଙ୍କ ବୈଷ୍ଣବୀର ନ କରେ ରସକଳି, ହାତରେ ପିତଳର ବଳା ଓ ତାହା ଉପରେ ଜଳତରଙ୍ଗ ଚୂଡ଼ି । ମୁଣ୍ଡରେ ଟେରା, ପରିଧେୟ ହେଉଛି କଳାଧଡ଼ି ଥିବା ସିମଲାର ଧୋତି ଓ ହାତରେ ଖଞ୍ଜେ ଖଞ୍ଜଣି । (୨୭) ବୋହୂ ମାଉସୀ ମୁଣ୍ଡରେ ମା ମଙ୍ଗଳା ପର ସିନ୍ଦୂର, ଆଖିରେ କଜ୍ଜଳ + + ବାହୁରେ ବନ୍ଦ, ହାତରେ ପଇଞ୍ଚି, ତାହା ଉପରେ କଟା, ତାହା ଉପରେ ଚୂଡ଼ି । + + ମୁଣ୍ଡରେ ଦଶବାରଟାକର ପାଟ ଥୋପରେ ବିଶାଳ ଜୁଡ଼ା । + + କୁମ୍ଭକର୍ଣ୍ଣୀ ଧଡ଼ି ଷୋଳହାତ ବରମପୁରୀ ପାଟଶାଢ଼ୀ ପିନ୍ଧା ।" (୨୮) ଏହା ବ୍ୟତୀତ ନାକ, କାନ, ବେକ, ଅଙ୍ଗୁଳି, ଗୋଡ଼, ଗୋଡ଼ଅଙ୍ଗୁଳି ସବୁ-ଥିରେ ଅଳଙ୍କାର ଖଞ୍ଜା ।

ବୈଷ୍ଣବୀର ଉଦ୍ଦେଶ୍ୟ ହେଉଛି, କୁନ୍ଦନନ୍ଦିନୀ ସହ ସାକ୍ଷାତ ଓ ଦୁଇପଦ କଥାଭାଷା । ସେଥିପାଇଁ ପାଣିପିଇବା ଛଳନା କରି ସେ ଅଲଗା ହୋଇଯାଇଛି । (୨୯) ବୋହୂ ମାଉସୀର ଉଦ୍ଦେଶ୍ୟ ହେଉଛି

ବାଘସିଂହ ବଂଶକୁ ଧ୍ୱଂସ କରିବା । ନିଜର ଉଦ୍ଦେଶ୍ୟ ସାଧନ ପାଇଁ ସେ ମଧ୍ୟ ପରୀକ୍ଷା କରିବା ବାହାନା କରି ବାରପଛଟେଙ୍କୁ ଏକୁଟିଆ ଯାଇଛି । (୩୦)

ବୈଷ୍ଣବୀ ଗୃହଯିବା ପରେ ନରେନ୍ଦ୍ରର ଦାସୀ ମଣ୍ଡଳରେ ତାଙ୍କର ବର୍ଣ୍ଣ, ଗୁଣ, ସ୍ୱଭାବନେଇ ତୁମୁଳ ଆଲୋଚନା ହୁଏ । ପ୍ରଥମେ ତାଙ୍କର ସୁଖ୍ୟାତି, ପରେ ଗୋଟିଏ ଗୋଟିଏ ଦୋଷ ବାହାରି, ଶେଷକୁ ନାହିଁ ନଥିବା କୁତ୍ସିତରେ ପର୍ଯ୍ୟବସିତ ହୁଏ । (୩୧) ବୋଷ୍ଟମାଉସୀର ଯିବାପରେ ବାଘସିଂହଙ୍କ ଘରେ ଠିକ୍ ଏହି ପ୍ରକାର ଆଲୋଚନା । “ସମସ୍ତେ ପ୍ରଶଂସା କଲେ । କେହି ରୂପର, କେହି ଗୁଣର, କେହି ଅଳଙ୍କାରର, କେହି ପାଟେଲି କଦଳୀର । ମାତ୍ର ମାଣିକ କହିଲା, ହେଲା ହିଁ—ବଡ଼ ଲୋକଘର, ରୂପଟା ଏକା ସେ ରୂପ ନୁହେଁ, ଆମୁଦାନ୍ତ ଦୁଇଟା ବାହାରା, ଗାଲ ଦୁଇଟା ଉଆଉ ପଡ଼ାପରି । ହଗୁରା ମା, ମୁକୁଟା ମା, ଶଙ୍କୁରୀ ଓ ଖୁଦୀ ଏହିପରି ଗୋଟିଏ ଗୋଟିଏ ଦୋଷ ଦେଖାଉ ଦେଖାଉ ‘ମୁହୂର୍ତ୍ତ ମଧ୍ୟରେ “ଏକୋହି ଗୁଣ ଦୋଷ ସନ୍ନିପାତ’ ହୋଇଗଲା ।” (୩୨)

ଘ) ଫକୀରମୋହନ ପ୍ରଚଳିତ ସଂସ୍କୃତ ଶ୍ଳୋକ ସବୁକୁ ବିକୃତ କରି ସମାଜ ପ୍ରତି ନିଜର ମନୋଭାବ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଶ୍ଳୋକ ସବୁକୁ ସମସାମୟିକ ସମାଜର ପ୍ରସଙ୍ଗରେ ଗଢ଼ ଅର୍ଥ କରିଛନ୍ତି । ବଟବୃକ୍ଷରେ ମଦ୍ୟପାନାସକ୍ତ ଦେବେନ୍ଦ୍ର ସ୍ୱାମୀର ସ୍ତବପାଠ କରି ଉଠିଛି :

“ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।”(୩୩)

"ଯା ଦେବୀ ବଟବୃକ୍ଷେଷୁ ଗ୍ରୀଷ୍ମା ରୂପେଣ ସଂସ୍ଥିତା,
ନମସ୍ତ ସ୍ୟୈ...
ଯା ଦେବୀ ଦଣ୍ଡଗୃହେଷୁ ଶ୍ରାଦ୍ଧ ରୂପେଣ ସଂସ୍ଥିତା,
ନମସ୍ତ ସ୍ୟୈ...
ଯା ଦେବୀ ଠାକୁର ଘାଟେଷୁ ରୂପଢ଼ ହସ୍ତେନ ସଂସ୍ଥିତା,
ନମସ୍ତ ସ୍ୟୈ ...
ଯା ଦେବୀ ଘରଦ୍ୱାରେଷୁ କାଣ୍ଡାହସ୍ତେନ ସଂସ୍ଥିତା,
ନମସ୍ତ ସ୍ୟୈ...
ଯା ଦେବୀ ମମଗୃହେଷୁ ପତ୍ନୀ ରୂପେଣ ସଂସ୍ଥିତା,
ନମସ୍ତ ସ୍ୟୈ..."

ଏହି ଶ୍ଳୋକ ୧୮୭୨ ଖ୍ରୀଷ୍ଟାବ୍ଦରେ ରଚିତ ହୁଏ । ୧୮୮୭ ସାଲ ଅକ୍ଟୋବର ୨୧ ତାରିଖରେ ଜଣେ ଲେଖକ ଦୁର୍ଗାପୂଜାରେ ଚଣ୍ଡୀ-ପାଠ କରିଛନ୍ତି । (୩୮) ସେଥିରେ ମଧ୍ୟ ସାମାଜିକ ଅବସ୍ଥା ଶ୍ଳୋକ ମଧ୍ୟରେ ପ୍ରବେଶ କରି ଲେଖକଙ୍କ ଉଦ୍ଦେଶ୍ୟ ସାଧନ କରିଛି । ଏହି ଯୁଗ ପ୍ରଭାବର ପ୍ରତିଧ୍ୱନି ଫକୀରମୋହନଙ୍କ ବୁଢ଼ୀ ମଙ୍ଗଳା ବର୍ଣ୍ଣନା ଓ କଣ୍ଟ ପରମାଣରେ ଚମ୍ପାର ରୂପ ବର୍ଣ୍ଣନାରେ ଦେଖିବାକୁ ମିଳେ ।

ଙ) ବଟବୃକ୍ଷରୁ ଆଉ ଗୋଟିଏ ଦୃଶ୍ୟ ତୁଳନା ପାଇଁ ନିଆ-ଯାଇଛି । 'ମଧୁପୁର ଗ୍ରାମ ରାସ୍ତାରେ ନରେନ୍ଦ୍ର ପାଲଙ୍କ ଯିବା-ବେଳେ ଗ୍ରାମର ଝିଅ, ବୋହୂ, କଳସୀ କାଖରେ ଧରି, କଏ ଅବାକ୍ ହୋଇ ପାଲଙ୍କି ଦେଖିଲେ । କଏ ଓଢ଼ଣା ଟେକି ଆଖି ଟେକ ଦେଖିବାକୁ ଲାଗିଲେ । ଚାଷୀ ସବୁ କାର୍ତ୍ତିକ ମାସରେ ଧାନ କାଟୁଥିଲେ ।

ଧାନ ପକେଇ ଦେଇ ହାଁ କରି ପାଲଙ୍କି ଦେଖିବାକୁ ଲାଗିଲେ । ଗାଁର ଛୁଆ ସବୁ ପାଲଙ୍କିକୁ ବେଢ଼ିଯାଇ ଧାରେ ଧାରେ ଚାଲିଲେ । ପେଣ୍ଟ୍ କୋଟ୍ ପିନ୍ଧା ନଗେନ୍ଦ୍ର ପାଲଙ୍କିରୁ ବାହାର ହେବା ସଙ୍ଗେ ସଙ୍ଗେ ପାଞ୍ଚସାତ ଜଣ ସଲାମ କଲେ । କିଏ ଭାବିଲା ଦାରୋଗା, କିଏ ଭାବିଲା ବରକନ୍ଦାଜ ।" (୩୫) 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସରେ ରତନପୁର ମୌଜା ଗୋହିରୀରେ ଗଡ଼ଗଡ଼ ଡାକ ଶୁଣି, ଗାଁ ଏମୁଣ୍ଡ ସେ ମୁଣ୍ଡ ଚହଳ ପଡ଼ିଗଲା, ସୁଆରି ଆସିଲା, ସୁଆରି ଆସିଲା । ବୁଢ଼ୀ, ଦରବୁଢ଼ୀ, ମାଇକିନିଆମାନେ ଧଡ଼କିରି କବାଟ ମେଲାଇ ଦେଇ ଗୋହିରୀକୁ ବାହାରି ପଡ଼ିଲେ । ବୋହୂମାନେ କବାଟ ଦରଆଉଜା କରି ଫାଙ୍କ ବାଟେ ମୁହଁଗଳାଇ ନାକବସଣି ବାଡ଼ି ଦେଲେ । ଗାଁ ମାଇକିନିଆଙ୍କ ମଧ୍ୟରେ ଡୋଲ୍ୟାରୋହୀ ସମ୍ବନ୍ଧରେ ନାନା ତର୍କ ଉପସ୍ଥିତ ହେଲା । ପ୍ରଥମେ ଲିଙ୍ଗ ବିଚାର, ପରେ ବୟଃକ୍ରମ ନିର୍ଣ୍ଣୟ । କେହି କହିଲା ନୂଆବୋହୂ, କେହି କହିଲା ଜମାଦାର, କେହି କହିଲା ସାହେବ ।" (୩୬)

ସେ ସମୟରେ ଲୋକେ ପ୍ୟାଣ୍ଟ୍ କୋଟ୍ ପିନ୍ଧା ବାବୁଙ୍କୁ ଦୂରରୁ ଜୁହାର କରୁଥିଲେ, ଦାରୋଗା ବା ଏହିପରି କିଛି ଭାବି, ପଚାରିବା କଥାର ଉତ୍ତର ସିଧା ସିଧା ଦେଇ ନଥିଲେ । ଫକୀରମୋହନ ଓ ବଙ୍କିମଚନ୍ଦ୍ର ଉଭୟଙ୍କ ଲେଖାରେ ଏ ପ୍ରକାର ବର୍ଣ୍ଣନା ମିଳିଥାଏ । "ପାଲଙ୍କିରୁ ଓହ୍ଲାଇ ଦେଖୁଥିବା ଲୋକମାନଙ୍କ ମଧ୍ୟରୁ ଜଣେ ବୟସ୍କ ଲୋକଙ୍କୁ ଦେଖି, ନଗେନ୍ଦ୍ର ଶିବପ୍ରସାଦ ବ୍ରହ୍ମଚାରୀର ସମ୍ବାଦ ପଚାରିଲେ । ବୁଢ଼ା ଭାବିଲା ନିଶ୍ଚୟ କୋଉଠାଏ ଖୁଣି ମକଦ୍ଦମାର ବିଚାର ହେବ । ସତକଥା କହିବା ଠିକ୍ ନୁହେଁ । ସେ କହିଲା ଆଜ୍ଞା ମୁଁ ପିଲାଲୋକ ଏତେ କଥା ଜାଣେନା । (୩୭) 'ଛ'ମାଣ ଆଠ-

ଗୁଣ୍ଠ'ରେ 'ଫୋଲ୍ସବଡାଇକ୍ସି' (୩୮) ପରିଚ୍ଛେଦରେ ସମାଜର ମନୋଭାବ ଅଙ୍କିତ ହୋଇଛି । ଏସବୁ ତୁଳନା ବ୍ୟତୀତ ଆଉ କେତୋଟି ଛୋଟ ଧରଣର ଘଟଣାରେ ସମତା ରହିଛି । ଉଭୟ ଉପନ୍ୟାସର କର୍ମଭୂମିର କେନ୍ଦ୍ରସ୍ଥଳ ହେଉଛି ଗୋବିନ୍ଦପୁର, ଏହା ନାଁ ଦୁଇ ଉପନ୍ୟାସରେ ଅଛି । ଭଗିଆ ପାଗଳ ହୋଇ ମଙ୍ଗରାଜଙ୍କ ନାକ-କାମୁଡ଼ି ତା ର ପ୍ରତିଶୋଧ ନିଏ । ଉନ୍ମାଦିନୀ ହୀରା ପ୍ରତିଶୋଧ ନେବା ପାଇଁ ରୋଗଗ୍ରସ୍ତ ଦେବେନ୍ଦ୍ର ପାଖକୁ ଆସିଛି । ମଙ୍ଗରାଜ ମଲାବେଳେ ଛ : ମା : ଆ : ଗୁ, ଛ . ମା : ଆ : ଗୁ, କହି ମରିଛନ୍ତି, ଦେବେନ୍ଦ୍ର ମଧ୍ୟ ମଲାବେଳେ 'ପଦପଲ୍ଲବମୁଦାରଂ', ପଦପଲ୍ଲବମୁଦାରଂ (୩୯) କହି ଶେଷ ନିଃଶ୍ୱାସ ତ୍ୟାଗ କରିଛି । ଫକୀରମୋହନ ଆଜି ଆଉ ନାହାନ୍ତି । ତାଙ୍କ ଜୀବିତାବସ୍ଥାରେ ଏ ତୁଳନା ଦେଖିଥିଲେ ସେ ବିଷବୃକ୍ଷ ପଢ଼ିଥିଲେ କି ନପଢ଼ିଥିଲେ କହିଥାନ୍ତେ । ଥରେ ଜଣେ ସମାଲୋଚକ ବଙ୍କିମଚନ୍ଦ୍ରଙ୍କ ରଚିତ ଦୁର୍ଗେଶନନ୍ଦିନୀ ସହ ଆଇଭ୍ୟାନ୍‌ହୋ ଉପନ୍ୟାସର ତୁଳନା କରି ଆଲୋଚନା କରି-ଥିଲେ । ବଙ୍କିମଚନ୍ଦ୍ର ଏ ତୁଳନା ଦେଖି, ତାଙ୍କର ବନ୍ଧୁମାନଙ୍କ ଆଗରେ କହିଲେ ଯେ ସେ ଦୁର୍ଗେଶନନ୍ଦିନୀ ରଚନା କରିବା ପୂର୍ବରୁ ଆଇଭ୍ୟାନ୍‌ହୋ ପଢ଼ିନଥିଲେ । ପରେ ବଙ୍ଗ ଦେଶର ସାହିତ୍ୟିକ-ମାନେ 'hones y unimpeachable' ବୋଲି ବିଶ୍ୱାସ କରି-ଥିଲେ । ଏ ସବୁ ସାଦୃଶ୍ୟ ସତ୍ତ୍ୱେ ଫକୀରମୋହନଙ୍କ 'ଛ ମାଣ ଆଠ-ଗୁଣ୍ଠ' ଓଡ଼ିଆ ସାହିତ୍ୟର ଗୋଟିଏ ଅପୂର୍ବ କୀର୍ତ୍ତି । କିନ୍ତୁ ସେ ଯେ କାହାର ଦ୍ୱାରା ପ୍ରଭାବିତ ହୋଇ ନାହାନ୍ତି (୪୦) ବା ଏହା ଗୋଟିଏ ଖାଣ୍ଟି ଓଡ଼ିଆ ଉପନ୍ୟାସ (୪୧) ଏପରି କହି ହୁଏନା । ଫକୀର-ମୋହନଙ୍କ ଉପରେ ପ୍ରଭାବ ପଡ଼ିଥିଲେହେଁ, ସେ ଆଜି ମଧ୍ୟ ଓଡ଼ିଆ ଜାତିର ନମସ୍ୟ, ଯେଉଁଠି ସାହିତ୍ୟ ମଧ୍ୟରେ କୌଣସି ଆଦର୍ଶ ନାହିଁ,

ଯେଉଁଠି ଲେଖକ ଅବହେଳାରେ ଲେଖେ ଏବଂ ପାଠକ ଅନୁଗ୍ରହ କରି ପଢ଼େ, ଯେଉଁଠି ଅଳ୍ପ ଭଲ ଲେଖିଲେ ବି ପ୍ରଶଂସା ମିଳେ ଏବଂ ମନ୍ଦ ଲେଖିଲେ କେହି ନିନ୍ଦା କରେ ନାହିଁ, ସେଉଁଠି ଲେଖକ ନିଜର ଅନ୍ତରସ୍ଥିତ ଉନ୍ନତ ଆଦର୍ଶକୁ ସର୍ବଦା ସମ୍ମୁଖରେ ବର୍ତ୍ତମାନ ରଖି, ସାମାନ୍ୟ ପରିଶ୍ରମରେ ସୁଲଭ ଖ୍ୟାତି ଲାଭର ଲୋଭ ସମ୍ବରଣ କରି, ଅଶ୍ରାନ୍ତ ଯତ୍ନ, ଅପ୍ରତିହତ ଉଦ୍ୟମ ବଳରେ ଦୁର୍ଗମ ପରିପୂର୍ଣ୍ଣ ପଥରେ ଅଗ୍ରସର ହୁଏ, ତାହା ଅତି ଅସାଧାରଣ ମାହାତ୍ମ୍ୟର କର୍ମ । (୪୨)

ଫକୀରମୋହନ ସବ୍ୟସାଚୀ ଭାବରେ ଓଡ଼ିଆ ଜାତି ପାଇଁ ସେଇଆ କରିଯାଇଛନ୍ତି । ଗଳ୍ପ, ଉପନ୍ୟାସ, ଅନୁବାଦ, କବିତା, କାବ୍ୟ ଓ ସମାଲୋଚନା ସବୁଥିରେ ହାତ ଦେଇ ସେ ନିଜର ସାହିତ୍ୟିକ ଜୀବନକୁ ସାର୍ଥକ କରିଛନ୍ତି । ତାଙ୍କର ଉପନ୍ୟାସ ସବୁ ଗୋଟିଏ ବାଟର ଗୁଚ୍ଛ । (୪୩)

## ସଙ୍କେତ ସୂଚୀ—

୧ । ସୁରେନ୍ଦ୍ର ମହାନ୍ତି —ଫକୀରମୋହନ—ପୃ: ୧୫

୨ । ସୁରେନ୍ଦ୍ର ମହାନ୍ତି—ଫକୀରମୋହନ – ପୃ: ୧୮

୩ । ୧୯୦୦ ସାଲ, ତୃତୀୟଭାଗ, 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ପ୍ରବନ୍ଧ ଓ ସୁରେନ୍ଦ୍ର ମହାନ୍ତି ଫକୀରମୋହନ—ପୃ: ୧୧୫

୪ । ନଦୀଙ୍କ ଟିପାଖାତା—୧୮ଶ ଭାଗ, ୧ମ ସଂଖ୍ୟା । ବୈଶାଖ ୧୩୨୧, ଉତ୍କଳ ସାହିତ୍ୟ—ଫକୀରମୋହନଙ୍କ ବାହାଦୁରୀ

୫ । ଦୁଇଖଣ୍ଡି ଓଡ଼ିଆ ପୁସ୍ତକ —ଗୋପାଳଚନ୍ଦ୍ର ପ୍ରହରାଜ । ୭ମ ଭାଗ, ୭ମ ସଂଖ୍ୟା, ଆଶ୍ୱିନ—୧୩୧୦, ଉତ୍କଳ ସାହିତ୍ୟ

୬ । ଫକୀରମୋହନଙ୍କ ଉକ୍ତି—୩୨ଶ ଭାଗ ୧୧ଶ ସଂଖ୍ୟା, ଉତ୍କଳ ସାହିତ୍ୟ ଫାଲଗୁନ ୧୩୩୬

୭ । ୭ । ୯ । ୧୨ ତାରିଖରେ ଉତ୍କଳ ସାହିତ୍ୟ ସମାଜର ଦଶମ ବାର୍ଷିକ ଅଧିବେଶନରେ ପଠିତ । ୧୩୨୨ ଆଶ୍ୱିନ, ୮ମ ଭାଗ, ୬ଷ୍ଠ ସଂଖ୍ୟା ଉତ୍କଳ ସାହିତ୍ୟରେ ପ୍ରକାଶିତ

୮ । ଘନବନ୍ଧୁ ମିଶ୍ର ରଚିତ

୯ । ରାଜନାରାୟଣ ଗୁପ୍ତ ରଚିତ

୧୦ । ବଙ୍କିମଚନ୍ଦ୍ର ପ୍ରଣୀତ 'ଆନନ୍ଦ ମଠ' ଉପନ୍ୟାସ

୧୧ । ମିମିକ୍ ଷ୍ଟୋ

୧୨ । ୧୯୧୦ରେ ପ୍ରଦତ୍ତ ଫକୀରମୋହନଙ୍କ ଭାଷଣରୁ ଉଦ୍ଧୃତ

୧୩ । ପ୍ରବାସୀ, ଆଶ୍ୱିନ, ୧୩୦୮, ପୃ: ୮୦୬-୭

୧୪ । The Calcutta Review, No. CXIV, Critical Notices P. P. V—VI, ଏବଂ ସାହିତ୍ୟ ସାଧକ ଚରିତମାଳା, ଦ୍ୱିତୀୟ ଖଣ୍ଡ, ପୃ: ୭୨—ବଙ୍କିମଚନ୍ଦ୍ର ଅଧ୍ୟାୟ

୧୫ । ଶ୍ରୀ ବ୍ରଜେନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ଓ ଶ୍ରୀ ସଜନୀକାନ୍ତ କୃତ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ, ପୃ: ୭୨

୧୬ । ଛ'ମାଣ ଆଠଗୁଣ୍ଠ—ପୃ: ୧୬୪, ସପ୍ତମ ସଂସ୍କରଣ, ୧୯୫୨

୧୭ । ବଙ୍କିମଚନ୍ଦ୍ର ଗ୍ରନ୍ଥାବଳୀ, ବଙ୍ଗଦୂଷ—ପୃ: ୭

୧୮ । ଛ: ମା: ଗୁ—ପୃ: ୧୬୬

୧୯ । ବ. ଦୂ:—ପୃ: ୫୧

୨୦ । ଛ: ବୃ:—ପୃ: ୪୮

୨୧ । ଛ: ମା: ଗୁ:—ପୃ: ୧୦୮

୨୨ । ଛ: ମା: ଗୁ:—ପୃ: ୧୭୯

୨୩ । ଛ: ବୃ:—ପୃ: ୧-୨

୨୪ । ଛ: ମା: ଗୁ:—ପୃ: ୭୨-୭୪ ଓ ୭୫

୨୫ । ଛ: ବୃ:—ପୃ: ୧୨

୨୬ । ଛ: ମା: ଗୁ:—ପୃ: ୧୮ ଓ ୨୧

୨୭ । ଛ: ବୃ:—ପୃ: ୧୩ ଓ ୧୪

୨୮ । ଛ: ମା: ଆ: ଗୁ:—ପୃ: ୯୨

୨୯ । ଛ: ବୃ:—ପୃ: ୧୫

୩୦ । ଛ: ମା: ଆ: ଗୁ:—ପୃ: ୯୫

୩୧ । ଛ: ବୃ:—ପୃ: ୧୫

୩୨ । ଛ: ମା: ଆ: ଗୁ:—ପୃ: ୯୬-୯୭

୩୩ । ଛ: ବୃ:—ପୃ: ୭୦

୩୪ । ନଟବର ସାମନ୍ତରାୟ—ବ୍ୟାସକବି ଫକୀରମୋହନ—ପୃ: ୫୩

୩୫ । ଛ: ବୃ:—ପୃ: ୬୦

୩୬ । ଛ: ମା: ଆ: ଗୁ:—ପୃ: ୮୮

୩୭ । ଛ: ବୃ:—ପୃ: ୨୦

୩୮ । ଛ: ମା: ଆ: ଗୁ:—ପୃ: ୧୧୦

୩୯ । ବ: ବୃ: —ପୃ: ୭୯

୪୦ । ସୁରେନ୍ଦ୍ର ମହାନ୍ତି ଫକୀରମୋହନ—ପୃ: ୧୮

୪୧ । ନଟବର ସାମନ୍ତରାୟ—ବ୍ୟାସକବି ଫକୀରମୋହନ—ପୃ: ୮୫

୪୨ । ରବୀନ୍ଦ୍ରନାଥ—'ଆଧୁନିକ ସାହିତ୍ୟ'

୪୩ । ୧୯୧୪ ମସିହାରେ ଫକୀରମୋହନଙ୍କ ପ୍ରଦତ୍ତ ଭାଷଣ ।



## "ବ୍ୟାସକବି ଫକୀରମୋହନଙ୍କ
## ବୌଦ୍ଧିକଚିନ୍ତାଧାରା-ଏକ ଅଧ୍ୟୟନ"

**ଅଧ୍ୟାପକ—ଶ୍ରୀ ଭାସ୍କରଚନ୍ଦ୍ର ଖଟୋଇ**

ଯୁଗସ୍ରଷ୍ଟା ବ୍ୟାସକବି ଫକୀରମୋହନ ଗାଳ୍ପିକ ଓ ଔପନ୍ୟାସିକ ରୂପେ ଯେ କେବଳ ସର୍ବଜନାଦୃତ ତାହା ନୁହେଁ, ତାଙ୍କ ରଚିତ ପଦ୍ୟ ଓ କବିତା ମଧ୍ୟ ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ରତ୍ନସମ୍ପଦ । ଓଡ଼ିଆର ଐତିହାସିକ ଭିତ୍ତିଭୂମି ଉପରେ, ପରିସ୍ଥିତି ମଧ୍ୟରେ ଇତିହାସ ସଙ୍ଗେ ସାମାଜିକତାକୁ ତାଳ ଦେଇ ଲୋମହର୍ଷଣକାରୀ ଗଳ୍ପ ଓ ଉପନ୍ୟାସ ରଚନା କରିବା ଆମ ସାହିତ୍ୟରେ ଏବେବି ଅନନ୍ୟସାଧାରଣ । 'ଛ'ମାଣ ଆଠଗୁଣ୍ଠ', 'ମାମୁଁ', 'ଲଛମା', 'ପ୍ରାୟଶ୍ଚିତ୍ତ', 'ପୁନର୍ମୂଷିକୋଭବ' ଇତ୍ୟାଦି ତାଙ୍କର ସାହିତ୍ୟକୃତି ଆଦି ସର୍ବଜନବନ୍ଦିତ । ଅନ୍ୟ ପକ୍ଷରେ ତାଙ୍କ କାବ୍ୟକୃତି ପିଲାଦିନରୁ ତାଙ୍କ ରଚିତ କ୍ଷୁଦ୍ର, କ୍ଷୁଦ୍ର କବିତା ମାଧ୍ୟମରେ ପରିସ୍ଫୁଟ ହୋଇ ଉଠିଥିଲା । ସେ ସବୁ 'ପୁଷ୍ପମାଳା' ଆକାରରେ ଦକ୍ଷିଣରେ ପାଠ୍ୟପୁସ୍ତକ ହେବାପାଇଁ ସେ କାଳର ଡାକ୍ତର ଭଟଲ୍ଲା ଗୁନ୍ନେୟା ଶାସ୍ତ୍ରୀଙ୍କୁ ବିକ୍ରୀ ହୋଇ ଯାଇଥିଲା । ଏସବୁ ପରେ ତାଙ୍କର ଭାବୋଦ୍ଦୀପକ କାବ୍ୟ ହେଉଛି 'ଉପହାର' ଓ 'ଉତ୍କଳଭ୍ରମଣ' । ପ୍ରଥମ ସଂସ୍କରଣରେ 'ଉତ୍କଳ ଭ୍ରମଣ'ର ଆୟତନ ଓ ପରିସର କ୍ଷୁଦ୍ର ଥିଲେ ମଧ୍ୟ ଏହା ଅତ୍ୟନ୍ତ ହୃଦୟଗ୍ରାହୀ ଓ

ସରସତାରେ ପୂର୍ଣ୍ଣଥିଲା । ଉଦାହରଣସ୍ୱରୂପ, ଜଣେ ମଠମହନ୍ତଙ୍କୁ ଲକ୍ଷ୍ୟ କରି ଫକୀରମୋହନ ଲେଖିଥିଲେ—

"ତହିଁ ମଧ୍ୟେ ଥିଲେ ଜଣେ ହୟଗ୍ରୀବ ଦାସ
ମହାପାଜି, ଶୟତାନ ବଡ଼ ବଦମାସ ।"

ନବ୍ୟ ଶିକ୍ଷିତ ବାବୁମାନଙ୍କୁ ସେ ଲକ୍ଷ୍ୟକରି ଲେଖିଥିଲେ—

"ବାବୁମାନେ ହେଲେ ସବୁ, ଇଂରେଜ ପଢ଼ୁଆ
ଓଡ଼ିଆ କହିଲେ ତାଙ୍କୁ ଲଗିବ ଅଡୁଆ ।"

ତତ୍ପରେ ସେ ରଚନା କରିଥିଲେ "ବୌଦ୍ଧାବତାର କାବ୍ୟ ।" ୧୯୦୭ ଖ୍ରୀଷ୍ଟାବ୍ଦ ବେଳକୁ ଏହାର ଶେଷ ଓ ପରିଶୁଦ୍ଧ ସଂସ୍କରଣ ପ୍ରକାଶିତ ହୋଇଥିଲା । ଏହି କାବ୍ୟ ରଚନା କରିବାର ପରିସ୍ଥିତି ଓ ସମୟ ଥିଲା ସାମାନ୍ୟ ଭିନ୍ନ । ଏହାର କିଛି ବର୍ଷ ପୂର୍ବରୁ ସେ 'ମହର୍ଷି ଗୌତମଚରିତ' ନାମକ ଗୋଟିଏ ପଦ୍ୟମୟ କାବ୍ୟ ପ୍ରଣୟନ କରିଥିଲେ । ଦୈବ ଦୁର୍ଘଟଣା ବଶତଃ ବାଲେଶ୍ୱରରୁ ସ୍ୱଗୃହ ପରିତ୍ୟାଗ ପୂର୍ବକ କଟକ ଆସିବା ସମୟରେ ସେ କାବ୍ୟଟି ଗୃହ ମଧ୍ୟରେ ଛାଡ଼ି ଆସିଥିଲେ । କିଛିବର୍ଷ ପରେ ଘରକୁ ଫେରି ଗ୍ରନ୍ଥଟିକୁ କୀଟଦଂଷ୍ଟ୍ର ଅବସ୍ଥାରେ ଦେଖି ସେ ଅତ୍ୟନ୍ତ ମର୍ମାହତ ହୋଇ ଉକ୍ତ 'ବୌଦ୍ଧାବତାର' କାବ୍ୟଟିକୁ ରଚନା କରିବା ପାଇଁ ମନସ୍ଥ କରିଥିଲେ ।

ଫାଲଗୁନ ଶୁକ୍ଳ ତ୍ରୟୋଦଶୀରେ ଗ୍ରନ୍ଥାରମ୍ଭ ହୋଇ ବୈଶାଖ କୃଷ୍ଣ ଏକାଦଶୀରେ ଗ୍ରନ୍ଥ ସମାପ୍ତ ହୋଇଥିଲା । କାବ୍ୟଟିର ମୁଖବନ୍ଧରେ କବି ଲେଖିଛନ୍ତି "ଏହି କାବ୍ୟ ପ୍ରଣୟନ ସମୟରେ ମୁଁ

ଯେଉଁ ଆଧ୍ୟାତ୍ମିକ ବିମଳାନନ୍ଦ ଉପଭୋଗ କରିଛି, ଅନ୍ୟ କୌଣସି ପୁସ୍ତକ ରଚନା ବା ଅଧ୍ୟୟନ ଅଥବା ଅନ୍ୟ କୌଣସି ବିଷୟରୁ ଇଦୃଶ ବିଶୁଦ୍ଧାନନ୍ଦ ଉପଭୋଗ ମୋ ଅଦୃଷ୍ଟରେ ଘଟିଥିବାର ସ୍ମରଣ ହେଉନାହିଁ ।" ବୌଦ୍ଧାବତାର କାବ୍ୟ ମାଧ୍ୟମରେ କବିଙ୍କର ଦାର୍ଶନିକ, ଐତିହାସିକ, ପୌରାଣିକ ମନସ୍ତତ୍ତ୍ୱ, ସାମାଜିକ କୁସଂସ୍କାର ଓ ଜାତିପ୍ରୀତିଭାବବାଦ ଦୃଷ୍ଟିକୋଣ ସୁସ୍ପଷ୍ଟ ହୋଇଛି । କବିଙ୍କର ଏହି କାବ୍ୟକୃତିରେ 'ଉତ୍ତେଜନା' ଅଛି କିନ୍ତୁ କଳା ନାହିଁ, 'ସରଳଭାଷା' ଅଛି କିନ୍ତୁ କବିତାର ମନୋମୁଗ୍‌ଧକର ଭାଷାବିନ୍ୟାସ ନାହିଁ । 'ଜୀବନ ଅଛି' କିନ୍ତୁ ସେ ଜୀବନରେ ସୃଷ୍ଟିକଳାର ସୌନ୍ଦର୍ଯ୍ୟ ଲେଶମାତ୍ର ପରିଲକ୍ଷିତ ହୁଏ ନାହିଁ । ସେଥିନିମିତ୍ତ ଏହି କାବ୍ୟ ମାଧ୍ୟମରେ ସୃଷ୍ଟିମାନସ ଅପେକ୍ଷା କବିଙ୍କର ବ୍ୟକ୍ତିମାନସ, ଜୀବନଦର୍ଶନ, ଭଗବଦ୍‌ପ୍ରୀତି, ଉଦାରମାନବିକତା ଓ ଦେଶପ୍ରାଣତା ପ୍ରାଧାନ୍ୟ ଲାଭ କରିଅଛି ।

ବୁଦ୍ଧଦେବଙ୍କର ଜୀବନକାଳ ମଧ୍ୟରେ ସଂଘଟିତ ବୈଚିତ୍ର୍ୟମୟ ଓ ମନୋମୁଗ୍‌ଧକର ଘଟଣାବଳୀକୁ ଆଧାର କରି କବିଙ୍କର ଉକ୍ତ କାବ୍ୟଟି ଯେ ସର୍ବଜନାଦୃତ ଓ ପ୍ରଶଂସିତ ହୋଇପାରିଛି ଏହା ନିଃସନ୍ଦେହରେ କୁହାଯାଇପାରେ ।

ସେ ସମୟରେ ଉତ୍କଳଭୂଖଣ୍ଡ ମହାମୁନି ଗୌତମ ପ୍ରବର୍ତ୍ତିତ ମହାଧର୍ମର ପ୍ରଧାନ ଲୀଳାକ୍ଷେତ୍ର ଥିଲା । ଶୈଳ ବକ୍ଷରେ ଖୋଦିତ ବିହାର କ୍ଷେତ୍ରମାନ କେବଳ ଭାରତରେ ନୁହେଁ, ପୃଥିବୀରେ ମଧ୍ୟ ପ୍ରସିଦ୍ଧି ଲାଭ କରିଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ତତ୍କାଳୀନ ଉତ୍କଳୀୟମାନଙ୍କୁ ଉକ୍ତ ଧର୍ମ ସମ୍ବନ୍ଧରେ ସୂଚାଇ ଦେବା ପାଇଁ ଖଣ୍ଡିଏ ଗ୍ରନ୍ଥର ଅଭାବ ପରିଲକ୍ଷିତ ହେଉଥିଲା । ଉକ୍ତ ଅଭାବକୁ କିୟଦଂଶରେ

ଦୂର କରିବା ପାଇଁ ଫକୀରମୋହନ 'ବୌଦ୍ଧାବତାର' କାବ୍ୟ ରଚନା କରିବାକୁ ସ୍ଥିର କରିଥିଲେ । ସେ ସମୟରେ ଇଂରେଜୀ ଓ ବଙ୍ଗଳା ମାସିକ ପତ୍ରମାନଙ୍କ ଲେଖା ଓ କେତେକ ପୁସ୍ତକର ଅବଲମ୍ବନରେ ଏହା ରଚିତ । ବିଲାତର ଇଂରେଜ କବି Edwin, Arnold, "Light of Asia". ବୋଲି ଗୋଟିଏ ବୁଦ୍ଧଜୀବନୀ କାବ୍ୟ ଲେଖିଥିଲେ । ସେଇ ଗ୍ରନ୍ଥକୁ ବଙ୍ଗକବି ନବୀନଚନ୍ଦ୍ର ସେନ୍ 'ଅମିତାଭ' ବୋଲି ଏକ କାବ୍ୟରେ ମର୍ମାନୁବାଦ କରିଛନ୍ତି । ଫକୀରମୋହନଙ୍କ "ବୌଦ୍ଧାବତାର" କାବ୍ୟ 'ଅମିତାଭ' ଗ୍ରନ୍ଥର ବିସ୍ତାରିତ ଅନୁବାଦ କହିଲେ ଅତିରଂଜିତ ହେବ ନାହିଁ ।

'ବୌଦ୍ଧାବତାର' କାବ୍ୟକୁ କବି ଊନବିଂଶ ଗୋଟି ସର୍ଗରେ ବିଭକ୍ତ କରିଛନ୍ତି ଏବଂ ପ୍ରତି ସର୍ଗରେ ବୁଦ୍ଧଦେବଙ୍କର ଉଲ୍ଲେଖଯୋଗ୍ୟ କାର୍ଯ୍ୟକଳାପ ବର୍ଣ୍ଣନା ସହ ସମ୍ପୂର୍ଣ୍ଣ କାବ୍ୟଟିରେ ବୁଦ୍ଧଙ୍କର ଜୀବନଚରିତକୁ ଅତି ମର୍ମସ୍ପର୍ଶୀ ଭାବରେ ରୂପାୟିତ କରିଛନ୍ତି । କାବ୍ୟର ମୋଟ ୧୯ଟି ସର୍ଗ ମଧ୍ୟରେ ପ୍ରଥମ ୧୩ଟି ସର୍ଗରେ ସିଦ୍ଧାର୍ଥଙ୍କ ପ୍ରଥମ ଜୀବନ ଅର୍ଥାତ୍ ବାଲ୍ୟାବସ୍ଥାରୁ ସାଧନା ପର୍ଯ୍ୟନ୍ତ ବର୍ଣ୍ଣନା କରି ଚତୁର୍ଦ୍ଦଶ, ପଞ୍ଚଦ୍ଦଶ ଓ ଷୋଡ଼ଶ ସର୍ଗରେ ଧର୍ମ ପ୍ରଚାର ଉପରେ ପ୍ରାଧାନ୍ୟ ଦେଇ ସପ୍ତଦଶ ସର୍ଗରେ କବି ବୁଦ୍ଧଙ୍କୁ ନିଜ ନଗରକୁ ଫେରାଇ ଆଣିଛନ୍ତି । ଅଷ୍ଟାଦଶ ସର୍ଗରେ କବି ବୁଦ୍ଧଙ୍କର ଧର୍ମ ପ୍ରଚାରକୁ ରୂପାୟିତ କରି ଊନବିଂଶ ତଥା ଶେଷ ସର୍ଗରେ ବୁଦ୍ଧଦେବଙ୍କର ମହାପ୍ରୟାଣକୁ ରୂପଦେଇ କାବ୍ୟଟିକୁ ଶେଷ କରିଅଛନ୍ତି । ପ୍ରଥମ ସର୍ଗରେ କବି ଭଗବାନ ବୁଦ୍ଧଙ୍କର ଆବିର୍ଭାବକୁ ଅତ୍ୟନ୍ତ ସାଙ୍କେତିକ ଭାଷାରେ ରୂପାୟିତ କରିଛନ୍ତି । ସମାଜ ପାପଗ୍ରସ୍ତ, ଧର୍ମବିବର୍ଜିତ ହେଲେ, ସ୍ୱୟଂ ଭଗବାନ ଧର୍ମରକ୍ଷା ଓ ପାପୀମାନଙ୍କ

ଦଳନ ନିମନ୍ତେ ମନୁଷ୍ୟ ଶରୀର ଧରି ଜନ୍ମ ନିଅନ୍ତି ତେଣୁ କବିଙ୍କ ଭାଷାରେ—

"ପାପେ କଳୁଷିତ ଧର୍ମ ବିବର୍ଜିତ
ହେଲେ ସକଳ ମାନବ
ପ୍ରଭୁ ବିଶ୍ୱପତି ଜଗତେ ହୁଅନ୍ତି
ଯୁଗେ ଯୁଗେ ସମୁଦ୍ଭବ ।
ଧାର୍ମିକ ରକ୍ଷଣେ ଦୁରନ୍ତ ଦଳନେ
ଗୋଲକ ବିହାରୀ ହରି,
ଅବତାର ରୂପେ ଜନମନ୍ତି ଆପେ
ମାନବ ଶରୀର ଧରି ।

ସେଥିପାଇଁ ଗୀତାରେ କୁହାଯାଇଛି—

"ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ !
ଅଭ୍ୟୁତ୍‌ଥା ନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଅର୍ଥାତ୍, ଯେତେବେଳେ ସମାଜରେ ଦୁଃଖ, ଯନ୍ତ୍ରଣା, ଗ୍ଳାନି ଓ ପାପୀମାନଙ୍କ ପ୍ରଭାବ ଦୁର୍ବିସହ ହୋଇପଡ଼େ, ସେତେବେଳେ ଦୁଷ୍ଟ ସଂହାର କରି ଧର୍ମରକ୍ଷା କରିବାପାଇଁ ସ୍ୱୟଂ ଭଗବାନ ଅବତାର ଗ୍ରହଣ କରନ୍ତି । ଠିକ୍ ସେହିପରି ବୁଦ୍ଧଦେବ ଭଗବାନଙ୍କର ଏକ ଅବତାର ବିଶେଷ । ବୁଦ୍ଧଦେବଙ୍କର ଜନ୍ମ ବିଷୟରେ ଉଲ୍ଲେଖ କରିବାକୁ ଯାଇ କବି ଲେଖିଛନ୍ତି, ହିମାଳୟ ପାଦଦେଶ କପିଳବାସ୍ତୁ

ନାମକ ରାଜ୍ୟରେ ଶୁଦ୍ଧୋଦନ ରାଜତ୍ୱ କରୁଥିଲେ । ତାଙ୍କର ମହାମାୟା ଓ ପ୍ରଜାବତୀ ଦୁଇ ରାଣୀଥିଲେ । ନାନା ଐଶ୍ୱର୍ଯ୍ୟ ମଧ୍ୟରେ କାଳଯାପନ କଲେ ହେଁ ସନ୍ତାନର ଅଭାବ ସେମାନଙ୍କର ସମସ୍ତ ସୁଖ ସମ୍ଭୋଗ ପଥରେ ପ୍ରତିବନ୍ଧକ ହେଉଥିଲା । ବସନ୍ତାଗମନରେ କପିଳବାସ୍ତୁର ସମସ୍ତ ପ୍ରଜା ନାନାବିଧ ଉତ୍ସବ ଓ ଆନନ୍ଦୋଲ୍ଲାସରେ ମଜ୍ଜି ରହିବା ବେଳେ ଉତ୍ସବର ଶେଷଦିନ ସପ୍ତମ ଦିନ ) ପୂର୍ଣ୍ଣିମା ତିଥିରେ ରାଣୀ ମହାମାୟା ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ତତ୍‌କ୍ଷଣାତ୍ ରାଜା ଅଷ୍ଟଶ ବ୍ରାହ୍ମଣମାନଙ୍କୁ ଡ଼କାଇ ସ୍ୱପ୍ନର ଫଳ ବୁଝିବାକୁ ଯାଇ ଜାଣିଲେ ଯେ, ଭାଗ୍ୟବଳରେ ରାଣୀ ଏକ ଦିବ୍ୟ ସନ୍ତାନ ଲାଭ କରିବେ । ସେହି ପୁତ୍ର ସମାଜରେ ରହି ଏକାଙ୍ଗଚକ୍ରବର୍ତ୍ତୀ ହେବେ ବା ସମାଜବିଚ୍ୟୁତ ହୋଇ ଜଗତବାସୀଙ୍କ ଉଦ୍ଧାର ନିମିତ୍ତ ସନ୍ନ୍ୟାସ-ବ୍ରତ ଗ୍ରହଣ କରିବେ ।

ତେଣୁ କବିଙ୍କ ଭାଷାରେ—

"ବୋଇଲେ ସମସ୍ତେ ଯେବେ ଗୃହାଶ୍ରମେ
ରହିବେ ରାଜନନ୍ଦନ,
ହେବେ ଚକ୍ରବର୍ତ୍ତୀ ଲଭିବେ ସମ୍ପତ୍ତି
ଏକଛତ୍ର ଏ ଭୁବନ ।
ହେଲେ ସେ ସନ୍ନ୍ୟାସୀ ଜଗତ ନିବାସୀ
ମାନବ ଉଦ୍ଧାର ପାଇଁ
କରିବେ ବିଧାନ ତେଜି ଧନମାନ
ଏଥିରେ ସଂଶୟ ନାହିଁ ।"

ପୌଷ ମାସର ପୂର୍ଣ୍ଣିମା ତିଥିରେ ଏକ ମନୋରମ ପରିବେଶ ମଧ୍ୟରେ ମହାମାୟାଙ୍କର ଗର୍ଭରୁ ଏକ ପରମ ସୁନ୍ଦର ପୁତ୍ର ଜାତ ହେଲା । ତେଣୁ କବିଙ୍କ ଭାଷାରେ —

"ଶୋଭିଲେ କୁମର ପରମ ସୁନ୍ଦର
ମହାଦେବୀଙ୍କର କୋଳେ
ଫୁଟିଲା ସୁମନ ନନ୍ଦନକାନନ
ଅବା ପାରିଜାତ ଗଛେ ।"

କିନ୍ତୁ ଦୈବଯୋଗରୁ ସନ୍ତାନ ଜନ୍ମର ସପ୍ତମ ଦିବସରେ ମାତା ମହାମାୟା ଇହଧାମ ତ୍ୟାଗ କଲେ । କବି ଲେଖିଛନ୍ତି—

"ମାତା ମହାମାୟା ତେଜିଛନ୍ତି କାୟା
କ୍ଷଣଭଙ୍ଗୁର ଶରୀର
ରହିଛି ବା କେହି ଯାହା ଗଲେ ଦେଇ
ଯୁଗେ ଯୁଗେ ଥିବ ଚିର ।"

ଦ୍ୱିତୀୟ ସର୍ଗରେ କବି ମହର୍ଷି ଅସିତଙ୍କର ଆଗମନକୁ ଅତି ସୁନ୍ଦର ଭାବେ ରୂପାୟିତ କରିଛନ୍ତି । ମହର୍ଷି ଅସିତ ଧ୍ୟାନ ବଳରେ ଜାଣିଲେ ଯେ ପରଂବ୍ରହ୍ମ ଭଗବାନ କଳୁଷ-କାଳିମାପୂର୍ଣ୍ଣ ସଂସାରର ଉଦ୍ଧାର ନିମିତ୍ତ କପିଳବାସ୍ତୁ ନଗରରେ ମାନବ ଶରୀର ଧାରଣ କରି ଜନ୍ମ ନେଇଛନ୍ତି । ତତ୍‌କ୍ଷଣାତ୍ ଧ୍ୟାନ ଭଗ୍ନ କରି ସ୍ୱାମୀ ଭଣଜାଇ ନରଦତ୍ତ ସହ ସେ ଶୁଦ୍ଧୋଦନଙ୍କ ପ୍ରାସାଦରେ ପ୍ରବେଶ କଲେ । ପ୍ରାସାଦ ପ୍ରବେଶ ପୂର୍ବରୁ ମହର୍ଷି ରାଜାଙ୍କୁ ନବଜାତ ସନ୍ତାନକୁ ଦେଖାଇବା ନିମିତ୍ତ ଇଚ୍ଛା କଲେ । ଶିଶୁଟିକୁ ଦେଖିବା କ୍ଷଣି ମହର୍ଷିଙ୍କ

ନନ୍ଦନ ନୟନରୁ ପ୍ରେମାଶ୍ରୁ ବହିବାକୁ ଲାଗିଲା । ଏତାଦୃଶ ବ୍ୟବହାରରେ ରାଜା ଶୁଦ୍ଧୋଦନ ଉଦ୍‌ଘାତ ହୋଇ ମୁନିଠାରେ କିଛି ଅମଙ୍ଗଳ ଦେଖିଲେକି ବୋଲି ପ୍ରଶ୍ନ କଲେ । ଉତ୍ତରରେ ମହର୍ଷି କହିଥିଲେ, ଜଗତ ରକ୍ଷା କରିବା ନିମିତ୍ତ ଯେ ଅବତୀର୍ଣ୍ଣ, ଅମଙ୍ଗଳ ତାହାଠାରେ କେବେହେଲେ ସମ୍ଭବ ନୁହେଁ । ତେଣୁ କବିଙ୍କ ଭାଷାରେ—

"ଯାହେବେ ମଙ୍ଗଳ ହେତୁଁ ନିଖିଳ ମାନବ
ଅମଙ୍ଗଳ ତାହାଠାରେ କେବେଁକି ସମ୍ଭବ ।"

× × ×

"ପାପ ତାପ ଜରାବ୍ୟାଧି ପୂର୍ଣ୍ଣ ଏ ଜଗତ
କରିବେ ସକଳ ଦୂର ସତ୍ୟ ସତ୍ୟ ସତ୍ୟ ।"

କିନ୍ତୁ ତାଙ୍କର କାର୍ଯ୍ୟକଳାପ ଦେଖିବା ନିମିତ୍ତ ମହର୍ଷି ଆଉ ଇହଧାମରେ ନ ଥିବେ ବୋଲି ଅନୁତାପ କରିବାକୁ ଲାଗିଲେ । କବିଙ୍କ ଭାଷାରେ—

"ଆହା ବୁଦ୍ଧ ଆରାଧନା ନାହିଁ ମୋ ଭାଗ୍ୟରେ
ପୂଜିବେ ଯାହାଙ୍କୁ ଜଗତରେ ନାରୀ ନରେ ।"

"ତତ୍ପରେ ମହର୍ଷି ଅସିତ ପୁତ୍ରର ଭବିଷ୍ୟତ ସମ୍ପର୍କରେ ରାଜାଙ୍କୁ ବୁଝାଇବାକୁ ଲାଗିଲେ । ବିମାତା ଗୌତମୀଙ୍କ ଦ୍ୱାରା ଲାଳିତପାଳିତ ହେଉଥିବାରୁ ସେ ଗୌତମ ଓ ଶାକ୍ୟବଂଶରେ ଜାତ ହୋଇଥିବାରୁ

'ଶାକ୍ୟମୁନି' ନାମରେ ଅଭିହିତ ହେବେ । ଜ୍ଞାନ ଲାଭ ପରେ ସେ 'ତଥାଗତ' ନାମରେ ମଧ୍ୟ ଖ୍ୟାତ ହେବେ । ଏସବୁ ବର୍ଣ୍ଣନା କରି ମହର୍ଷି ଅସିତ ରାଜାଙ୍କଠାରୁ ମେଲାଣି ନେଲେ ।

ପୁତ୍ରର ଜନ୍ମକୋଷ୍ଠୀ ବିଚାର ନିମିତ୍ତ ଆଠଜଣ ଜ୍ୟୋତିର୍ବିଦ ରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ସାତଜଣଙ୍କ ମତରେ ସମାଜରେ ରହିଲେ ପୁତ୍ର ରାଜଚକ୍ରବର୍ତ୍ତୀ ହେବେ ଅଥବା ସନ୍ୟାସ ଧର୍ମ ଗ୍ରହଣ କଲେ ସେ ଏକ ମହାନ୍ ସନ୍ୟାସୀ ଭାବେ ଖ୍ୟାତି ଅର୍ଜନ କରିବେ । କବିଙ୍କ ଭାଷାରେ —

"ଥିଲେ ଗୃହାଶ୍ରମେ ପୁତ୍ର ରାଜଚକ୍ରବର୍ତ୍ତୀ
ଅଥବା ସନ୍ୟାସାଶ୍ରମେ ହେବେ ମହାଯତି ।"

ଅଷ୍ଟମ ଜ୍ୟୋତିର୍ବିଦଙ୍କ ମତରେ ଯେଉଁଦିନ ପୁତ୍ରକୁମାର୍, ମୃତ, ବୃଦ୍ଧ ଓ ସନ୍ୟାସୀ ଏ ଚାରି ପ୍ରକାର ବ୍ୟକ୍ତିଙ୍କୁ ଦେଖିବେ ସେ-ଦିନ ନିଶ୍ଚୟ ସେ ସଂସାର ତ୍ୟାଗ କରିବେ । ଏସବୁ ଶୁଣି ରାଜା ଶୁଦ୍ଧୋଦନ ଅତ୍ୟନ୍ତ ମର୍ମାହତ ହେବା ସଙ୍ଗେ ସଙ୍ଗେ ପୁତ୍ରକୁ ଏପରି ବ୍ୟକ୍ତିଙ୍କୁ ନ ଦେଖାଇବା ନିମିତ୍ତ କଡ଼ା ନିର୍ଦ୍ଦେଶ ଦେଲେ । କିନ୍ତୁ ବିଶ୍ୱନିୟନ୍ତାଙ୍କ ଇଚ୍ଛାକୁ ବିରୋଧ କରିବା ପାଇଁ କେହି କେବେହେଁ ସମର୍ଥ ହୁଏ ନାହିଁ । ତେଣୁ କବିଙ୍କ ଭାଷାରେ—

"ନିର୍ବୋଧ ହେ ଶୁଦ୍ଧୋଦନ ! ନ ଜାଣ ପ୍ରସଙ୍ଗ
ବାଲିବନ୍ଧ ସମ୍ଭାଳେ କି ସାଗର ତରଙ୍ଗ ।
ଜଗତ ନିୟନ୍ତାଙ୍କ ହରି ଆଦେଶ ମେଣ୍ଟାଣ
କରିବାକୁ ଜଗତରେ କେ ଜନ ଭାଜନ ।"

ତୃତୀୟ ସର୍ଗରେ କବି ହଂସୋପାଖ୍ୟାନକୁ ବର୍ଣ୍ଣନା କରିଅଛନ୍ତି । ବିମାତା ଗୌତମୀଙ୍କ ଦ୍ୱାରା ଲାଳିତପାଳିତ ହୋଇ ଶୈଶବାବସ୍ଥା ଅତିକ୍ରାନ୍ତ ହେବାପରେ ଶୁଭବେଳାରେ ରାଜା ନାନାବିଧ ମହୋତ୍ସବ ମଧ୍ୟରେ ପୁତ୍ରର ବିଦ୍ୟାରମ୍ଭ କଲେ । ଅତି ସ୍ୱଳ୍ପ ସମୟ ମଧ୍ୟରେ ଗୌତମ ସମସ୍ତ ବିଦ୍ୟାରେ ପାରଦର୍ଶିତା ଲାଭ କଲେ । ମଣିକାର ସଂସ୍ପର୍ଶରେ ଆସିଲେ, ହୀରା ଯେପରି ଅଧିକ ଜ୍ୟୋତିଷ୍ମାନ ହୋଇଉଠେ, ଠିକ୍ ସେହିପରି ଗୁରୁଙ୍କ ସଂସ୍ପର୍ଶରେ ଆସି, ତାଙ୍କ ମଧ୍ୟରେ ଲୁକ୍କାୟିତ ଜ୍ଞାନରାଜି ବିକଶିତ ହୋଇ ଉଠିଲା । ତେଣୁ କବି ଲେଖିଛନ୍ତି —

"ପ୍ରକୃତରେ ଜ୍ୟୋତିଃଶାଳୀ ଯେମନ୍ତ ହୀରକ
ମଣିକାର ହସ୍ତଲାଗି କରେ ଝକ୍‌ଝକ୍
ସବଶାସ୍ତ୍ର ଥିଲା ଯେହ୍ନେ ହୃଦୟେ ପ୍ରଚ୍ଛନ୍ନ
ବ୍ୟକ୍ତ ହୁଏ ଶୁଣି ଗୁରୁଙ୍କ ବଚନ ।"

ଏକଦା ଉଦ୍ୟାନର ଏକ ନିର୍ଜନ ସ୍ଥାନରେ ଗୌତମ ଚିନ୍ତାମଗ୍ନ ଥିବାବସ୍ଥାରେ ଏକ ଶରାହତ ରାଜହଂସ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ହଂସଟିକୁ ତତ୍କ୍ଷଣାତ୍ ତୋଳିଆଣି ସେ ତାଙ୍କର ସେବା କରିବାକୁ ଲାଗିଲେ । ଏହି ସମୟରେ ଭାଇ ଦେବଦତ୍ତ ହଂସଟିକୁ ଶର ମାରି-ଥିବାରୁ, ହଂସଟିକୁ ତାଙ୍କୁ ଦେଇ ଦେବାକୁ ଦାବୀ କଲେ । କିନ୍ତୁ ଗୌତମ ହଂସଟିକୁ ଆରୋଗ୍ୟ କରି ଆକାଶକୁ ଛାଡ଼ି ଦେଇଥିଲେ । ଉପାଖ୍ୟାନଟି ତାଙ୍କ ଉଦାର ହୃଦୟ ଓ ମହାନୁଭବତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଣ୍ଟକ ଅଶ୍ୱବାହିତ ହେବାପରେ ଶାକ୍ୟ ରାଜ୍ୟରେ ହଳକୋତ୍ସବ ପର୍ବ ପାଳିତ ହେଲା । କୃଷକମାନେ ସମସ୍ତେ ନବବସ୍ତ୍ର ପରିହିତ ହୋଇ ଅତି ଖୁସିରେ ଭୂମି କର୍ଷଣ କରିବାକୁ ଲାଗିଲେ । କିନ୍ତୁ ବଳଦମାନଙ୍କର କଷ୍ଟ ଦେଖି, ଗୌତମଙ୍କ ଚକ୍ଷୁଯୁଗଳ ଲୋତକ ପୂର୍ଣ୍ଣ ହୋଇ ଉଠିଲା । କ୍ଳାନ୍ତ ବଳଦ ଓ ଲଙ୍ଗଳ ମୁନରେ ମୃତ କ୍ଷୁଦ୍ର କୀଟ ପତଙ୍ଗାଦି କଥା ଚିନ୍ତାକରି ସେ ଅତ୍ୟନ୍ତ ମର୍ମାହତ ହେଲେ । ଏସବୁ ଚିନ୍ତାକରି ସେ କାନନ ମଧ୍ୟସ୍ଥ ଏକ ଜମ୍ବୁବୃକ୍ଷ ତଳେ ଚିନ୍ତାମଗ୍ନ ହେଲେ । ଏହି ସମୟରେ ପାଞ୍ଚଜଣ ମହର୍ଷି ସେହି ପଥରେ ଅନ୍ତରୀକ୍ଷ କାଳବେଳେ ଗୌତମଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ । ପରେ ଧ୍ୟାନ-ବଳରେ ସେ ନାରାୟଣଙ୍କ ଅବତାର ବୋଲି ଜାଣିବାରୁ ଭକ୍ତିପୂର୍ଣ୍ଣ ଭାବେ ପ୍ରଣାମ କରି ସ୍ୱମାର୍ଗରେ ଯାତ୍ରା କଲେ ।

ରାଜା ଓ ଅନ୍ୟାନ୍ୟ ରାଜକର୍ମଚାରୀଗଣ ପ୍ରାସାଦରେ ଗୌତମଙ୍କୁ ନ ପାଇ ଖୋଜି ଖୋଜି ଆସି ସେଠାରେ ଉପସ୍ଥିତ ହେଲେ । ପୁତ୍ରକୁ ଏପରି ଅବସ୍ଥାରେ ଦେଖି ରାଜା ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ତାଙ୍କୁ ନାରାୟଣଙ୍କ ଅବତାର ବୋଲି ଚିନ୍ତା କଲେ । ତେଣୁ କବିଙ୍କ ଲେଖନୀରେ—

"ଧ୍ୟାନସ୍ଥ ନନ୍ଦନ ଦେଖି ଭାବିଲେ ରାଜନ
ଏ ନୁହେଁ ମାନବ ନରରୂପୀ ନାରାୟଣ ।"

ଧ୍ୟାନମଗ୍ନ ହେବାରୁ ନିଦ୍ରାରୁ ଉଠିବା ପରି ଉଠି ଗୌତମ ପିତାଙ୍କୁ ପ୍ରଣାମ କଲେ ଓ ପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲେ ।

ଚତୁର୍ଥ ସର୍ଗରେ କବି ଅଶୋକୋତ୍ସବ ଉପାଖ୍ୟାନକୁ ରୂପ ଦେଇଅଛନ୍ତି । ପୁତ୍ରର ଏତାଦୃଶ ଭାବ ଦେଖି ମାତା ପ୍ରଜାବତୀ ଚିନ୍ତିତ

ହୋଇ ପଡ଼ଲେ ଏବଂ ପୁତ୍ରର ମନପରିବର୍ତ୍ତନ ଲାଗି ଆବଶ୍ୟକୀୟ ପଦକ୍ଷେପ ନେବାଲାଗି ରାଜାଙ୍କୁ ଅନୁରୋଧ କଲେ । ମନ୍ତ୍ରୀ ଓ ରାଜ-ପାରିଷଦବର୍ଗଙ୍କ ସହ ପରାମର୍ଶ କରି ରାଜା ଗୌତମଙ୍କୁ ବିବାହ ଦେବାପାଇଁ ସ୍ଥିର କଲେ । ଅନେକ ଚିନ୍ତା କରି ଗୌତମ ଏ ପ୍ରସ୍ତାବରେ ସମ୍ମତ ହେଲେ । ଶେଷରେ ଦଣ୍ଡପାଣିଙ୍କ କନ୍ୟା ଗୋପାଙ୍କ ସହ ତାଙ୍କର ବିବାହ ସ୍ଥିର ହେଲା ।

ପଞ୍ଚମ ସର୍ଗରେ କବି ଗୌତମଙ୍କର ବିବାହ ଉତ୍ସବକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । ଶାକ୍ୟବଂଶର ନିୟମାନୁଯାୟୀ ଗୌତମ ସମସ୍ତ ପ୍ରକାର ବିଦ୍ୟା ପରୀକ୍ଷା ଦେଇଛନ୍ତି । କବିଙ୍କ ଭାଷାରେ—

"ଜାଣନ୍ତୁ ସନାତନ ନିୟମ କଥା
ଶାକ୍ୟ ବଂଶରେ ଅଛି ଏପରି ପ୍ରଥା
ଭାବୀ-ଜାମାତା ବିଦ୍ୟା ସାମର୍ଥ୍ୟ ଜ୍ଞାନ
ନଜାଣି କନ୍ୟା କେହି ନକରେ ଦାନ ।"

ଗୌତମଙ୍କର ଯୁଦ୍ଧବିଦ୍ୟା, ବ୍ୟାୟାମ କୌଶଳ ଇତ୍ୟାଦି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ ଓ ଗୋପାଙ୍କ ସହ ତାଙ୍କର ବିବାହ ସ୍ଥିର ହେଲା । ଊନବିଂଶ ବର୍ଷ ବୟସରେ ନାନାଦି ଉତ୍ସବ କୋଳାହଳ ମଧ୍ୟରେ ତାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । କବିଙ୍କ ଭାଷାରେ—

"ଉଡ଼ିବେ ଯେ ବିହଗ ଅନନ୍ତାକାଶେ
ଆବଦ୍ଧ ହେଲେ ଆଜ ପ୍ରଣୟ ପାଶେ ।"

ରୋହିଣୀ ନଗରୀକୂଳସ୍ଥ ପ୍ରମୋଦ ଉଦ୍ୟାନରେ ଏକ ନବ ନିର୍ମିତ ପୁଷ୍ପମାଳ ସୁଶୋଭିତ ପ୍ରାସାଦ ମଧ୍ୟରେ ରାଜକୁମାର ଅବସ୍ଥାନ କଲେ । ଗୋପାଙ୍କର ଅନାବିଳ ପ୍ରେମ ରଜ୍ଜୁରେ ଆବଦ୍ଧ ହୋଇ ଗୌତମ ସମୟ ଅତିବାହିତ କଲେ । କବିଙ୍କ ଲେଖନୀରେ—

"ଗୋପା ସିଦ୍ଧାର୍ଥ ପ୍ରେମ-ପ୍ରୀତି-ବନ୍ଧନ
ଜାହ୍ନବୀ ବ୍ରହ୍ମପୁତ୍ର ସ୍ରୋତ ମିଳନ
ଭିନ୍ନ ଶରୀର ଏକ ମନ ହୃଦୟ
କ୍ଷୀର ନୀର ସମାନେ ମେଳ ଉଭୟ ।"

ପୁତ୍ରର ଏତାଦୃଶ ଭାବଦେଖି ରାଜା ଶୁଦ୍ଧୋଦନ ଓ ଅନ୍ୟାନ୍ୟ ପ୍ରଜାକୁଳ ଆଶ୍ୱସ୍ତି ଅନୁଭବ କଲେ । ଗ୍ରୀଷ୍ମର ଅବସାନ ପରେ ଯେପରି ଅନ୍ଧକାରର ସଞ୍ଚାର ହୁଏ ଠିକ୍ ସେହିପରି ଅଳ୍ପ କିଛି ଦିନ ପରେ ରାଜସୌଭାଗ୍ୟ ଭୁଲି ଗୌତମଙ୍କ ହୃଦୟରେ ବୈରାଗ୍ୟ ଜାତ ହେବାକୁ ଲାଗିଲା । କବିଙ୍କ ଭାଷାରେ—

"ପୂର୍ଣ୍ଣିମା ନିଦାଘ ଶେଷେ ବୃଷ୍ଟି ସଞ୍ଚାର
ବିଦ୍ୟୁତ୍ ଆଲୋ ଅନ୍ତେ ବଢ଼େ ଅନ୍ଧାର
ଭାଙ୍ଗିଲା ପରି ଗୋପା ରାଜ ସୌଭାଗ୍ୟ
ସିଦ୍ଧାର୍ଥ ମନେ ଏବେ ଜାତ ବୈରାଗ୍ୟ ।"

ବାସ୍ତବିକ୍ କବିଙ୍କର ବର୍ଣ୍ଣନା ଚାତୁରୀ ଅତ୍ୟନ୍ତ ଉଚ୍ଚକୋଟୀର । ଷଷ୍ଠ ଓ ସପ୍ତମ ସର୍ଗରେ କବି ଗୌତମଙ୍କ ହୃଦୟରେ କିପରି ବୈରାଗ୍ୟ ଭାବ ଜାତ ହୋଇଛି ତାହାକୁ ଜ୍ୱଳନ୍ତ ଭାବେ ଉପସ୍ଥାପିତ କରିଅଛନ୍ତି ।

ଏକଦା ରାତ୍ରରେ ଏକ ରମଣୀର ବୀଣାବାଦନ ଶୁଣି ସେ ପୃଥିବୀର ସମସ୍ତ ପ୍ରାଣୀମାନଙ୍କର ଦୁଃଖକଷ୍ଟ ସମ୍ବନ୍ଧରେ ଅଧିକ ଚିନ୍ତିତ ହୋଇ ପଡ଼ିଲେ ଏବଂ ସେହି ଦିନଠାରୁ ସମସ୍ତ ବିଳାସ-ବ୍ୟସନକୁ ଭୁଲି ସଦାସର୍ବଦା ଚିନ୍ତାମଗ୍ନ ରହିଲେ ।

ଦିନେ ସନ୍ଧ୍ୟାରେ ଗୌତମ ପ୍ରମୋଦ ଉଦ୍ୟାନକୁ ଯିବା ରାସ୍ତାରେ ଏକ ଜରାଗ୍ରସ୍ତ ବୃଦ୍ଧବ୍ୟକ୍ତିକୁ ଦେଖିଲେ ଏବଂ ତାହା ସମ୍ବନ୍ଧରେ ଜାଣିବା ପାଇଁ ସାରଥିକୁ ପ୍ରଶ୍ନ କଲେ । କବି ଲେଖିଛନ୍ତି—

"ମଠାନ୍ତ ସ୍ଥବିର ଜରା କାତର
କଷ୍ଟେ ଗୃହେ ଏକ ଦେଖିଲେ ନର
ପୁଚ୍ଛିଲେ ସାରଥେ ବୋଲ ବୃତ୍ତାନ୍ତ
କିଏ ଏ ଲୋକଟି ? ଶୀର୍ଣ୍ଣ ନିତାନ୍ତ
ରକ୍ତ ମାଂସ ଶୁଷ୍କ ଦେହ ଦୁର୍ବଳ
କଷ୍ଟେ କଷ୍ଟେ ଗୃହେ ନାହିଁଟି ବଳ ।"

ଉତ୍ତରରେ ସାରଥି କହିଲେ, ଏ ସଂସାରରେ ସମସ୍ତ ବ୍ୟକ୍ତି ଦିନେ ନା ଦିନେ ଏହି ଅବସ୍ଥାର ବଶବର୍ତ୍ତୀ ହୁଅନ୍ତି । ରାଜା, ଯୁବରାଜ, ରାଜବଧୂ କେହି ଏଥିରୁ ବାଦ୍ ନୁହନ୍ତି । କବିଙ୍କ ଭାଷାରେ—

ରାଜବଧୂ ବୋଲି ନଯିବ ଛାଡ଼ି
କାଳବଶେ କଷ୍ଟେ ଆସିବ ମାଡ଼ି ।
ରାଜରାଣୀ ଜ୍ଞାନ ଅଜ୍ଞାନ ଧନ
ଅଟନ୍ତି ସକଳେ ଜରା ଅଧୀନ ।"

ଅନ୍ୟ ଏକ ଦିନ ପ୍ରମୋଦ ଉଦ୍ୟାନକୁ ଯିବାବସ୍ଥାରେ ଏକ ରୋଗଗ୍ରସ୍ତ ଦୁର୍ବଳ ଲୋକକୁ ଦେଖି ତା ବିଷୟରେ ଜାଣିବା ପାଇଁ ସାରଥିକୁ ପ୍ରଶ୍ନ କଲେ । ସାରଥିଠାରୁ ସମସ୍ତ ବିଷୟ ଶୁଣି ସେ ଅତ୍ୟନ୍ତ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲେ । ତୃତୀୟ ଥର ଏକ ମୃତ ବ୍ୟକ୍ତିକୁ ଦେଖିବା ପରେ ଏ ଜୀବନ ଦୁଃଖ, ଯନ୍ତ୍ରଣାପୂର୍ଣ୍ଣ ବୋଲି ତାଙ୍କର ଧ୍ରୁବ ହୃଦବୋଧ ହେଲା । ଚତୁର୍ଥ ଦିନ ସେ ଏକ ପ୍ରଶାନ୍ତ-ଚେତା, ଶାନ୍ତ, ସୁଶୀଳ ସନ୍ନ୍ୟାସୀକୁ ଭେଟିଲେ । ସାରଥିକୁ ପଚାରିବାରୁ ସେ ଉତ୍ତରରେ କହିଥିଲା, ଏପରି ବ୍ୟକ୍ତିଙ୍କର ସଂସାର ବିଷୟରେ କୌଣସି ଚିନ୍ତା ନାହିଁ । ତେଣୁ ସେମାନେ ହିଁ ସର୍ବଦା ସୁଖୀ । ଏସବୁ ଦେଖିବା ପରେ ତାଙ୍କ ହୃଦୟରେ ଘୋର ପରିବର୍ତ୍ତନ ଆସିଲା । ଅନେକ ଚିନ୍ତା କରି ଜଗତର ଉଦ୍ଧାର ପାଇଁ ଶେଷରେ ଗୌତମ ସନ୍ନ୍ୟାସ ଧର୍ମ ଗ୍ରହଣ କରିବାକୁ ସ୍ଥିର କଲେ ।

ଅଷ୍ଟମ ସର୍ଗରେ କବି ଗୌତମଙ୍କ ଶିଶୁପୁତ୍ର ଲାଭ ଓ ଗୃହ-ତ୍ୟାଗ ଅବସର କାଳରାତ୍ରିକୁ ରୂପ ଦେଇଛନ୍ତି । ଶିଶୁପୁତ୍ର ଜାତ ହୋଇଥିବାରୁ ରାଜ୍ୟସାରା ନାନାଦି ଉତ୍ସବମାନ ପାଳିତ ହେଉ-ଥିଲା । କିନ୍ତୁ ସିଦ୍ଧାର୍ଥଙ୍କୁ ଏସବୁ କିଛି ଆଦୌ ଆନନ୍ଦ ପ୍ରଦାନ କରି ପାରିଲା ନାହିଁ । ସଙ୍ଗୀତର ମୂର୍ଚ୍ଛନା ଓ ନର୍ତ୍ତକୀର ନୃତ୍ୟ ମଧ୍ୟରେ ସେ ଜଗତବାସୀଙ୍କର ଜରାବ୍ୟାଧି, ଶୋକ, ମୃତ୍ୟୁ ଇତ୍ୟାଦିକୁ ଉପଲବ୍ଧି କଲେ । କବିଙ୍କ ଭାଷାରେ—

"ଶୁଣିଲେ ସିଦ୍ଧାର୍ଥ ଏହି ସଙ୍ଗୀତ ରାଗିଣୀ
ଜଗତର ଜରାମୃତ୍ୟୁ ହାହାକାର ବାଣୀ
ଦେଖିଲେ ଲାବଣ୍ୟମୟ ନର୍ତ୍ତକୀ ବଦନେ
ଜରା, ବ୍ୟାଧି, ଶୋକ, ମୃତ୍ୟୁ ରହିଛି ପ୍ରଚ୍ଛନ୍ନେ ।"

ଉତ୍ସବ ଶେଷରେ ରାଜପାରିଷଦବର୍ଗ, ରାଜରାଣୀ ଗୋପା ଓ ଅନ୍ୟାନ୍ୟ ନର୍ତ୍ତକୀମାନେ ନିଦ୍ରାଗିବା ପରେ ଗୌତମ ଗୃହତ୍ୟାଗ କରିବା ପାଇଁ ମନସ୍ଥ କଲେ । ନିଦ୍ରାଗତା ସ୍ଖଳିତ ବସନା, ବିଛିନ୍ନ କବରୀ ନର୍ତ୍ତକୀମାନଙ୍କୁ ଦେଖି ତାଙ୍କ ମନରେ ଘୃଣା ଜାତ ହେଲା । ଅନେକ ଚିନ୍ତାକରି, ଶେଷରେ ସେ ପିତାମାତାଙ୍କ ଠାରୁ ମେଲାଣି-ନେବା ପାଇଁ ବାହାରିଲେ ।

ନବମ ସର୍ଗରେ କବି ଗୌତମଙ୍କର ମେଲାଣି ନେବା ସମୟକୁ ବର୍ଣ୍ଣନା କରିଛନ୍ତି । ରାଜା ଶୁଦ୍ଧୋଦନ ଗାଢ଼ ନିଦ୍ରାରେ ଶୟନ କରି-ଥିବା ସମୟରେ ତାଙ୍କ ଅଲକ୍ଷରେ, ରାଜକୁମାର ଗୌତମ ତାଙ୍କୁ ପ୍ରଣାମ କଲେ ଏବଂ ମେଲାଣି ନେବାପାଇଁ ଅନୁମତି ଭିକ୍ଷା କଲେ । ରାଜା, ପୁତ୍ରକୁ ଏପରି ଅବସ୍ଥାରେ ହଠାତ୍ ଦେଖି ଆଶ୍ଚର୍ଯ୍ୟ ହେଲେ ଏବଂ ଗୌତମଙ୍କୁ ସଂସାର ତ୍ୟାଗ ନ କରିବା ପାଇଁ ଅନେକ ପ୍ରବୋଧାଇଲେ । ଉତ୍ତରରେ ଗୌତମ ପିତାଙ୍କ ନିକଟରେ ଚାରିଟି ପଦାର୍ଥ ଭିକ୍ଷା କଲେ । କବିଙ୍କ ଭାଷାରେ —

"ବୋଇଲେ ଗୌତମ ପିତଃ ! କରନ୍ତୁ ଆଦେଶ
ମୋ ଶରୀରେ ନ ବାଧିବ ସେହେଁ ବାଧାକ୍ଳେଶ ।
ନ ମରିବି, ନ ତୁଟିବ ସମ୍ପଦ ଯୌବନ
ଦେବା ହେଉ ମୋତେ ଏହି ଚାରିଗୋଟି ଧନ ।"

ଅନେକ ବାଦାନୁବାଦ ପରେ ପିତାଙ୍କ ଚରଣରେ ପୃଥିବୀରେ ଓଳଗି ହୋଇ, ସମସ୍ତଙ୍କୁ ଶୋକସାଗରରେ ନିମଜ୍ଜିତ କରି ଗୌତମ ମେଲାଣି ଘେନିଲେ । ଏକ ପକ୍ଷରେ ସଂସାରର ମାୟା ବନ୍ଧନ ଓ ଅପର ପକ୍ଷରେ ଜୀବଜଗତର ମୁକ୍ତି ପାଇଁ ଅପ୍ରତିହତ ପିପାସା । ଏହି

ଆକର୍ଷଣ ଓ ତ୍ୟାଗର ସଂଘର୍ଷ ମଧ୍ୟରେ ମେଲାଣି ଦେବା ଅବସ୍ଥାକୁ କବି ଅତ୍ୟନ୍ତ ହୃଦୟସ୍ପର୍ଶୀ ଭାବେ ବର୍ଣ୍ଣନା କରିଛନ୍ତି । କବିଙ୍କ ଦୃଷ୍ଟିରେ ପିତାଙ୍କ ନେତ୍ର-ନୀର ପଡ଼ୁଛି ପୁତ୍ରର ପୃଷ୍ଠଦେଶରେ ଓ ପୁତ୍ରଙ୍କ ନୟନନୀର ଧୌତ କରୁଛି ପିତାଙ୍କ ଚରଣ ଯୁଗଳ । ବାସ୍ତବିକ କବିଙ୍କର ଏତାଦୃଶ ବର୍ଣ୍ଣନା ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇ-ପାରିଛି ।

ଦଶମ ସର୍ଗରେ କବି ଗୌତମଙ୍କ ଗୃହତ୍ୟାଗ, ବନଗମନ ଓ ନିଷ୍କ୍ରମଣ ଉପାଖ୍ୟାନକୁ ବର୍ଣ୍ଣନା କରିଅଛନ୍ତି । ପିତାଙ୍କ ଠାରୁ ମେଲାଣି ନେଇ, ରାଜ୍ୟବାସୀ ସମସ୍ତେ ନିଦ୍ରିତ ଅବସ୍ଥାରେ ଛନ୍ଦକ ନାମକ ଭୃତ୍ୟକୁ, ଅଶ୍ୱ ସଜାଇ ଆଣିବାକୁ ଆଦେଶ ଦେଲେ । ଗୌତମଙ୍କର ଏପରି ଆଦେଶ ଶୁଣି ଛନ୍ଦକ ଆଶ୍ଚର୍ଯ୍ୟ ହେଲା ଏବଂ ରାଜ୍ୟବାସୀଙ୍କୁ ଶୋକ ସାଗରରେ ନିମଗ୍ନ କରି ରାଜ୍ୟ ନ ଛାଡ଼ିବାକୁ ଅନେକ ବୁଝାଇଲା । ଜଗତବାସୀଙ୍କ ମଙ୍ଗଳ ପାଇଁ ଛନ୍ଦକ ତାଙ୍କ ପଥରେ କଣ୍ଟକ ନ ସଜାଡ଼ିବାକୁ ଗୌତମ ତାକୁ ବୁଝାଇଲେ । କବିଙ୍କ ଭାଷାରେ—

"ଯିବି ସେ ମାର୍ଗ ଅନ୍ୱେଷଣେ, ବାଧା ନ ଦିଅ ଅକାରଣେ
ଜଗତ ମଙ୍ଗଳେ ଛନ୍ଦକ ! ନ ହୁଅ ମୋ ମାର୍ଗେ କଣ୍ଟକ ।"

ଶେଷରେ ଗୋପା ଓ ନବଜାତ ଶିଶୁପୁତ୍ରକୁ ସେମାନଙ୍କର ନିଦ୍ରିତାବସ୍ଥାରେ ଶେଷ ଦର୍ଶନ କରି ଗୌତମ ଛନ୍ଦକ ସହ ରାଜ୍ୟ-ତ୍ୟାଗ କରି ଚାଲିଗଲେ । ନିଦ୍ରିତ ପତ୍ନୀଠାରୁ ବିଦାୟ ନେବା ସମ୍ପୂର୍ଣ୍ଣ ପରିସ୍ଥିତିରେ ମଧ୍ୟ ଚିନ୍ତା-ସଂଘର୍ଷର ମନୋଜ୍ଞ ଚିତ୍ର କବି ଲେଖନୀରେ ପରିସ୍ଫୁଟ ହୋଇଅଛି । ଏକାଦଶ ସର୍ଗରେ କବି

ଗୌତମଙ୍କର ସନ୍ୟାସ ବେଶ ଗ୍ରହଣ, ରାଜତ୍ୟାଗ ବିଷୟ ବର୍ଣ୍ଣନା କରିଛନ୍ତି । ଛନ୍ଦକକୁ ଅନେକ ପ୍ରକାର ବୁଝାଇ ଶେଷରେ ଗୌତମ ନିଜର ସୁଦୀର୍ଘ କେଶ ରାଜିକୁ ଖଡ୍‌ଗ ଦ୍ୱାରା ଛେଦନ କରି ତିନଖଣ୍ଡ ଜୀର୍ଣ୍ଣବସ୍ତ୍ର ପରିଧାନ ହୋଇ ସନ୍ୟାସ ବେଶ ଗ୍ରହଣ କଲେ । କବିଙ୍କ ଚକ୍ଷୁରେ —

"ଭୃଙ୍ଗ ଶ୍ରେଣୀ କୃଷ୍ଣ ଦୀର୍ଘ କେଶକୁ ତକ୍ଷଣ
ଛେଦି ନିଜ ଖଡ୍‌ଗେ ତେଜି କୌଷେୟ ବସନ
ତିନଖଣ୍ଡ ଜୀର୍ଣ୍ଣବସ୍ତ୍ର ପିନ୍ଧିଲେ ତକ୍ଷଣେ
ରହିଛି ଛନ୍ଦକ ଚାହିଁ ଚକିତ ନୟନେ ।"

ତାଙ୍କର ସେ ନବୀନ ସନ୍ୟାସ ବେଶକୁ 'ଅଶ୍ୱ କଣ୍ଟକ' ମଧ୍ୟ ଦେଖିଲା, ହେଲେ କିଛି ବୁଝି ନ ପାରି ଆଶ୍ଚର୍ଯ୍ୟ ହେଲା ଓ ନୀରବରେ ଅଶ୍ରୁ ବିସର୍ଜନ କଲା । କବି ଲେଖିଛନ୍ତି—

"ନବୀନ ସନ୍ୟାସରୂପ ଦେଖିଲା କଣ୍ଟକ
କି ବୁଝିଲା ପଶୁ ଚାହିଁଅଛି ଭକଭକ ।
ନୀରବେ ବହୁତ ଅଶ୍ରୁ ଧାରା ହି ନୟନୁ
ଭିଜାଇ ଚାରି ପିଚୁଳିକ ସ୍ଥିର କରି ତନୁ ।

ଦୃଷ୍ଟି ପଥରୁ ଗୌତମ ଅନ୍ତର୍ହିତ ହୋଇଯିବାରୁ ଛନ୍ଦକ ଓ କଣ୍ଟକ ଦୁହେଁ ନିରାଶ ହୋଇ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ ।

ଦ୍ୱାଦଶ ସର୍ଗରେ କବି ଗୌତମ ବିରହ ଜନିତ ରାଜପ୍ରାସାଦର ଦୂରବସ୍ଥାକୁ ବର୍ଣ୍ଣନା କରିଅଛନ୍ତି । ହୃଷ୍ଟ ହେବାରୁ ଗୌତମଙ୍କୁ ନ

ଦେଖି ଗୋପା ଓ ଅନ୍ୟାନ୍ୟ ସଦସ୍ୟମାନେ କ୍ରନ୍ଦନ କରିବାକୁ ଲାଗିଲେ । ଚତୁର୍ଦ୍ଦିଗରେ ଗୌତମଙ୍କୁ ଖୋଜି ଖୋଜି ଶେଷରେ ଛନ୍ଦକଠାରୁ ସମସ୍ତ ସମ୍ବାଦ ଲାଭ କଲେ । ସମସ୍ତ ଶୁଣିବା ପରେ ମାତା ପ୍ରଜାପତି ବିକଳରେ କ୍ରନ୍ଦନ କରିବାକୁ ଲାଗିଲେ ଓ ସାତଦିନ, ସାତରାତି ପର୍ଯ୍ୟନ୍ତ ଅଜ୍ଞାନ, ମୂର୍ଚ୍ଛିତା ହୋଇ ଭୂମିରେ ପଡ଼ି ରହିଲେ । କବି ଲେଖିଛନ୍ତି—

"ସାତଦିନ ସାତରାତି ମାତା ପ୍ରଜାପତି
ଅଜ୍ଞାନା ମୂର୍ଚ୍ଛିତା ଭୂମିତଳେ ପଡ଼ିଛନ୍ତି ।"

ପତି ବିରହ ବିଧୁରା ରାଜବଧୂ ଗୋପା ପତିଙ୍କ ବିରହରେ ମର୍ମାହତ ହୋଇ ବସନଭୂଷଣ ପରିତ୍ୟାଗ କରି କଷାୟ ପିନ୍ଧି ସନ୍ୟାସିନୀ ବେଶ ଧାରଣ କରନ୍ତି ଓ ପତିଙ୍କ ପଥରେ ପଥିକା ହେବା ପାଇଁ ପ୍ରତିଜ୍ଞା କରନ୍ତି । କବିଙ୍କ ଭାଷାରେ—

"ଆଶୀର୍ବାଦ କର ମାତା ! ବ୍ରତ ଉଦ୍ୟାପନ
କରିବି ପତି ପଦେ ଆତ୍ମା ମନ ସମର୍ପଣ ।"

ତ୍ରୟୋଦଶ ଓ ଚତୁର୍ଦ୍ଦଶ ସର୍ଗରେ ଗୌତମଙ୍କର ବୁଦ୍ଧତ୍ୱ ପ୍ରାପ୍ତିର ମାର୍ଗ ଅନ୍ୱେଷଣ ଓ ସନ୍ୟାସ ବ୍ରତ ଗ୍ରହଣ ବିଷୟରେ ବର୍ଣ୍ଣନା କରାଯାଇଛି । ହିମାଳୟରୁ ପ୍ରବହମାନା ଅନୋମା କୂଳରେ ଏକ ବୃକ୍ଷ ତଳେ ସେ ପ୍ରଥମେ ନୀରବ ନିଶ୍ଚଳ ହୋଇ ବସି ରହିଲେ । ତତ୍ପରେ ସେ ବହୁପଥ ବୁଲିବୁଲି ଏକଦା ମଗଧେଶ୍ୱର ବିମ୍ବିସାରଙ୍କୁ ଭେଟିଲେ । ବିମ୍ବିସାର ତାଙ୍କୁ ନିଜ ରାଜ୍ୟରେ ରହିବା ପାଇଁ ଅନୁରୋଧ କଲେ । କିନ୍ତୁ ଉତ୍ତରରେ ରାଜ୍ୟଲିପ୍ସା ନ

ଦେଖାଇବାକୁ ଗୌତମ ବିମ୍ବିସାରଙ୍କୁ ଅନୁରୋଧ କଲେ । କବିଙ୍କ ବର୍ଣ୍ଣନାରେ—

"ରାଜ୍ୟ ସୁଖରେ ଅଭିଳାଷୀ, ନୁହେଁ ମୁଁ ସମ୍ପ୍ରତି ସନ୍ନ୍ୟାସୀ
ହୋଇଛି— ଶାନ୍ତ କାମନାରେ, ମନ ନବେଶି ତପସ୍ୟାରେ ।"

ଏହା ଶୁଣି ବିମ୍ବିସାର ଆଶ୍ଚର୍ଯ୍ୟ ହେଲେ । ବିମ୍ବିସାରଙ୍କୁ ସମସ୍ତ ବୁଝାଇ ଦେବା ପରେ ବୁଦ୍ଧତ୍ୱ ପ୍ରାପ୍ତି ପରେ ସେ ତତ୍ତ୍ୱ ପ୍ରଥମେ ତାଙ୍କୁ ଶିକ୍ଷା ଦେବାକୁ ଗୌତମଙ୍କୁ ଭିକ୍ଷା ମାଗିଲେ । ଦ୍ୱିତୀୟତଃ ତାଙ୍କ ରାଜ୍ୟରେ କିଛିଦିନ ଅବସ୍ଥାନ କରିବା ପାଇଁ ସେ ଗୌତମଙ୍କୁ ଅନୁରୋଧ କଲେ । କିଛିଦିନ ଗୌତମ ସେଠାରେ ରହିବା ପରେ ବୈଶାଳୀ ରାଜ୍ୟରେ ହଠାତ୍ ମଡ଼କ ପଡ଼ିଲା; ଏବଂ ଲୋକମାନେ ଯୋକମାନ୍ତ ପରି ପ୍ରାଣତ୍ୟାଗ କଲେ । ସେଥିରୁ ରକ୍ଷା ପାଇବା ପାଇଁ ସମସ୍ତେ ପାଣ୍ଡବ ପର୍ବତରେ ଅବସ୍ଥାନ କରୁଥିବା ସନ୍ନ୍ୟାସୀଙ୍କ ନିକଟକୁ ଗଲେ । ଗୌତମ ସେଠାକୁ ଯାଇ ନୈବସଂଜ୍ଞାନ ଓ ଅସଂ-ଜ୍ଞାୟତନ ଦୁଇଟି ଜ୍ଞାନ ଲାଭ କଲେ । କିନ୍ତୁ ଏହା ନିର୍ବାଣର ଉପଯୁକ୍ତ ପଥ ନୁହେଁ ବୋଲି ସେ ସେ ଉପଲବ୍ଧି କରିବାରୁ ପାଞ୍ଚଜଣ ଶିଷ୍ୟଙ୍କ ସଙ୍ଗେ ସେ ଗୟାକୁ ଯାତ୍ରା କଲେ । ନିରଞ୍ଜନା ନଦୀ ତଟସ୍ଥ ଏକ କାନନ ମଧ୍ୟରେ ସେ କଠୋର ତପସ୍ୟା ଆରମ୍ଭ କଲେ । ଛ ବର୍ଷ କାଳ କଠିନ ତପସ୍ୟା କରିବା ପରେ ହଠାତ୍ ଦିନେ ଧ୍ୟାନ ବଳରେ ସେ ତାଙ୍କର ସ୍ୱର୍ଗଗତା ମାତା ମାୟାଦେବୀଙ୍କୁ ଦେଖିଲେ । ମାୟା-ଦେବୀ ତାଙ୍କୁ ସନ୍ନ୍ୟାସ ବ୍ରତ ଗ୍ରହଣ ନ କରିବାକୁ ପ୍ରବର୍ତ୍ତାଇଲେ । କୌଣସି ଶକ୍ତି ଦ୍ୱାରା ଅବିଚଳିତ ନ ହୋଇ ସେ କଠୋର ତପସ୍ୟାରେ ଲିପ୍ତ ରହିଲେ । ଛଅ ବର୍ଷ କାଳ କଠିନ ତପସ୍ୟା

ପରେ ଫଳପ୍ରାପ୍ତି ନ ହେବାରୁ ଗୌତମ ନିଜ ରାଜପାରିଷଦ ବର୍ଗଙ୍କ ବିଷୟ ଚିନ୍ତା କରି ମର୍ମାହତ ହେଲେ ।

ପଞ୍ଚଦଶ ସର୍ଗରେ ଗୌତମଙ୍କର ସିଦ୍ଧିଲାଭ ବିଷୟକ ଅତି ସୁନ୍ଦର ଭାବେ ରୂପାୟିତ କରାଯାଇଛି । ଛଅ ବର୍ଷ ମଧ୍ୟରେ କୌଣସି ଜ୍ଞାନଲାଭ ନ ହେବାରୁ ପାଞ୍ଚଜଣ ଶିଷ୍ୟ ତାଙ୍କୁ ଏକାକୀ କରି ଚାଲିଗଲେ । ଛଅବର୍ଷ ପରେ ଗୌତମ ଉଠି ନିରଞ୍ଜନାରେ ସ୍ନାନ କରି ଶ୍ମଶାନରେ ପତିତ ଶବର ବସନ ଧାରଣ ପୂର୍ବକ ପୁଣି ସେ ବୃକ୍ଷ ମୂଳରେ ବସିଲେ । କବିଙ୍କ ଭାଷାରେ—

"ନିକଟ ଶ୍ମଶାନ ଶବର ବସନ
ଆଣି ଯତନେ କଲେ ଧାରଣ ସେ ଅଙ୍ଗରେ,
ଆସି ବସିଲେ ସେ ତରୁ ତଳେ
ଚିତ୍ର ପ୍ରତିମା ସମ ନିଶ୍ଚଳେ,
ଅରଣ୍ୟ ଦେବତା କି ଅବା ସ୍ଥାପିତା
ଛନ୍ତି କି ସେ ଭାବିନେ କେ ରହିଲେ, ସେ ସ୍ଥାନରେ ।"

ନନ୍ଦିକପତିଙ୍କ କନ୍ୟା ସୁଜାତାଙ୍କ ପ୍ରଦତ୍ତ ଖାଦ୍ୟ କିଛି ଗ୍ରହଣ କରି ପୂର୍ବର ସେହି ଅଶ୍ୱତ୍ଥ ବୃକ୍ଷ ଚତୁଃପାର୍ଶ୍ୱରେ ସାତଥର ପ୍ରଦକ୍ଷିଣ କରି ଓ ସାତଥର ପ୍ରଣାମ କରି ପୁଣି ଧ୍ୟାନମଗ୍ନ ହେଲେ । ଯାର୍ଘଦିନ ତପସ୍ୟା ପରେ ସେ ଅଶ୍ୱତ୍ଥ ବୋଧିଦ୍ରୁମ ତଳେ ସେ ସିଦ୍ଧିଲାଭ କଲେ ।

ଷୋଡ଼ଶ ସର୍ଗରେ କବି ବୁଦ୍ଧଦେବଙ୍କର ଧର୍ମ ପ୍ରଚାର ସବିଶେଷ ବିବରଣୀ ପ୍ରଦାନ କରିଛନ୍ତି । ଜ୍ଞାନୋଦୟ ପରେ ଏକୋଇଶ

ଦିନ ପର୍ଯ୍ୟନ୍ତ ଜ୍ଞାନପ୍ରାପ୍ତି ଆନନ୍ଦରେ ବୋଧିଦ୍ରୁମ ମୂଳରେ ଗୌତମ ବୁଲିବାକୁ ଲାଗିଲେ । ଏହାପରେ ବନ ମଧ୍ୟରେ ବୁଲି ବୁଲି ପଚିଶ ଦିନ ଅତିବାହିତ କଲେ । ଏହିଦିନେ ବୁଲିବୁଲି ହଠାତ୍ ଦିନେ ମହର୍ଷି ଜନ୍ମଭୂମି ଗ୍ରାମରେ "ଏପୁରେ'' ଓ "ଭେଲ୍ଲିକ,' ନାମକ ଦୁଇ ବଣିକ ସହୋଦରଙ୍କ ଠାରୁ କିଛି ଖାଦ୍ୟଦ୍ରବ୍ୟ ଲାଭ କରି କ୍ଷୁଧା ନିବାରଣ କଲେ । ଏହାପରି କିଛିଦିନ ଅତିବାହିତ ହେବାପରେ ସେ ଚିନ୍ତାକଲେ । ଏପରି କେବଳ ବନ ଭ୍ରମଣ କଲେ ତାଙ୍କ ଜ୍ଞାନପ୍ରାପ୍ତି ବୃଥା ହୋଇଯିବ । କବିଙ୍କ ଭାଷାରେ—

"ଥୋକେ ଦିନ ଯାନ୍ତେ ଯୋଗୀ ଚିନ୍ତିଲେ ଚିତ୍ତରେ
କଲେ ମୁଁ ନିର୍ଜ୍ଜନ ବନେ ଜୀବନ ଯାପନ
ଲଭିଛି ଯେ ମହାରତ୍ନ ଯିବ ଅକାରଣ ।''

କାହାକୁ ପ୍ରଥମେ ଧର୍ମ ବିଷୟରେ ଶୁଣାଇବେ ଏହା ଚିନ୍ତା କରୁ କରୁ ରାମପୁତ୍ର ରୁଦ୍ରକର ଓ ଆରାଡ଼କାଲାମଙ୍କ କଥା ତାଙ୍କର ମନେ ପଡ଼ିଲା । କିନ୍ତୁ ସେ ଯୋଗ ବଳରେ ଜାଣିଲେ ଯେ ଉଭୟେ କିଛିଦିନ ପୂର୍ବରୁ ମୃତ୍ୟୁବରଣ କରିଛନ୍ତି । ଶେଷରେ ପଞ୍ଚଶିଷ୍ୟ କଥା ତାଙ୍କର ମନେ ପଡ଼ିଲା ଓ ସେମାନଙ୍କୁ ଜ୍ଞାନ ପ୍ରଚାର ଉଦ୍ଦେଶ୍ୟରେ ସେ ବାରଣାସୀ ଯାତ୍ରା କଲେ । ପଥ ମଧ୍ୟରେ ସେ 'ଆଜୀବକ' ନାମକ ଏକ ବ୍ରାହ୍ମଣକୁ ଭେଟିଲେ । ବ୍ରାହ୍ମଣ ମହାପ୍ରଭୁ ବୁଦ୍ଧଙ୍କଠାରୁ ତାଙ୍କ ଧର୍ମ ବିଷୟରେ ଶୁଣି ବୋଧାନ୍ୱିତ ହେଲେ । ବାରଣାସୀ ଯାତ୍ରା ସମୟରେ ବାଟରେ ଗଙ୍ଗା ନଦୀକୁ ପାରହେବା ପାଇଁ ପଡ଼ିଲା । ନାବିକକୁ ପାରି କରିବାକୁ ଅନୁରୋଧ କରିବାରୁ ନାବିକ ବିନା

ପାରଶ୍ରମିକରେ ନଦୀ ପାର କରିବାକୁ ନାରାଜ ହେଲା । କବିଙ୍କ ଭାଷାରେ—

"ହୋଇଲା ନାବିକ ପୁଣ ଜୀବିକା ଗୋଚର --
ବିନା ପଣେ କି ପ୍ରକାର କରିବ ମୁଁ ପାର
ବୃତ୍ତି ମୋର ପଣେ କରେ କୁଟୁମ୍ବ ପୋଷଣ ।"

କିନ୍ତୁ ପ୍ରଭୁ ବୁଦ୍ଧ ଯୋଗ ବଳରେ ଶୂନ୍ୟମାର୍ଗରେ ନଦୀପାର ହେଲେ । ଏହା ଦେଖି ନାବିକ ଆଶ୍ଚର୍ଯ୍ୟ ହେଲା ଏବଂ ସେହି ଦିନଠାରୁ ମୁନିଋଷିମାନଙ୍କୁ ବିନା ପାରିଶ୍ରମିକରେ ନଦୀପାର କରି ଦିଆଗଲା । ଶେଷରେ ବୁଦ୍ଧ ବାରାଣାସୀରେ ଉପସ୍ଥିତ ହେଲେ । ତାଙ୍କଠାରୁ ଧର୍ମତତ୍ତ୍ୱ ଶୁଣି ଅସଂଖ୍ୟ ନରନାରୀ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ଏହାପରେ ବୁଦ୍ଧଦେବ ଧର୍ମ ପ୍ରଚାର ନିମିତ୍ତ ମଗଧକୁ ଯାତ୍ରା କଲେ । ମଗଧରେ ସମ୍ରାଟ ବିମ୍ବିସାର, ସାରିପୁତ୍ର, ମୋଦଗଲ୍ଲାନ ପ୍ରଭୃତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ଏବଂ ମଗଧରେ ବୌଦ୍ଧଧର୍ମ ପ୍ରସାର ଲାଭ କଲା ।

ସପ୍ତଦଶ ସର୍ଗରେ କବି ବୁଦ୍ଧଙ୍କର କପିଳବାସ୍ତୁ ଆଗମନ ଓ ତତ୍ପରେ ରାଜ୍ୟ ଓ ରାଜ୍ୟବାସୀଙ୍କର ଅବସ୍ଥାକୁ ବର୍ଣ୍ଣନା କରିଛନ୍ତି । ଗୌତମ ଶିଷ୍ୟମାନଙ୍କ ମେଳରେ ମଗଧ ଦେଶରେ ଅବସ୍ଥାନ କରୁଥିବା ସମୟରେ ପିତୃ ପ୍ରେରିତ ଜଣେ ଦୂତ ଗୌତମଙ୍କୁ କପିଳବସ୍ତୁ ପ୍ରତ୍ୟାବର୍ତ୍ତନ କରିବାକୁ ଅନୁରୋଧ କଲା ଓ ଗୌତମ ବିରହଜନିତ ପିତା, ମାତା, ପତ୍ନୀଙ୍କର ଦୁର୍ଦ୍ଦଶା ବର୍ଣ୍ଣନା କଲା । ଏସବୁ ଶୁଣିବା ପରେ ଗୌତମ ଶିଷ୍ୟମାନଙ୍କ ସହ କପିଳବସ୍ତୁ ଯାତ୍ରା କରିବା ପାଇଁ ସ୍ଥିର କଲେ । କପିଳବସ୍ତୁ ରାଜପ୍ରାସାଦରେ ପହଞ୍ଚିବା ପରେ

ଗୌତମଙ୍କର ଏତାଦୃଶ ରୂପ ଦେଖି ରାଜପରିବାରବର୍ଗ ବିକଳରେ କ୍ରନ୍ଦନ କରିବାକୁ ଲାଗିଲେ । କବିଙ୍କ ଭାଷାରେ—

"ସିଦ୍ଧାର୍ଥ ଧୀରେ ଅତି ଧୀରେ ମିଳିଲେ ଜନକ କକ୍ଷରେ
ରାଜାଙ୍କ ହୃଦ କମ୍ପିଗଲା ବୁଦ୍ଧି ବାଷ୍ପ ଗଦଗଦ କଣ୍ଠ ରୁଦ୍ଧି ।"

× × ×

ଏ ଭାବ ଦେଖି ପ୍ରଜାପତି, କାନ୍ଦିଲେ ବିକଳରେ ଅତି
ସଧୀରେ ପୁତ୍ର ପାଶେ ଯାଇ, ପଡ଼ିଲେ ଚେତନା ହରାଇ ।"

ପତ୍ନୀ ଯଶୋଦା ଓ ଶିଶୁପୁତ୍ର ରାହୁଳ ଗୌତମଙ୍କର ଏତାଦୃଶ ରୂପ ଦେଖି ମର୍ମାହତ ହେଲେ ସତ, ମାତ୍ର ତାଙ୍କ ପଥରେ ପଥିକ ହେବାପାଇଁ ସନ୍ନ୍ୟାସ ବ୍ରତ ଗ୍ରହଣ କଲେ । ସିଦ୍ଧିଲାଭ ପରେ ଏପରି ପୁନର୍ମିଳନ ଅତ୍ୟନ୍ତ କରୁଣରସ ବ୍ୟଞ୍ଜକ । ତତ୍ପରେ କପିଳବାସ୍ତୁର ଅନେକ ନରନାରୀ ନିର୍ବାଣ ମାର୍ଗର ସନ୍ଧାନ ପାଇଁ ବୁଦ୍ଧଙ୍କର ଅନୁଗାମୀ ହେଲେ ।

ଅଷ୍ଟାଦଶ ସର୍ଗରେ କବି ବୁଦ୍ଧଦେବଙ୍କର ଧର୍ମ ପ୍ରଚାରକୁ ରୂପାୟିତ କରିଛନ୍ତି । ବୁଦ୍ଧଦେବ ଧର୍ମ ପ୍ରଚାରରେ ବାହାରି ଏକନାଳା ଗ୍ରାମରେ ଭୂସ୍ୱାମୀ ନାମକ ବ୍ରାହ୍ମଣଙ୍କୁ ଭେଟିଲେ । ବ୍ରାହ୍ମଣ ବୁଦ୍ଧଦେବଙ୍କୁ ଭିକ୍ଷୁ ଅବସ୍ଥାରେ ଦେଖି ନାନାଭି ଭର୍ତ୍ସନା କଲା । କବିଙ୍କ ଭାଷାରେ—

"କେତେ କଷ୍ଟେ ଶସ୍ୟ ଜନମେ ଭୂମିରେ
କାହିଁ ତୁ ଜାଣିବୁ ଅଳପ ବୁଦ୍ଧିରେ ?

ସେହି ଶସ୍ୟ କରେ କୁଟୁମ୍ବ ପୋଷଣ
ତୋତେ କାହିଁ ତାହା ଦେବ ଅକାରଣେ ?''

ଉତ୍ତରରେ ଗୌତମ କହିଲେ ତାଙ୍କର ମଧ ତା ପରି ଶସ୍ୟ-କ୍ଷେତ୍ର ରହିଛି । ମାନବର ହୃଦୟ ହେଉଛି ତାଙ୍କର ଶସ୍ୟକ୍ଷେତ୍ର, ଧର୍ମ ତାଙ୍କର ହଳ, ଜ୍ଞାନ ବଳଦ, ବିଶ୍ୱାସ ହେଉଛି ବୀଜ ଓ ନିର୍ବାଣ ହେଉଛି ସେ କ୍ଷେତ୍ରରୁ ଉତ୍ପନ୍ନ ଶସ୍ୟ ସ୍ୱରୂପ । କବିଙ୍କ ବର୍ଣ୍ଣନାରେ—

"ବୋଇଲେ ଗୌତମ ବୀଜ ମୋ ବିଶ୍ୱାସ
ମୋର ଶସ୍ୟକ୍ଷେତ୍ର ମାନବର ହୃଦ
ଧର୍ମ ହଳ ମୋର ଜ୍ଞାନ ବଳୀବର୍ଦ୍ଦ
ନିର୍ବାଣ ମୋ ଶସ୍ୟ ଅମର ଅକ୍ଷୟ ।"

ଏହା ଶୁଣି ବ୍ରାହ୍ମଣର ଜ୍ଞାନୋଦୟ ହେଲା । ସେ ବୁଦ୍ଧଦେବଙ୍କର ପଦ ତଳେ ପଡ଼ି ସନ୍ୟାସ ଧର୍ମ ଗ୍ରହଣ କଲା ।

ଏକଦା ବୁଦ୍ଧଦେବ ଏକ ବୃକ୍ଷରର ଗୃହ ମଧ୍ୟରେ ଧ୍ୟାନ ମଗ୍ନ ହେଲେ । ଚୋର ଆସି ତାଙ୍କୁ ଚିହ୍ନି ନ ପାରି କ୍ରୋଧାନ୍ୱିତ ହୋଇ ଭର୍ତ୍ସନା କରିବାକୁ ଲାଗିଲା । ଧ୍ୟାନଭଙ୍ଗ କରି ବୁଦ୍ଧଦେବ ଆଖି ଖୋଲିଲେ ! ତାଙ୍କର ଚକ୍ଷୁ ବହିର୍ଗତ ଜ୍ୟୋତିକୁ ଦେଖି ଦସ୍ୟୁ ମନରେ ଭୟ ଜାତ ହେଲା ଓ ସେ ବୁଦ୍ଧଙ୍କ ଠାରୁ ସମସ୍ତ ବିଷୟ ପଚାରି ବୁଝିଲା । ଏସବୁ ଶୁଣି ଦସ୍ୟୁ ହୃଦୟରେ ଜ୍ଞାନୋଦୟ ହେଲା ଏବଂ ସେ ନୂତନ ଧର୍ମ ଗ୍ରହଣ କରି ଭିକ୍ଷୁ ବେଶ ଧାରଣ କରି ଧର୍ମ ପ୍ରବୃତ୍ତିରେ ଅଗ୍ରସର ହେଲା । କବି ଲେଖିଛନ୍ତି—

"ନବ ଧର୍ମ ଦୀକ୍ଷା କରି ସେ ଗ୍ରହଣ
ଭିକ୍ଷୁ ବେଶେ ଗଲା ପ୍ରଚାର କାରଣ

ସାଧୁ ସ୍ପର୍ଶମଣି ସ୍ପର୍ଶେ ଦସ୍ୟୁ ସନ୍ତ
ପାଷାଣ କାଞ୍ଚନ ରୂପେ ପରିଣତ ।"

ଅନ୍ୟ ଏକ ଦିନ ବୁଦ୍ଧଦେବ ଶ୍ରାବନ୍ତି ନଗରରେ ଶିଷ୍ୟମାନଙ୍କ ସହ ବିଚରଣ କରୁଥିବା ସମୟରେ ଗୌତମୀ ନାମ୍ନୀ ଏକ ନାରୀ ତାର ମୃତ ପୁତ୍ରକୁ ଧରି ତାଙ୍କ ନିକଟରେ ଉପସ୍ଥିତ ହେଲା ଏବଂ ମୃତ ପୁତ୍ରର ଜୀବନ ଭିକ୍ଷା କଲା । ଗୌତମ ତାକୁ ଯେଉଁ ଘରୁ କେବେ କୌଣସି ଲୋକ ମରି ନଥିବ ସେଠାରୁ ଘରୁ ମୁଠାଏ ସୋରିଷ ଆଣିଲେ ପୁତ୍ର ବଞ୍ଚିବ ବୋଲି କହିଲେ । କବିଙ୍କ ଭାଷାରେ—

"ସେ ଘରୁ ସର୍ଷପ ମାତ୍ର ଆଣ ଯାଇ
ଯେ ଘରେ ମନୁଷ୍ୟ କେବେ ମରିନାହିଁ ।"

ବହୁସ୍ଥାନ ବୁଲିବୁଲି ମଧ୍ୟ ଗୌତମୀ ପକ୍ଷରେ ଏପରି ଏକ ଗୃହ ପାଇବା ସମ୍ଭବପର ହେଲା ନାହିଁ । ଶେଷରେ ସେ ତା'ର ଭୁଲ ବୁଝିପାରି ସନ୍ୟାସିନୀ ସାଜି ବୁଦ୍ଧଙ୍କର ଅନୁଗାମୀ ହେଲା ।

ସ୍ଥୂଳବୁଦ୍ଧି ନାମକ ଏକ ସ୍ୱର୍ଣ୍ଣକାର ଆଶ୍ରମରେ ଶିଷ୍ୟ ରୂପେ ରହିଥିଲା । ବହୁଦିନ ଆଶ୍ରମରେ ଗୃହତ୍ୟାଗ କରି ରହିଥିଲେ ମଧ୍ୟ ସଂସାରର ମାୟାତ୍ୟାଗ କରି ତାଙ୍କର ଜ୍ଞାନୋଦୟ ହେଲା ନାହିଁ । ଦିନେ ବୁଦ୍ଧଦେବ ଶିଷ୍ୟ ସ୍ୱର୍ଣ୍ଣକାର ସହ ସରୋବର କୂଳରେ ବୁଲୁଥିବା ବେଳେ ସନ୍ଧ୍ୟା ଗମନରେ ପଦ୍ମ ପୁଷ୍ପର ଦୁରବସ୍ଥାକୁ ଦେଖାଇ ଯୌବନ, ସୌନ୍ଦର୍ଯ୍ୟ ସମସ୍ତ ଏପରି ଅଳୀକ ବୋଲି ବୁଝାଇ ଦେଲେ । କବିଙ୍କ ଭାଷାରେ—

"ବୋଇଲେ ଗୌତମ ଦେଖ ନେତ୍ରଭରି
ସୌନ୍ଦର୍ଯ୍ୟର ପରିଣାମ ଏହିପରି

ଜନମଣାଯ୍ କାନ୍ତ ଦେହ ଭସ୍ମସାର
ଐଶ୍ୱର୍ଯ୍ୟ ସୌନ୍ଦର୍ଯ୍ୟ ସକଳ ଅସାର ।"

ଏହା ଶୁଣିବା ପରେ ସ୍ୱର୍ଣ୍ଣକାରର ପ୍ରକୃତ ଜ୍ଞାନୋଦୟ ହେଲା ଓ ସେ ଧର୍ମ ପ୍ରଚାର କରିବା ପାଇଁ ଆଗଭର ହେଲା ।

ଏକଦା ଦୁଇ ଭାଇଙ୍କ ମଧ୍ୟରୁ ସାନଭାଇ ଚଦ୍ୟାଭ୍ୟାସ କରି ନ ପାରିବାରୁ ସାନଭାଇ ବୁଦ୍ଧଦେବଙ୍କର ଆଶ୍ରିତ ହେଲା । ବୁଦ୍ଧଦେବ ତାକୁ ଏକ ଶୁଭ୍ରଶୁକ୍ଳ ବସ୍ତ୍ର ମଳିବା ପାଇଁ ଦେଲେ । ଫଳତଃ ବସ୍ତ୍ରଟି ମଳିନ ଦେଖାଗଲା । ବୁଦ୍ଧଦେବ ତାକୁ ବୁଝାଇଲେ ବସ୍ତ୍ର ଯେପରି ମଳିବାରୁ ମଳିନ ହୁଏ । ଆତ୍ମା ସେହିପରି କାମ, କ୍ରୋଧ, ମୋହ ଦ୍ୱାରା ଜଡ଼ିତ ହେଲେ କଳଙ୍କିତ ହୋଇଯାଏ । କବିଙ୍କ ଭାଷାରେ —

"ଦେଖ ତୁ ତ ବସ୍ତ୍ର ! ଏ ଶୁକ୍ଳ ବସନ
ମଳନ୍ତେ ମଳିନ ଦିଶିଲା କେସନ ?
କାମ ଚିନ୍ତାମାନେ ହେଲେକ ଉଦୟ
କଳଙ୍କିତ ହୁଏ ଆତ୍ମାଟି ନିଶ୍ଚୟ ।

ଏହା ଶୁଣିବା ପରେ ସେ ଶିଶୁର ଜ୍ଞାନୋଦୟ ହେଲା ଓ ସେ ବୁଦ୍ଧଦେବଙ୍କର ଅନୁଗାମୀ ହେଲା ।

ଥରେ ବିମ୍ବିସାରଙ୍କ ରାଣୀ କ୍ଷେମାଦେବୀ ପ୍ରାତଃ ସ୍ନାନ ନିମିତ୍ତ ସରୋବର ପାର୍ଶ୍ୱରେ ଉପସ୍ଥିତ ହେଲେ ଏବଂ ସେଠାରେ ବୁଦ୍ଧଦେବଙ୍କୁ ଧ୍ୟାନମଗ୍ନ ଅବସ୍ଥାରେ ଦେଖି ତାଙ୍କ ଧର୍ମରେ ଦୀକ୍ଷିତା ହେଲେ ଏବଂ ଗୈରିକବସନ ପରିଧାନ ପୂର୍ବକ ସନ୍ୟାସିନୀ ବେଶ ଧାରଣ କଲେ । ତତ୍ପରେ ଉତ୍ପଳବର୍ଣ୍ଣା, ଆମ୍ରପାଳୀ ଇତ୍ୟାଦି ଅନେକ ମହୀୟସୀ ମହିଳା ଏହି ଧର୍ମ ଗ୍ରହଣ କଲେ ।

ବୌଦ୍ଧଧର୍ମ ମଗଧ, ଅଯୋଧ୍ୟା, ପଞ୍ଚନଦ ଓ ଦାକ୍ଷିଣାତ୍ୟର ପ୍ରତ୍ୟେକ ରାଜ୍ୟ ସମେତ ସର୍ବତ୍ର ପ୍ରସାର ଲାଭ କଲା । ବୌଦ୍ଧଧର୍ମର ମାତ୍ର ନିୟମ, ଯଶ, ଗୌରବାଦି ଚତୁର୍ଦ୍ଦିଗ ଗିରି କନ୍ଦରରେ ପାଷାଣ ବକ୍ଷରେ ଖୋଦିତ ହେଲା । ଏହାପରେ ଦୀର୍ଘ ୩୪ ବର୍ଷକାଳ ଧର୍ମ ପ୍ରଚାର କରିବା ପରେ କୋଶାମ୍ବୀ ଦେଶରେ ବର୍ଷା ଋତୁରେ ଅବସ୍ଥାପନ କରୁଥିବା ବେଳେ ସେ ସମସ୍ତ ଶିଷ୍ୟମାନଙ୍କୁ ଡ଼କାଇଲେ ଏବଂ ଆଉ ତିନମାସ ପରେ ତାଙ୍କର ନିର୍ବାଣ ପ୍ରାପ୍ତି ହେବ ବୋଲି ଜଣାଇଲେ । ଏହା ଶୁଣିବା ପରେ ଶିଷ୍ୟଗଣ ମର୍ମାହତ ହୋଇ ପଡ଼ିଲେ । କିନ୍ତୁ ଏଥିରେ ବିଚଳିତ ନ ହୋଇ ଦୃଢ଼ ଓ ନିର୍ଭୀକ ଭାବେ ସ୍ୱ ସ୍ୱ ପରିଚାଳନା କରି ଧର୍ମ ପ୍ରଚାର କରିବାକୁ ସେ ଶିଷ୍ୟ-ମାନଙ୍କୁ ଉପଦେଶ ଦେଲେ ।

ବର୍ଷାଋତୁ ଅତିବାହିତ ହୋଇଯିବାପରେ ବୁଦ୍ଧଦେବ କୁଶୀ-ନଗର ଯାତ୍ରାକଲେ । ପଥ ମଧ୍ୟରେ ଚନ୍ଦ୍ର ନାମକ ଚଣ୍ଡାଳ ଗୃହରେ ବୁଦ୍ଧଦେବ ଅତିଥି ହେଲେ ଓ ମାଂସାନ୍ନ ଭକ୍ଷଣ କଲେ । ପଥରେ ବୁଦ୍ଧଦେବ ପୀଡ଼ିତ ହୋଇ ପଡ଼ିଲେ ଓ ବହୁ କଷ୍ଟରେ କୁଶୀ-ନଗରରେ ଉପସ୍ଥିତ ହେଲେ । ଏଥି ପୂର୍ବରୁ ପିତା ଶୁଦ୍ଧୋଦନ ମାତା ପ୍ରଜାପତି, ଗୌତମୀ, ରାହୁଳ, ଗୋପା ସମସ୍ତେ କାଳର କରାଳ କବଳରେ ଚିର ନିଦ୍ରା ବରଣ କରିସାରିଥିଲେ । କୁଶୀ-ନଗରରେ କିଛି ଦିନ ଅବସ୍ଥାନ ପରେ ତାଙ୍କର ମହାପ୍ରୟାଣ ହୋଇଥିଲା ।

ଜିନବଂଶ ର ଶେଷ ସର୍ଗରେ କବି ବୁଦ୍ଧଦେବଙ୍କର ଅନ୍ତ୍ୟଲୀଳା ବିଷୟକୁ ବର୍ଣ୍ଣନା କରିଅଛନ୍ତି । ପବିତ୍ର ବାସନ୍ତୀ ପୂର୍ଣ୍ଣିମା ତିଥିରେ ଶାଳ ବୃକ୍ଷ ମୂଳରେ ବୁଦ୍ଧଦେବ ଧ୍ୟାନମଗ୍ନ ହେଲେ । ହଠାତ୍

ଚକ୍ଷୁ ଉନ୍ମିଳନ କରି ତାଙ୍କ ମହା ପ୍ରସ୍ଥାଣର ସମୟ ଉପସ୍ଥିତ ବୋଲି ଜଣାଇଲେ । କବିଙ୍କ ଭାଷାରେ—

"ହେ ଆନନ୍ଦ ! ଚଣ୍ଡଦତ୍ତ ମାଂସାନ୍ନ ଭୋଜନ
କରି ଆମ୍ଭେ ଏହିସ୍ଥାନେ ତେଜିଲୁ ଜୀବନ ।"

ଚଣ୍ଡ ଦେଇଥିବା ମାଂସାନ୍ନ ଭକ୍ଷଣ କରି ତାଙ୍କର ମହାପ୍ରୟାଣ ହେଲା । ମହାପ୍ରସ୍ଥାଣର କିଛି ସମୟ ପୂର୍ବରୁ ବୁଦ୍ଧଦେବ ତାଙ୍କର ଶିଷ୍ୟମାନଙ୍କୁ ବସାଇ ମହତୋପଦେଶ ମାନ ଦେବାପରେ ତାଙ୍କର ନିର୍ବାଣ ପ୍ରାପ୍ତି ହେଲା । କବିଙ୍କ ଭାଷାରେ—

"ମହାନିର୍ବାଣର କାଳ ଏବେ ଉପସ୍ଥିତ
ଗୌରବ ନିଷ୍ପନ୍ଦ ବୁଦ୍ଧ ନୟନ ମୁଦ୍ରିତ
କଲେ ଜୟ ଜୟ ଧ୍ୱନି ମିଳି ଭିକ୍ଷୁଗଣ—

ଧର୍ମଂ ମେ ଶରଣଂ
ବୁଦ୍ଧ ମେ ଶରଣଂ
ସଂଘ ମେ ଶରଣଂ



Rajat Printers, Cuttack-1